# ଦଶ କୁମାର ଚରିତ

( ଆଚାର୍ଯ୍ୟ ଦଣ୍ଡୀ ପ୍ରଣୀତ )


ଲେଖକ

ଶ୍ରୀଧର ମହାପାତ୍ର



ପ୍ରଥମ ମୁଦ୍ରଣ

ପ୍ରକାଶକ

ଷ୍ଟୁଡେଣ୍ଟସ୍ ଷ୍ଟୋର୍

ବ୍ରହ୍ମପୁର : କଟକ : ସମ୍ବଲପୁର

୧୯୪୯

ମୂଲ୍ୟ ଏକଟଙ୍କା ଅଠଅଣା

ଅତିରିକ୍ତ ଅଠ ଅଣା

ଗୁରୁଦେବ

ପଣ୍ଡିତ ରଘୁନାଥ ମିଶ୍ର ଶାସ୍ତ୍ରୀ ବ୍ୟାକରଣାଚାର୍ଯ୍ୟ

ଏବଂ

ପିତୃଦେବ

ପଣ୍ଡିତ ଗଙ୍ଗାଧର ମହାପାତ୍ର ବିଦ୍ୟାଭୂଷଣଙ୍କ

ପବିତ୍ର ପଦତଳେ

ସମର୍ପିତ ।

# ଭୂମିକା

ଆଚାର୍ଯ୍ୟ ଦଣ୍ଡୀଙ୍କର ଦଶକୁମାର ଚରିତ ସଂସ୍କୃତ ସାହିତ୍ୟର ଅଦ୍ୱିତୀୟ ରତ୍ନ । ପାଶ୍ଚାତ୍ୟ ମନୀଷୀମାନେ ସଂସ୍କୃତ ସାହିତ୍ୟରେ ଗଦ୍ୟ କାବ୍ୟର ଅଭାବ ବୋଲି ଆକ୍ଷେପ କରି ଅଛନ୍ତି । ଅଧୁନାତନ ଉପନ୍ୟାସ ଭଳିଆ ସରଳ ସରସ ତରଳ ଲକ୍ଷଣ ଗଦ୍ୟକାବ୍ୟ ସଂସ୍କୃତରେ ବିରଳ । ବାଣଭଟ୍ଟଙ୍କର କାଦମ୍ବରୀ ଓ ହର୍ଷଚରିତ କଠିନ ଓ ଦୁର୍ବୋଧ ହେବା ହେତୁ ସେମାନେ ତୀବ୍ର ଆକ୍ଷେପ କରିଥାନ୍ତି । ପ୍ରକୃତ ବସ୍ତୁର ସ୍ୱରୂପ ନ ବୁଝି ହଠାତ୍ ଗୋଟାଏ ମତବ୍ୟକ୍ତ କରିବା ପାଶ୍ଚାତ୍ୟ ପଣ୍ଡିତମାନଙ୍କର ସ୍ୱାଭାବିକ ଅଭ୍ୟାସ । ଏ କ୍ଷେତ୍ରରେ ମଧ୍ୟ ତାହାହିଁ ସେମାନେ ପ୍ରକାଶ କରିଅଛନ୍ତି । ସଂସ୍କୃତ ସାହିତ୍ୟ ଆଲୋଚନା କଲେ ସ୍ପଷ୍ଟ ପ୍ରତୀତ ହେବ, ଏହା କୌଣସି ଅଂଶରେ ପାଶ୍ଚାତ୍ୟ ସାହିତ୍ୟ ଅପେକ୍ଷା ହୀନସ୍ତରରେ ନାହିଁ । ବେତାଳ ପଞ୍ଚବିଂଶତି, ହିତୋପଦେଶ, ପଞ୍ଚତନ୍ତ୍ର, ଶୁକସପ୍ତତି ପ୍ରଭୃତି ପ୍ରାଚୀନ ସରଳ ସରସ ଆଦର୍ଶାନୁପ୍ରାଣିତ ଗଦ୍ୟକାବ୍ୟ ଅନ୍ୟ ସାହିତ୍ୟରେ ବିରଳ । ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ—ଏ ସମସ୍ତ ଗ୍ରନ୍ଥ ପାଶ୍ଚାତ୍ୟ ଭାଷାରେ ଅନୁବାଦିତ ହୋଇ ଆଜିଯାଏଁ ବିଭିନ୍ନ ଦେଶରେ ଆଦର ଲାଭ କରି ଆସୁଅଛି । କାଦମ୍ବରୀ ଓ ହର୍ଷଚରିତ ପାଶ୍ଚାତ୍ୟମାନଙ୍କ ପକ୍ଷରେ ଦୁରବଗାହ ହେବା ହେତୁ ସେମାନଙ୍କର ଦୃଷ୍ଟି ଆକର୍ଷଣ କରି ପାରିନାହାନ୍ତି । କାଦମ୍ବରୀର ସରସତା ସହୃଦୟ ପାଠକ କେବଳ ଗ୍ରହଣ କରି ପାରିବ । "କାଦମ୍ବରୀରସଜ୍ଞାନା—ମାହାରୋଽପି ନ ରୋଚତେ", "ବାଣୋଚ୍ଛିଷ୍ଟ ମିଦଂ ଜଗତ୍" ଏହି ସବୁ ପ୍ରବଚନ କାଦମ୍ବରୀରସାସ୍ୱାଦନକାରୀ ରସିକ ସହୃଦୟ ପାଠକ-

ମାନଙ୍କର ଉର୍ବର ମସ୍ତିଷ୍କର ଫଳ । କାଦମ୍ବରୀର ବର୍ଣ୍ଣନା ପାଶ୍ଚାତ୍ୟ ପଣ୍ଡିତମାନଙ୍କର ମସ୍ତକ ବିଘୂର୍ଣ୍ଣିତ କରୁଅଛି; ମାତ୍ର ସହୃଦୟ ଭାରତୀୟ ବିଦ୍ୱାନମାନଙ୍କର ପରମତୃପ୍ତି ସମ୍ପାଦନ କରୁଅଛି । ରୁଚିଭେଦରେ ପାଶ୍ଚାତ୍ୟ ଓ ଭାରତୀୟ ବିଜ୍ଞ ସମାଲୋଚକମାନଙ୍କର ବିଭିନ୍ନ ଅଭିମତ ପ୍ରକାଶ ପାଉଅଛି । ମାତ୍ର ଦଣ୍ଡୀଙ୍କର ଦଶକୁମାର ଚରିତ ପାଶ୍ଚାତ୍ୟ ଓ ଭାରତୀୟ ମନୀଷୀମାନଙ୍କର ମନ ଆକର୍ଷଣ କରି ପାରିଅଛି । ଏଥିରେ ଦୀର୍ଘ ସମାସ ବହୁଳ ଦୁର୍ବୋଧ ପଦାବଳୀ ବିଶିଷ୍ଟ ଗଦ୍ୟଭାଗ ନାହିଁ; ମସ୍ତକ ଘୂର୍ଣ୍ଣନକାରୀ ପାଠକମାନଙ୍କର ବିରକ୍ତି ସମ୍ପାଦକ ଦୀର୍ଘ ବର୍ଣ୍ଣନା ନାହିଁ; ଅଛି ସରସ ସରଳ ଚିତ୍ତାକର୍ଷକ ପଦବିନ୍ୟାସ ଓ ସହୃଦୟମାନସରଞ୍ଜକ ସୁମଧୁର ନାତିସଂକ୍ଷିପ୍ତ ବର୍ଣ୍ଣନା । ଭାଷା ସହଜ ଓ ସାଧାରଣ ବୋଧ ।

ଦଶକୁମାର ଚରିତରେ ଅନ୍ୟ ଗୋଟିଏ ବିଶେଷତ୍ୱ ଏହାର ଭାବଧାରା । ସାଧାରଣତଃ ସଂସ୍କୃତ କବିମାନେ ସ୍ୱ ସ୍ୱ କାବ୍ୟରେ ନାୟକ ନାୟିକାମାନଙ୍କର କେବଳ ଗୁଣାବଳୀ ବର୍ଣ୍ଣନ କରନ୍ତି— ଦୋଷ ଭାଗଟା ଏକ ରକମ ଗୁଡ଼ି ଦିଅନ୍ତି କିମ୍ବା ଦୈବ ବା ଆକସ୍ମିକ ଘଟନାବଳୀର ଆଶ୍ରୟରେ ସମର୍ଥନ କରି ବସନ୍ତି । କିନ୍ତୁ ଏ ଗ୍ରନ୍ଥରେ କବି ସ୍ୱ ନାୟକ ନାୟିକାମାନଙ୍କର ଚରିତ୍ର ଚିତ୍ରଣ କଲାବେଳେ ଉଭୟ ଦିଗପ୍ରତି ସମାନ ଦୃଷ୍ଟି ଦେଇ ଅଛନ୍ତି । ଅପହାରବର୍ମାଙ୍କର ଦ୍ୟୂତଚୌର୍ଯ୍ୟବୃତ୍ତ୍ୟାଶ୍ରୟଣରେ କୃତକାର୍ଯ୍ୟତା, ଉପହାରବର୍ମାଙ୍କର ଅନ୍ଧବିଧ ଉପାୟରେ ପିତୃଶତ୍ରୁ ବିନାଶ ଓ ପରନାରୀସ୍ୱୀକରଣ, ଅର୍ଥପାଳ ପ୍ରଭୃତିଙ୍କର ବିବିଧ ଉପାୟରେ ସ୍ୱାଭୀଷ୍ଟ ସାଧନ ବାସ୍ତବତାର ପ୍ରତିମୂର୍ତ୍ତି । ଏ ମାନଙ୍କର ଚରିତ୍ର ଚିତ୍ରଣରେ କବିଙ୍କର ସିଦ୍ଧହସ୍ତତା ବାସ୍ତବିକ ଅନନ୍ୟସାଧାରଣ । ଆଧୁନିକ ଉପନ୍ୟାସମାନଙ୍କରେ ଆମ୍ଭେ-ମାନେ ଯେଉଁ ଧରଣର ଚରିତ୍ର ଚିତ୍ରଣ ଦେଖୁ, ଏଥିରେ ଠିକ ସେହି

ଧରଣର । ରାଜବାହନ ସମେତ ଦଶ ଗୋଟି କୁମାରଙ୍କର ପ୍ରତ୍ୟେକ ଚରିତରେ ଯେପରି ବିଶେଷତ୍ୱ ରହିଅଛି, ନାୟିକାମାନଙ୍କର ଚରିତରେ ମଧ୍ୟ ସେହିପରି ରହିଅଛି । ନାୟକ ଓ ନାୟିକାମାନଙ୍କର ରୀତିନୀତି, ଆଚାର-ବ୍ୟବହାର, ଚାଲିଚଳଣି ସମ୍ପୂର୍ଣ୍ଣ ପୃଥକ୍ ଅଥଚ ହୃଦୟସ୍ପର୍ଶୀ ।

ଭାରତୀୟ ସାହିତ୍ୟ ବିଭିନ୍ନ ଉପାଦାନରେ ଗଠିତ । କର୍ତ୍ତବ୍ୟା-କର୍ତ୍ତବ୍ୟ ପ୍ରତିପାଦନପୂର୍ବକ କର୍ତ୍ତବ୍ୟରେ ପ୍ରବୃତ୍ତ ଓ ଅକର୍ତ୍ତବ୍ୟରୁ ନିବୃତ୍ତ କରାଇବା ଭାରତୀୟ ସାହିତ୍ୟର ବିଶେଷତ୍ୱ । ଫଳତଃ ପ୍ରତ୍ୟେକ କାବ୍ୟ ଆଦର୍ଶ ନୀତି ପ୍ରଚାର କରି ସମାଜର ବିଶେଷ ଉପକାର ସାଧନ କରୁଅଛି । ଦଶକୁମାର ଚରିତ ଆଦର୍ଶନୀତିର ଆକର କହିଲେ ଅତ୍ୟୁକ୍ତି ହେବ ନାହିଁ । ସମାଜର ବିଭିନ୍ନ ସ୍ତରରେ ଆମ୍ଭେମାନେ ଯେଉଁ ସବୁ ଉପାଦେୟ ଆଦର୍ଶ ନେଇ ଜୀବନ ଗଠନ କରିବା କଥା, ସେ ସମସ୍ତ ଆଦର୍ଶ ଦଶକୁମାର—ବର୍ଣ୍ଣିତ ପ୍ରତ୍ୟେକ ବ୍ୟକ୍ତିଙ୍କଠାରେ ପରିଲକ୍ଷିତ ହୁଏ । ମୈତ୍ରୀ, ପରୋପକାର, ଦେଶ ସେବା, ସମାଜ ସେବା ପ୍ରଭୃତି ଆଦର୍ଶ ଗୁଣ-ଗୁଚ୍ଛକ ନାୟକନାୟିକାଙ୍କଠାରେ ପ୍ରତିଫଳିତ ଓ ସହୃଦୟପାଠକ-ମାନଙ୍କର ଅନୁକାର୍ଯ୍ୟ ।

ଆଧୁନିକ ସାହିତ୍ୟ ପଦ୍ୟଭାଗ ଅପେକ୍ଷା ବିଶେଷଭାବରେ ଗଦ୍ୟ-ଭାଗ ନେଇ ପରିପୁଷ୍ଟ । ଗଦ୍ୟକାବ୍ୟର ଚରିତ ଚିତ୍ରଣ ଉପନ୍ୟାସ ସାହିତ୍ୟକୁ ସମାଜର ପ୍ରତିବିମ୍ବ ସ୍ୱରୂପ ପ୍ରତିପାଦନ କରିଅଛି । ଗଦ୍ୟସାହିତ୍ୟ ଗଳ୍ପ, ପ୍ରବନ୍ଧ, କଥା, ଆଖ୍ୟାୟିକା, ଉପନ୍ୟାସାଦି ଭେଦରେ ବିଭିନ୍ନ ହେଲେ ମଧ୍ୟ ଉପନ୍ୟାସକୁ ଶୀର୍ଷସ୍ଥାନ ଦେଇଅଛି । ଦଶକୁମାର ଚରିତ କେବଳ ଉପନ୍ୟାସ ନୁହେଁ, ଉପନ୍ୟାସର ସମଷ୍ଟି ।

ଏଥିରେ ଦଶ ଗୋଟି ବା ତତୋଧିକ ଉପନ୍ୟାସ ଅଛି କହିଲେ ଅତ୍ୟୁକ୍ତି-ହେବ ନାହିଁ ।

ସାଧାରଣତଃ ସାହିତ୍ୟ ତାତ୍କାଳିକ ଅଗ୍ରିମ ବ୍ୟବହାରର ପ୍ରତୀକ । ଦଶକୁମାର ଚରିତ ସାମାଜିକ ଅଗ୍ରିମ ବ୍ୟବହାରର ଜୀବନ୍ତ ଛବି । ବାଣିଜ୍ୟ, ବ୍ୟବସାୟ, ଦ୍ୟୂତ, ଚୌର୍ଯ୍ୟ, ରାଜନୀତି, ସମାଜ ନୀତି, ଦେଶ ଧର୍ମ, ବର୍ଣ୍ଣ ଧର୍ମ, ଆଶ୍ରମ ଧର୍ମ, ନୃତ୍ୟଗୀତ, କଳା ଶାସ୍ତ୍ର ଇତ୍ୟାଦି ବିଷୟରେ ଦଶକୁମାର ଚରିତ ଆମ୍ଭମାନଙ୍କ ସମ୍ମୁଖରେ ଗୋଟାଏ ଚଳଚ୍ଚିତ୍ର ଉପସ୍ଥାପିତ କରୁଅଛି ।

ଏହିପରି ଦଶକୁମାର ଚରିତ ସଂସ୍କୃତ ସାହିତ୍ୟରେ ଗୋଟାଏ ବିଶିଷ୍ଟ ସ୍ଥାନ ଅଧିକାର କରି ରହିଛି । ଏହି ଗ୍ରନ୍ଥ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟକଳାର ସମାବେଶ କହିଲେ ମଧ୍ୟ ଅତ୍ୟୁକ୍ତି ହେବ ନାହିଁ ।

ଶ୍ରୀଧର ବାବୁ ଦଶକୁମାର ଚରିତର ମାଧୁର୍ଯ୍ୟ ଓ ଉପାଦେୟତା ସରଳ ସରସ ବାକ୍ୟରେ ପରିସ୍ଫୁଟ କରିପାରି ଅଛନ୍ତି । ପ୍ରାଚୀନ ସାହିତ୍ୟକୁ ଯୁଗୋପଯୋଗୀ କରିବାକୁ ହେଲେ ବିଶେଷ ସତର୍କ ହେବା ବାଞ୍ଛନୀୟ । ଶ୍ରୀଧର ବାବୁଙ୍କର ଦଶକୁମାର ଚରିତ ସଂସ୍କୃତ ଦଶକୁମାର ଚରିତର ଅନୁବାଦ ନୁହେଁ । ଅନୁବାଦକଙ୍କର କୌଣସି ପରିବର୍ତ୍ତନ କରିବାର ଅଧିକାର ନାହିଁ । ମାତ୍ର ଯେ ଶିଳ୍ପୀ, ସେ ନିଜଶିଳ୍ପ ଅନ୍ୟାନୁପ୍ରାଣିତ ହେଲେ ମଧ୍ୟ ନିଜ ବୈଶିଷ୍ଟ୍ୟ ଦେଖାଇ ସମ୍ପୂର୍ଣ୍ଣ ନୂତନ କରିଥାଏ । ଶ୍ରୀଧର ବାବୁଙ୍କର ଦଶକୁମାର ଚରିତରେ ତାହାହିଁ ପରିଲକ୍ଷିତ ହୁଏ । ଏହା ପଢ଼ିଲେ କେହି କହିପାରିବ ନାହିଁ, ଏହା ଏକ ସଂସ୍କୃତ ଗ୍ରନ୍ଥର ପ୍ରତିଲିପି । ଆଦର୍ଶ ଓ ଅନୁକରଣ ମଧ୍ୟରେ ବିଶେଷ ପାର୍ଥକ୍ୟ ଅଛି । ଆଦର୍ଶ ଅନୁମୋଦନୀୟ,

ଅନୁକରଣ ହେୟ । କବିବର ଗଙ୍ଗାଧର ମେହେରଙ୍କର ପ୍ରଣୟ-ବଲ୍ଲରୀ ଶାକୁନ୍ତଳର ଅନୁକରଣ ନୁହେଁ, ମାତ୍ର ଆଦର୍ଶାନୁପ୍ରାଣିତ । କାଳିଦାସଙ୍କର ଶାକୁନ୍ତଳ ମହାଭାରତ ଶାକୁନ୍ତଳ ଉପାଖ୍ୟାନର ଅନୁକରଣ ନୁହେଁ, ମାତ୍ର ଆଦର୍ଶାନୁପ୍ରାଣିତ । ପ୍ରତ୍ୟେକ କ୍ଷେତ୍ରରେ ଆଦର୍ଶାନୁପ୍ରାଣିତ କାବ୍ୟରେ ଲେଖକଙ୍କର ବାହାଦୁରି ଦେଖାଇବାକୁ ସୁବିଧା ମିଳେ । ଏ କ୍ଷେତ୍ରରେ ମଧ୍ୟ ସେ ତାହାର ସଦ୍‌ବ୍ୟବହାର କରି ଅଛନ୍ତି ।

ଦଶକୁମାର ଚରିତର ସଂବିଧାନ ଓ ଶ୍ରୀଧର ବାବୁଙ୍କର ଦଶକୁମାର ଚରିତର ସଂବିଧାନ ଏକ ଧରଣର ନୁହେଁ । ଶ୍ରୀଧର ବାବୁ ସଂସ୍କୃତ ଗ୍ରନ୍ଥକୁ ଏକ ଆଧୁନିକ ଉପନ୍ୟାସ ଆକାରରେ ଚିତ୍ରିତ କରି ଥୋଇଦେଇ ଅଛନ୍ତି । ଭାଷା ଯୁଗୋପଯୋଗୀ, ଭାବ ଗମ୍ଭୀର, ଚରିତ୍ର ଚିତ୍ରଣ ଅସାଧାରଣ । ସଂସ୍କୃତ ଗ୍ରନ୍ଥରେ ଯେଉଁ ସବୁ ଆଦର୍ଶ ନୀତି ସନ୍ନିବେଶିତ ଥିଲା, ଏଥିରେ ସେ ସମସ୍ତ ଅକ୍ଷୁଣ୍ଣ ରହିଅଛି । ମୋଟା ମୋଟି କହିବାକୁ ଗଲେ ପୁସ୍ତକଟି ସର୍ବାଙ୍ଗ ସୁନ୍ଦର ହୋଇଅଛି ।

ସଂସ୍କୃତ ସାହିତ୍ୟର ଉପାଦେୟ ଗ୍ରନ୍ଥ ଗୁଡ଼ିକ ଆଧୁନିକ ରୂପରେ ଏପରି ପ୍ରତିଫଳିତ ହେଲେ ସଂସ୍କୃତ ସାହିତ୍ୟର ପ୍ରସାର ସଙ୍ଗେ ସଙ୍ଗେ ଆଧୁନିକ ସାହିତ୍ୟଭଣ୍ଡାର ମଧ୍ୟ ପରିପୁଷ୍ଟ ଓ ଅଳଙ୍କୃତ ହେବ—ଏଥିରେ ସନ୍ଦେହ ନାହିଁ ।

ଶ୍ରୀ ଅନନ୍ତ ତ୍ରିପାଠି ଶର୍ମା

ତା ୧୪–୮–୪୯

# ସୂଚୀ



---

# ଦଶକୁମାର ଚରିତ

---

## (୧)

## ମଗଧର ପରାଜୟ

ଇତିହାସ-ପ୍ରସିଦ୍ଧ ମଗଧ ରାଜ୍ୟର ରାଜା ରାଜହଂସ ଅତି ପ୍ରତାପଶାଳୀ ଥିଲେ । ତାଙ୍କ ରାଜତ୍ୱରେ ମଗଧ ରାଜ୍ୟ ପୁଣ୍ୟତୋୟା ଜାହ୍ନବୀର ଉଭୟ ତଟରେ ବହୁଦୂର ବିସ୍ତୃତ ଲାଭ କରି ପାରିଥିଲା । ରାଜ୍ୟର ପ୍ରଜାଗଣ ବିଦ୍ୟା ଓ ବିଭବରେ ଭାରତର ତତ୍କାଳୀନ ଅନ୍ୟାନ୍ୟ ରାଜ୍ୟର ଅଧିବାସୀମାନଙ୍କର ଆଦର୍ଶ ସ୍ଥାନୀୟ ହୋଇ ପାରିଥିଲେ । ମଗଧର ରାଜଧାନୀ ପାଟଳୀପୁତ୍ର ସକଳ ପ୍ରକାର ଉନ୍ନତିର କେନ୍ଦ୍ରସ୍ଥଳ ଥିଲା । ପାଟଳୀପୁତ୍ରର ଅନ୍ୟନାମ ପୁଷ୍ପପୁର । ବାସ୍ତବିକ୍ ଏ ନଗରଟି ଉପବନର ସଦ୍ୟ ପ୍ରସ୍ଫୁଟିତ କୁସୁମଟିଏ ଭଳି ସକଳ ବିଭବରେ ହସି ଉଠୁଥିଲା । ଧର୍ମପରାୟଣ ରାଜା ରାଜହଂସ ଓ ପତିପ୍ରାଣା ରାଣୀ ବସୁମତୀ ନିଜ ନିଜର ଉଦାର ଗୁଣରେ ପ୍ରଜାବୃନ୍ଦଙ୍କର ପିତାମାତାର ସ୍ଥାନ ଅଧିକାର କରିଥିଲେ ।

ରାଜ୍ୟ ଶାସନରେ ସାହାଯ୍ୟ କରିବା ପାଇଁ ରାଜହଂସଙ୍କର ତିନିଜଣ ପ୍ରବୀଣ ବୃଦ୍ଧ ମନ୍ତ୍ରୀ ଥିଲେ—ଧର୍ମପାଳ, ପଦ୍ମୋଦ୍ଭବ ଓ ସିତବର୍ମା । ମନ୍ତ୍ରୀ ଧର୍ମପାଳଙ୍କର ତିନିପୁତ୍ର ଥିଲେ—ସୁମନ୍ତ୍ର, ସୁମିତ୍ର ଓ କାମପାଳ । ପଦ୍ମୋଦ୍ଭବଙ୍କର ଦୁଇ ପୁତ୍ର ଥିଲେ ଶୁଶ୍ରୁତ ଓ ରତ୍ନୋଦ୍ଭବ । ସିତବର୍ମାଙ୍କର ମଧ୍ୟ ଦୁଇ ପୁତ୍ର ଥିଲେ—ସୁମତି ଓ ସତ୍ୟବର୍ମା ।

ମନ୍ତ୍ରୀପୁତ୍ରମାନଙ୍କ ମଧ୍ୟରେ ସତ୍ୟବର୍ମା ଅତି ଧର୍ମପରାୟଣ ଥିଲେ । ସେ ସଂସାରର ଅସାରତା ଓ ଅନିତ୍ୟତା ହୃଦୟଙ୍ଗମ କରିପାରି ଦେଶାନ୍ତରରେ ଭ୍ରମଣ ଦ୍ୱାରା ସମଧିକ ଜ୍ଞାନ ଉପାର୍ଜ୍ଜନ କରିବା ଉଦ୍ଦେଶ୍ୟରେ ଗୃହତ୍ୟାଗୀ ହୋଇଥିଲେ । ଏହାର କିଛିଦିନ ପରେ ପଦ୍ମୋଦ୍ଭବଙ୍କ ପୁତ୍ର ରତ୍ନୋଦ୍ଭବ ମଧ୍ୟ ଦ୍ୱୀପାନ୍ତରରେ ବାଣିଜ୍ୟ କରିବା ଉଦ୍ଦେଶ୍ୟରେ ଜନ୍ମଭୂମି ପରିତ୍ୟାଗ କରିଥିଲେ । କାମପାଳ ମନ୍ତ୍ରୀପୁତ୍ରମାନଙ୍କ ମଧ୍ୟରେ ନିତାନ୍ତ ଅଶିକ୍ଷିତ ଏବଂ ବିଳାସୀ ଥିଲେ । ଗୁରୁଜନମାନଙ୍କ ଉପଦେଶ ଗ୍ରହଣ କରିବା ତାଙ୍କର ସ୍ୱଭାବ ବିରୁଦ୍ଧ ଥିଲା । ସେ ସର୍ବଦା ବେଶ୍ୟାଳୟ ଓ ଯାତ୍ରାଦଳରେ ବୁଲି ଦେଶ ବିଦେଶରେ ସମୟ କଟାଉ ଥିଲେ । ଅପର ମନ୍ତ୍ରୀ-ପୁତ୍ରଗଣ ସ୍ୱ ସ୍ୱ ପିତୃ ବିୟୋଗ ପରେ ପୈତୃକ ପଦବୀ ଗ୍ରହଣ କରି ରାଜ୍ୟ ଶାସନରେ ସାହାଯ୍ୟ କରିବାକୁ ଲାଗିଲେ ।

ରାଜହଂସ ରାଜ୍ୟ, ପ୍ରଜା, ବିଭବ, ସମ୍ପଦ ଓ ବସୁମତୀଙ୍କ ପରି ଗୁଣବତୀ ପତ୍ନୀ ପାଇଥିଲେ ସତ୍ୟ; କିନ୍ତୁ ନିଜର ସନ୍ତାନ ଓ ରାଜ୍ୟର ଉତ୍ତରାଧିକାରୀ ଅଭାବରେ ସେ ଜୀବନକୁ ବ୍ୟର୍ଥ ମନେ କରୁଥିଲେ । ତେଣୁ ସେ ରାଣୀଙ୍କ ସହ ପୁତ୍ରକାମନାରେ ସର୍ବଦା ନାନା ପ୍ରକାର ଧର୍ମକାର୍ଯ୍ୟ ଓ ଈଶ୍ୱରାରାଧନାରେ ରତ ରହୁଥିଲେ । ଶେଷରେ

ତାଙ୍କ ହୃଦୟର ଏକମାତ୍ର ପ୍ରାର୍ଥନା ପୂରଣ ହେଲା —'ରାଣୀ ବସୁମତୀଙ୍କଠାରେ ଗର୍ଭଲକ୍ଷଣ ପ୍ରକାଶିତ ହେଲା ।

ଶୁଭ ଦିବସରେ ଶାସ୍ତ୍ରମତେ ସୀମନ୍ତୋତ୍ସବର ଆୟୋଜନ ହେଲା । ମଗଧର ମିତ୍ର ରାଜାଗଣ ଆମନ୍ତ୍ରିତ ହୋଇ ଏହି ପବିତ୍ରୋତ୍ସବରେ ଯୋଗ ଦାନ କଲେ । ରାଜା ରାଜହଂସ ସୀମନ୍ତୋତ୍ସବରେ ଲିପ୍ତ ରହି ଯେତେବେଳେ ଭାବୀ ପୁତ୍ରମୁଖ ଦର୍ଶନ ଆଶା ସ୍ରୋତରେ ଭାସମାନ, ଠିକ୍ ସେହି ସମୟରେ ବିନା ମେଘରେ ବଜ୍ରପାତ ପରି ଏକ ଦୁଃସମ୍ବାଦ ତାଙ୍କୁ ବିବ୍ରତ କରି ପକାଇଲା । ସେ ଗୁପ୍ତଚରର ମୁଖରୁ ଶୁଣିପାରିଲେ ଯେ ମାଳବର ରାଜା ମାନସାର ମଗଧ ଆକ୍ରମଣ କରିଛନ୍ତି । ଏପରି କ୍ଷେତ୍ରରେ ବୀର ରାଜହଂସ ଅଣୁମାତ୍ର କ୍ଷୁବ୍ଧ ହେବାର ଲୋକ ନୁହନ୍ତି, କିନ୍ତୁ ପବିତ୍ର ସୀମନ୍ତୋତ୍ସବ ଶେଷ ନ ହେଉଣୁ ଉଭୟ ପକ୍ଷର ନିରୀହ ପ୍ରଜାରକ୍ତରେ ମଗଧଭୂମି ସିକ୍ତ ହେବ ଏହି ଚିନ୍ତାରେହିଁ ସେ ମ୍ରିୟମାଣ ହୋଇ ପଡ଼ିଲେ ।

ମାନସାର ଏଥିପୂର୍ବେ ଥରେ ମଗଧ ଆକ୍ରମଣ କରିଥିଲେ ଓ ତାର ଉପଯୁକ୍ତ ପୁରସ୍କାର ମଧ୍ୟ ପାଇଥିଲେ । ସେ ଯୁଦ୍ଧରେ ପରାସ୍ତ ହୋଇ ନିଜ ରାଜ୍ୟ ଛାଡ଼ି ପଳାୟନ କରିଥିଲେ । କିନ୍ତୁ ଉଦାରଚେତା ରାଜା ରାଜହଂସ ଶତ୍ରୁର ପ୍ରତିହିଂସା ସାଧନ କରିବା ପରିବର୍ତ୍ତେ ମାନସାରଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରି ମାଳବ ରାଜ୍ୟ ପ୍ରତ୍ୟର୍ପଣ କରିଥିଲେ । କିନ୍ତୁ ଏହାର ବିପରୀତ ଫଳ ଫଳିଥିଲା । କୃତଘ୍ନ ମାନସାର ଏହାକୁ ଘୋର ଅପମାନ ମନେ କରି ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ମହାକାଳ ବନରେ ତପସ୍ୟା କରିବାକୁ ଲାଗିଲେ । ଅନେକ ଦିନପରେ ତାଙ୍କର ତପସ୍ୟା ସଫଳ ହେଲା । ଦେବଦେବ ମହାଦେବ ସୁପ୍ରସନ୍ନ ହୋଇ ତାଙ୍କୁ ଏକ ଶକ୍ତି ପ୍ରଦାନ

ଦଲେ । ଯୁଦ୍ଧ କ୍ଷେତ୍ରରେ ଯେଉଁ ଯୋଦ୍ଧା ପ୍ରତି ଲକ୍ଷ୍ୟକରି ଏ ଶକ୍ତି ପ୍ରୟୋଗ କରାଯିବ ତାହାର ମୃତ୍ୟୁ ସୁନିଶ୍ଚିତ ।

ଦୈବୀବଳରେ ବଳୀୟାନ ହୋଇ ମାନସାର ଏଥର ମଗଧ ଆକ୍ରମଣ କରିଛନ୍ତି, ଏ କଥା ରାଜହଂସ ଅବଗତ ଥିଲେ, କିନ୍ତୁ ସେ ବୀର; ସେ ନିଜ ଜୀବନ ଅପେକ୍ଷା ଗୌରବକୁ ମହତ୍ତର ମନେ କରନ୍ତି, ତେଣୁ ରିପୁପକ୍ଷର ଶକ୍ତିରେ ଚକିତ ନ ହୋଇ ଅଧିକ ଧୈର୍ଯ୍ୟ ସହକାରେ ରଣ ସଜ୍ଜାରେ ସଜ୍ଜିତ ହେଲେ; ରାଣୀ ବସୁମତୀ, ଅନ୍ତଃପୁରର ଅନ୍ୟାନ୍ୟ ଅବଳା ଓ ଶିଶୁମାନଙ୍କୁ ବିନ୍ଧ୍ୟ ପର୍ବତର କୌଣସି ନିଭୃତ ଗହ୍ୱରରେ ରକ୍ଷା କରିବା ପାଇଁ ଆଦେଶ କରି ନିଜେ ରଣ କ୍ଷେତ୍ରକୁ ଅଗ୍ରସର ହେଲେ ।

ଅବିଶ୍ରାନ୍ତ ଯୁଦ୍ଧ ଚାଲିଲା । ଶତ ଶତ ରକ୍ତାକ୍ତ ମସ୍ତକ ଧରଣୀ ବକ୍ଷରେ ବିଲୁଣ୍ଠିତ ହେଲା—ବୀରର ହୁଂକାର ଓ ଆହତର ଚିତ୍କାର ଆକାଶ ମୁଖରିତ କଲା । ମଗଧ ସୈନ୍ୟ କ୍ରମେ ମାଳବ ସୈନ୍ୟଙ୍କୁ ଚତୁର୍ଦ୍ଦିଗରୁ ଅବରୁଦ୍ଧ କରି ପକାଇଲେ ।

ମାନସାର ଦେଖିଲେ ବର୍ତ୍ତମାନ ତାଙ୍କର ପରାଜୟ ଅବଶ୍ୟମ୍ଭାବୀ । ତେଣୁ ସେ ଦୈବୀ ଶକ୍ତିର ଆଶ୍ରୟ ନେବାହିଁ ଶେଷ ଉପାୟ ମନେ କଲେ । ସେ ରାଜହଂସଙ୍କୁ ଜୀବଦ୍ଦଶାରେ ବନ୍ଦୀ କରିବା ଉଦ୍ଦେଶ୍ୟରେ ତାଙ୍କର ସାରଥୀ ପ୍ରତି ଲକ୍ଷକରି ଦେବଦତ୍ତ 'ଶକ୍ତି ପ୍ରୟୋଗ କଲେ । ସାରଥୀ ରଥଚ୍ୟୁତ ହୋଇ ଭୂତଳରେ ପତିତ ହେଲା ଏବଂ ରାଜହଂସ ଶତ୍ରୁର ଅସୀମ ତେଜରେ ରଥ ଉପରେ ମୃତବତ୍ ପତିତ ହେଲେ । ମଗଧର ଶୌର୍ଯ୍ୟ ରବିର ଏ ଅବସାନ କାଳରେ ଅସ୍ତାଚଳଗାମୀ ଦିବାକରଙ୍କର ଲୋହିତ

କ୍ଷତଶ୍ରୀ ଜାଳ ବକ୍ରାନ୍ତ ରଣାଙ୍ଗନକୁ ଏକ ଅପୂର୍ବ ଶ୍ରୀମକାନ୍ତ ଅଗ୍ନିରେ ଭୂଷିତ କଲା ।

ଶତ୍ରୁର ପତନ ଦେଖି ହୃଷ୍ଟଚିତ୍ତ ମାନସାର ତାହାଙ୍କୁ ବନ୍ଦୀ କରିବାକୁ ଉଦ୍ୟତ ହେଲା ବେଳେ ହଠାତ୍ ଏକ ଅଦ୍ଭୁତ ଘଟଣା ଘଟିଲା । ରାଜହଂସଙ୍କ ରଥର ଅଶ୍ୱ ଦୁଇଟି ଶତ୍ରୁର ତେଜରେ ଅତ୍ୟନ୍ତ ଅସଂଯତ ହୋଇ ପଡ଼ିଥିଲେ । ସଙ୍ଗେ ସଙ୍ଗେ ସାରଥୀର ପତନ ଦେଖି ସେମାନେ ତୀବ୍ର ଗତିରେ ବୃପରାନ୍ତ ଦିଗରେ ଧାବମାନ ହେବାକୁ ଲାଗିଲେ । ମୁହୂର୍ତ୍ତକ ମଧ୍ୟରେ ସେମାନେ ରଥସହ ଅନ୍ଧକାରରେ ଅଦୃଶ୍ୟ ହୋଇଗଲେ ।

ଯୁଦ୍ଧ ଭୂମିରେ ରାଜାଙ୍କ ରଥ ପଳାୟିତ ଦେଖି ମଗଧ ସୈନ୍ୟଗଣଙ୍କ ମଧ୍ୟରେ ନୈରାଶ୍ୟର ଗଭୀର ଛାୟା ପତିତ ହେଲା । ରଥ ଉପରେ ଛତ୍ର ସହିତ ରାଜାଙ୍କୁ ଦେଖିବାକୁ ନପାଇ ସମସ୍ତେ ଭାବିଲେ ରାଜା ମୃତ ଓ ଭୂପତିତ ହୋଇଛନ୍ତି । ସେନାପତି ଅଭାବରେ ମଗଧ ସୈନ୍ୟଗଣ ପୃଷ୍ଠଭଙ୍ଗ ଦେଲେ । ମାଳବ ସୈନ୍ୟମଧ୍ୟରେ ବିଜୟ ଉନ୍ମତ୍ତ ବାଜା ଉଠିଲା । ମାନସାର ପାଟଳୀପୁତ୍ର ଅଧିକାର କରି ଶୂନ୍ୟ ସିଂହାସନରେ ନିଜକୁ "ଏକାଧିରାଜ" ବୋଲି ଘୋଷଣା କଲେ ।

---

## (୨)

# ରାଜବାହନଙ୍କର ଜନ୍ମ

ରାଜହଂସଙ୍କ ମନ୍ତ୍ରୀଗଣ କ୍ଷତବିକ୍ଷତ ଶରୀରରେ ସମଗ୍ର ରଜନୀ ଯୁଦ୍ଧକ୍ଷେତ୍ରରେ ଅତିବାହିତ କରିଥିଲେ । ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ସେମାନେ ଚେତନା ପାଇ ପୂର୍ବ ଦିନର ଘଟଣା ସ୍ମରଣ କରି ଭଗ୍ନ ହୃଦୟରେ ଶବସ୍ତୂପ ମଧ୍ୟରେ ରାଜାଙ୍କର ମୃତଦେହର ସନ୍ଧାନ କରିବାକୁ ଲାଗିଲେ; କିନ୍ତୁ ରାଜାଙ୍କର କୌଣସି ଚିହ୍ନ ନପାଇ ଗଭୀର ମନୋବେଦନା ସହ ଏ ଦୁଃସମ୍ବାଦ ରାଣୀଙ୍କ କର୍ଣ୍ଣଗୋଚର କରାଇବା ପାଇଁ ବିନ୍ଧ୍ୟ ପର୍ବତ ଅଭିମୁଖରେ ଗତିକଲେ ।

ବିନ୍ଧ୍ୟ ପର୍ବତର ଗହ୍ୱର ମଧ୍ୟରେ ରାଣୀ ବସୁମତୀ ପ୍ରତି ପଳକରେ ରାଜାଙ୍କ ଅପେକ୍ଷାରେ ଥାନ୍ତି । ପ୍ରତ୍ୟେକ ମୁହୂର୍ତ୍ତ ତାଙ୍କୁ ଯୁଗପରି ବୋଧ ହେଉଥାଏ; ହୃଦୟ ମଧ୍ୟରେ ଆଶା ଓ ଆଶଙ୍କାର ଭୀଷଣ ବାତ୍ୟା ଘୂର୍ଣ୍ଣୀୟମାନ ହେଉଥାଏ । ତେଣୁ ମନ୍ତ୍ରୀମାନଙ୍କଠାରୁ ରାଜାଙ୍କର ନିରୁଦ୍ଦେଶ ସମ୍ବାଦ ପାଇ ସଙ୍ଗେ ସଙ୍ଗେ ସେ ହତ-ଚୈତନ୍ୟ ହୋଇ ପଡ଼ିଲେ ଏବଂ ଅନେକ ସମୟ ପରେ ସଚେତ ହୋଇ ବିକଳ କଣ୍ଠରେ ବିଳାପ କରିବାକୁ ଲାଗିଲେ । ପତି ବିନା ସତୀର ଜୀବନ ତୃଣ ତୁଲ୍ୟ ହେତୁ; ପତି ବିନାଶରେ ହିଁ ତାର ଇହ ଜୀବନର ସକଳ ଆଶା, ଭରସା, ସୁଖ ସୌଭାଗ୍ୟ ଲୋପ ପାଇଥାଏ ।

ରାଣୀ ବସୁମତୀ ଅବା ଏ ଆଘାତ ସହ୍ୟ କରନ୍ତେ· କପରି ? ଏକାଧାରରେ ରାଜ୍ୟନାଶ, ବନବାସ ଓ ପତି ବିଚ୍ଛେଦ । ସେ ପତିଙ୍କର ସହଗମନ କରି ସକଳ ଯନ୍ତ୍ରଣାରୁ ନିଷ୍କୃତି ପାଇବା ନିମନ୍ତେ ଦୃଢପ୍ରତିଜ୍ଞ ହେଲେ ।

କିନ୍ତୁ ସେତେବେଳେ ବସୁମତୀଙ୍କର ଜୀବନ ସ୍ୱାଧୀନ ନ ଥିଲା—ସେ ଗର୍ଭବତୀ । ତେଣୁ ମନ୍ତ୍ରୀମାନେ ତାଙ୍କୁ ଏ ଭୀଷଣ ପ୍ରତିଜ୍ଞାରୁ କ୍ଷାନ୍ତ ହେବା ପାଇଁ ନାନା ପ୍ରକାର ସାନ୍ତ୍ୱନା ବାଣୀ ଶୁଣାଇଲେ; ତାଙ୍କର ଗର୍ଭସ୍ଥ ସନ୍ତାନ ଦିନେ ଭାରତର ରାଜାଧିରାଜ ହେବେ ଏକଥା ଜ୍ୟୋତିର୍ବିଦ୍‌ମାନେ ଜଣାଇଲେ ।

କ୍ରମେ ସୂର୍ଯ୍ୟ ଅସ୍ତହେଲେ—ରଜନୀର ସର୍ବଗ୍ରାସୀ କବଳରେ ବନ, ପର୍ବତ, ଗ୍ରାମ, ପ୍ରାନ୍ତର ଲୁଚିଗଲା । ଏହି ଅବସରରେ ବସୁମତୀ ଗୁମ୍ଫା ମଧ୍ୟରୁ ଗୋପନରେ ପଳାୟନ କଲେ । ସେ କିଛି ଦୂରଯାଇ ଗୋଟାଏ ବୃକ୍ଷ ଉପରେ ଉଠିଲେ ଏବଂ ବୃକ୍ଷଶାଖାରେ ନିଜ ପରିଧେୟ ବାନ୍ଧି ଅନ୍ୟ ପାଖରେ ଏକ ଫାଶ କରି ନିଜ ଗଳାରେ ଗଳାଇ ଦେଲେ । ସେ ଲମ୍ଫଦେଇ ଇହଲୀଳାର ଶେଷ ଯବନୀକା ପାତ କରିବା ପୂର୍ବରୁ ହୃଦୟ ଭିତରୁ ଗୋଟାଏ ରକ୍ତଶୋଷୀ ଦୀର୍ଘଶ୍ୱାସ ଫୁଟି ଉଠି ନୈଶାକାଶରେ ବିଲୀନ ହେଲା । ଦଶ ଦିଗ ପାଳଙ୍କୁ ସାକ୍ଷୀ ରଖି ସେ କହିଲେ—"ହେ ପ୍ରାଣେଶ୍ୱର, ଏ ଦାସୀକୁ ଏକାକୀ ଏ ସଂସାର କାନନ ମଧ୍ୟରେ ପାଦତ୍ୟାଗ କରି ଚାଲିଯିବା କଣ ଅପଣଙ୍କର ଠିକ୍ ହୋଇଛି ? ଅପଣ ଜଗତୀର ସମସ୍ତଙ୍କ ପ୍ରତି ସଦୟ ଥିଲେ । ଅଥଚ ଏ ଦାସୀ ପ୍ରତି ଏପରି ନିର୍ଦ୍ଦୟ ହେଲେ କାହିଁକି ? ଅପଣଙ୍କ ଗୁଣାବଳୀର ସଦ୍‌ବ୍ରତ ବିଗ୍ରହ କରିବା ଅବଶ୍ୟ ଏ ଅଧୀନାର ଔଚିତ୍ୟର ବାହାରେ—ତେଣୁ ଏହି ଶେଷ ମୂହୂର୍ତ୍ତରେ ଦଶଦିଗପାଳଙ୍କୁ ସାକ୍ଷୀ ରଖି ଏତିକି ମାତ୍ର ପ୍ରାର୍ଥନା

କରୁଛି—ଏ ଅଧୀନା ପର ଜନ୍ମରେ ଆପଣଙ୍କୁହିଁ ଯେପରି ପତି ଭାବରେ ପାଇ ସେ ପାଦପଦ୍ମ ସେବା କରିବାର ଅଧିକାର ଲାଭ କରେ ।"

ବସୁମତୀ ବୃକ୍ଷ ଶାଖାରୁ ଲମ୍ଫ ପ୍ରଦାନ କରିବାକୁ ଯାଉଛନ୍ତି ହଠାତ୍ ଶୁଣି ପାରିଲେ ଅଦୂରରେ କଣେ କେହି ବିକଳ କଣ୍ଠରେ ତାଙ୍କ ନାମଧରି ଡାକୁଛି, ସେ ଉତ୍କଣ୍ଠିତ ହୋଇ ଶୁଣିଲେ— "ବସୁମତି, ବସୁମତି, ଅପେକ୍ଷା କର । ଆତ୍ମହତ୍ୟା କରନାହିଁ, ମୁଁ ଜୀବିତ ..." ବସୁମତୀ ଜାଣି ପାରିଲେ ଏ କଣ୍ଠସ୍ୱର ନିଜ ପତି ଦେବତାଙ୍କର । ସେ ଅତି ନିକଟରେ କୌଣସି ସ୍ଥାନରେ ବୋଧହୁଏ ନିରାଶ୍ରୟ ଅବସ୍ଥାରେ ଯନ୍ତ୍ରଣା ଭୋଗୁଛନ୍ତି ଏବଂ ତାହାଙ୍କର ଶେଷବାଣୀ ଶୁଣି ଏପରି ବିକଳ ଚିତ୍କାର କରୁଛନ୍ତି । ବସୁମତୀ ତତ୍କ୍ଷଣାତ୍ ବୃକ୍ଷରୁ ଅବତରଣ କରି ଯେଉଁ ଆଡୁ କରୁଣ ସ୍ୱର ଭାସି ଆସୁଥିଲା ସେହି ଦିଗରେ ଧାବମାନ ହେଲେ ।

କିଛିଦୂର ଯାଇ ବସୁମତୀ ଦେଖିଲେ ଗୋଟାଏ ରଥ ବୃକ୍ଷ ଶାଖାରେ ଆଘାତ ପାଇ ଅର୍ଦ୍ଧଭଗ୍ନ ଅବସ୍ଥାରେ ରହିଅଛି ଏବଂ ତା ଭିତରୁ ସେ ଅମୃତମୟ କଣ୍ଠସ୍ୱର ଫୁଟିଉଠୁଛି । ସେ ରଥ ଉପରକୁ ଯାଇ ଦେଖିଲେ ବାସ୍ତବିକ୍ ତାଙ୍କର ହୃଦୟ ଦେବତା ଅର୍ଦ୍ଧ ଚୈତନ୍ୟ ଅବସ୍ଥାରେ ପତିତ । ସେ ପଲକ ମାତ୍ରକରେ ତାଙ୍କୁ ହୃଦୟ ନିକଟକୁ ଟାଣି ଆଣିଲେ । ଦୁଇ ଚକ୍ଷୁରୁ ତପ୍ତ ଅଶ୍ରୁଧାର ବହିବାକୁ ଲାଗିଲା— ଶୋକୋଚ୍ଛ୍ୱାସରେ ଅବରୁଦ୍ଧ କଣ୍ଠ ବାକ୍ ସ୍ଫୁର୍ତ୍ତି ହୀନ ହୋଇ ପଡ଼ିଲା—କେବଳ ପରସ୍ପରର ଆନ୍ଦୋଳିତ ହୃଦୟର ସୂକ୍ଷ୍ମ କମ୍ପନ ଉଭୟେ ଅନୁଭବ କଲେ ଓ ପରସ୍ପରର ତପ୍ତ ନେତ୍ରଜଳର ମିଳନରେ ସକଳ ଭାବ ବାଙ୍ମୟ ହୋଇଗଲା ।

ରାଜହଂସ ବସୁମତୀଙ୍କ ସ୍କନ୍ଧରେ ମସ୍ତକ ନ୍ୟସ୍ତକରି ଗୁମ୍ଫା ମଧ୍ୟକୁ ଆଗମନ କଲେ । ରାଜା ଓ ରାଣୀଙ୍କୁ ଏପରି ଭାବରେ ଏକତ୍ର ପାଇ ମନ୍ତ୍ରୀ ଓ ଦାସଦାସୀମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେମାନେ ରାଜ୍ୟର ପିତାମାତାଙ୍କୁ ମୃତ୍ୟୁ ମୁଖରୁ ଫେରି ପାଇଥିବା ଯୋଗୁଁ ଏକ ମୁଖରେ ପରମେଶ୍ୱର ଭଗବାନଙ୍କୁ ଅଶେଷ ଧନ୍ୟବାଦ ଦେଲେ ।

ରାଜହଂସଙ୍କୁ ବନବାସ ଅବଶ୍ୟ ଅଧିକତର ଶାନ୍ତିପ୍ରଦ ବୋଧ ହେଲା । କିନ୍ତୁ ଯେତେବେଳେ ସୁକୁମାରୀ ବସୁମତୀ ବନ୍ୟ ଫଳମୂଳ ଭକ୍ଷଣ କରି ନିର୍ମମ ପାଷାଣପୃଷ୍ଠରେ ଶୟନକରିବାର ସେ ନିଜ ଚକ୍ଷୁରେ ଦେଖନ୍ତି ସେତେବେଳେ ତାଙ୍କର ବିକ୍ଷୁବ୍ଧହୃଦୟ ମଧ୍ୟ ବିଦ୍ରୋହୀ ହୋଇ ଉଠେ ବିଧାତାର ନିର୍ମମ ସୃଷ୍ଟିପ୍ରଣାଳୀ ବିରୁଦ୍ଧରେ —ତାଙ୍କର ସହିଷ୍ଣୁ ପ୍ରାଣର ସମସ୍ତ ଧୈର୍ଯ୍ୟ ଓ ସାହସ ସ୍ୱତଃ ପରାଭୂତ ହୁଏ ।

ଦଶମାସ ପରେ ଦିନେ ଶୁଭ ଲଗ୍ନରେ ବସୁମତୀ ଗୋଟିଏ ପୁତ୍ର ସନ୍ତାନ ପ୍ରସବ କଲେ । ପୁତ୍ରମୁଖ ଦର୍ଶନକରି ରାଜହଂସଙ୍କ ବିଷାଦ-ତମିରାଚ୍ଛନ୍ନ-ହୃଦୟ-କନ୍ଦର ବାତ୍ସଲ୍ୟ ପ୍ରେମାଲୋକରେ ଉଦ୍‌ଭାସିତ ହୋଇ ଉଠିଲା । ସେ ଋଷି ବାମଦେବଙ୍କଠାରୁ ଅବଗତ ହୋଇଥିଲେ ଯେ, ଏ ଗର୍ଭର ସନ୍ତାନ ଅତି ବିକ୍ରମଶାଳୀ ଓ ରାଜଚକ୍ରବର୍ତ୍ତୀ ହେବ । ତେଣୁ ଏକ ବିଂଶତି ଦିବସରେ ପୁତ୍ରର ନାମ କରଣ କଲେ 'ରାଜବାହନ' ।

ଏଥି ମଧ୍ୟରେ ମନ୍ତ୍ରୀ ସୁମନ୍ତ୍ର, ସୁମିତ୍ର, ସୁଶ୍ରୁତ ଓ ସୁମତିଙ୍କର ଗୋଟିଏ ଗୋଟିଏ ପୁତ୍ର ସନ୍ତାନ ଜନ୍ମ ଗ୍ରହଣ କରିଥିଲେ । ସୁମନ୍ତ୍ରଙ୍କ ପୁତ୍ରର ନାମ ଦିଆଗଲା ଶିବଗୁପ୍ତ, ସୁମିତ୍ରଙ୍କ ପୁତ୍ରର ନାମ ମନ୍ତ୍ରଗୁପ୍ତ; ସୁମତିଙ୍କ ପୁତ୍ରର ନାମ ପ୍ରମତି ଓ ସୁଶ୍ରୁତଙ୍କ ପୁତ୍ରର ନାମ ରଖାଗଲା ବିଶ୍ରୁତ ।

---

## (୩)

# ଉପହାର ବର୍ମା ଓ ଅପହାର ବର୍ମାଙ୍କ ଆଗମନ

**ଉପହାର ବର୍ମା**—ରାଜବାହନଙ୍କ ଜନ୍ମର କେତେକ ମାସ ପରେ ଦିନେ ଜଣେ ବ୍ରାହ୍ମଣ ଗୋଟିଏ ସୁକୋମଳ ଶିଶୁ ସହ ରାଜହଂସଙ୍କ କୁଟୀରରେ ଉପସ୍ଥିତ ହେଲେ । ସେ ଶିଶୁଟିକୁ ରାଜହଂସଙ୍କ ଆସନ ନିକଟରେ ବସାଇ ଦେଇ କହିଲେ—ମହାରାଜ ଏ ଶିଶୁଟି ମିଥିଳା ନରପତି ପ୍ରହାର ବର୍ମାଙ୍କ ପୁତ୍ର । ଅରଣ୍ୟର ଶବରମାନେ ଏହାଙ୍କୁ କାଳୀଙ୍କ ନିକଟରେ ବଳି ଦେଉଥିଲେ । ବହୁ କଷ୍ଟରେ ମୁଁ ଏହାଙ୍କୁ ଉଦ୍ଧାର କରିଛି । ଆପଣ ଶିଶୁଟିକୁ ଗ୍ରହଣ କରି ଲାଳନ ପାଳନର ବ୍ୟବସ୍ଥା କଲେ ବିଶେଷ ମଙ୍ଗଳ ହେବ ।

ମିଥିଳା ନରପତି ପ୍ରହାର ବର୍ମାଙ୍କ ସନ୍ତାନ ଶବର ହସ୍ତରେ ପ୍ରାଣ ହରାଉଥିଲେ, ଏକଥା ଶୁଣି ରାଜହଂସ ବିଶେଷ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଡ଼ିଲେ । ସେ ସମସ୍ତ ଘଟଣା ବର୍ଣ୍ଣନା କରିବା ପାଇଁ ବ୍ରାହ୍ମଣଙ୍କୁ ଅନୁରୋଧ କଲେ ।

ବ୍ରାହ୍ମଣ କହିଲେ—ଦିନେ ମୁଁ ବନ ପଥରେ ଯାଉ ଯାଉ ଗୋଟିଏ ବୃଦ୍ଧା ସେହିପଥରେ ଏକାକିନୀ ଆସୁଥିବାର ଦେଖିଲି । ବୃଦ୍ଧାର ଅଙ୍ଗପ୍ରତ୍ୟଙ୍ଗ ଓ ଗତି ବିଧିରୁ ସେ ନିତାନ୍ତ ନୀଚଜାତି

ସମ୍ମୁଖରେ ଥିବା ବୋଲି ବୋଧ ହେଉ ନଥିଲା । କିନ୍ତୁ ତାର ଦେହର ବସ୍ତ୍ର ଶତ ଛିନ୍ନ, ମସ୍ତକର କେଶ ରୁକ୍ଷ ଏବଂ ଚକ୍ଷୁ ଲୋତକସିକ୍ତ ଦେଖି ମୁଁ ତାର ପରିଚୟ ମାଗିଲି । ବୁଢ଼ୀ ମୋଠାରୁ ଆଶ୍ୱାସନାସୂଚକ ପ୍ରଶ୍ନ ଶୁଣି ବାକୁଳ କଣ୍ଠରେ ଅଧିକ କ୍ରନ୍ଦନ କରି କହିଲା—ଆଜ୍ଞା, ମୁଁ ଓ ମୋର କନ୍ୟା ମିଥିଳା ରାଜପ୍ରାସାଦରେ ଦାସୀକାମ କରୁ । ସେଠି ଆମର କାମ ଥିଲା ତାଙ୍କର ଦୁଇ ପୁଅଙ୍କୁ ପାଳିବା । ମୁଁ ବଡ଼ ପୁଅଟିକୁ ପାଳୁଥିଲି ଓ ମୋ ଝିଅ ସାନ ପୁଅଟିକୁ ପାଳୁଥିଲା । କେତେଦିନ ତଳେ ଆମ ରାଜା ରାଣୀ ମଗଧ ଦେଶକୁ ଆସିଥିଲେ । ମଗଧ ରାଣୀଙ୍କର ସେତେବେଳେ ସୀମନ୍ତ ଉତ୍ସବ ହେଉଥିଲା । ଆମେ ମାଝିଅ ଦୁଇ ପୁଅଙ୍କୁ ଧରି ଆସିଥିଲୁ । ଉତ୍ସବ ଦିନ ଆଉ ଗୋଟାଏ ଦେଶର ରଜା ଆସି ମଗଧ ଚଢ଼ାଉ କଲା । ମଗଧରେ ଘୋର ଲଢ଼େଇ ହେଲା । ମଗଧ ରାଜା ଯୁଦ୍ଧରେ ମରିଗଲେ । ଆମ ରାଜା ମଧ୍ୟ ମଗଧ ରଜାଙ୍କ ପାଖେ ଲଢ଼େଇ କରୁଥିଲେ । ମାତ୍ର ସେ ହାରିଯିବାରୁ ଭାଳେ ଶତ୍ରୁ ମିଥିଳା ଆକ୍ରମଣ କରିବ ଏହି ଭୟରେ ତର ତର ହୋଇ ନିଜ ରାଜ୍ୟ ରକ୍ଷା କରିବାକୁ ଧାଇଁଲେ । ଦୁର୍ଭାଗ୍ୟକୁ ବାଟରେ ଗୁଡ଼ାଏ ବଣୁଆ ଲୋକ ତାଙ୍କୁ ବାଟ ଅଗୁଳିଲେ । ଏଠାରେ ପୁଣି ଲଢ଼େଇ ଲାଗିଲା । ସେମାନେ ମିଥିଳା ସୈନ୍ୟଙ୍କୁ ପାରନ୍ତେ କୁଆଡ଼ୁ —ଅଳ୍ପ ଯୁଦ୍ଧରେ ସେମାନେ ହାରିଗଲେ । ମାତ୍ର ଏ ଗଣ୍ଡଗୋଳ ଭିତରେ ମୁଁ ଆଉ ମୋର ଝିଅ ପୁଅ ଯୋଡ଼ିକୁ ଧରି ଗୋଟାଏ ଅଣବାଟରେ ପଡ଼ିଲୁ । ଆମ ସାଙ୍ଗରେ, ଆଉ କେହି ନ ଥାଏ । ଏପରି ସମୟରେ ଗୋଟାଏ ମହାବଳ ବାଘ ଆମ ଆଗରେ ଆସି ଠିଆ ହେଲା । ପ୍ରାଣ ଭୟରେ ଉଭୟେ ଧାଇଁ ଗଳି ଯିବାକୁ ବାହାରିଲୁ । କିନ୍ତୁ ମୁଁ ପାଦେ ଯାଇଛି କି ନାହିଁ, ଗୋଟାଏ ଗଛର ଖୁଣ୍ଟା ଝୁଣ୍ଟି ଲେଉଟି ପଡ଼ିଲି । ପିଲାଟି ମୋ କାଖରୁ ଫିଙ୍ଗି ହୋଇ

ଖଣ୍ଡେ ଦୂରରେ ପଡ଼ିଲା । ଭାଗ୍ୟକୁ ପିଲାଟି ଦାନ୍ତରେ ଆଘାତ ଲାଗିଲା ନାହିଁ । ସେ ଉଠି ବସି ବାଘକୁ ଚାହିଁ କାଳ୍ କାଳ ହୋଇ ହସିବାକୁ ଲାଗିଲା । ଆଶ୍ଚର୍ଯ୍ୟର କଥା ବାଘ ଆମ ଦୁହିଙ୍କୁ ଏତେ ନିକଟରେ ପାଇ ମଧ୍ୟ କିଛି କଲା ନାହିଁ । ମୂହୂର୍ତ୍ତିକ ପରେ ବାଘଟା ମେଘ ଗର୍ଜନ ପରି ରଡ଼ି କରି ଭୂଇଁରେ ଲୋଟି ପଡ଼ିଲା । ମୋର ତ ସେତେବେଳେ ଉଠିବାର ଶକ୍ତି ନଥାଏ, ସେଠାପରି ପଡିରହି ଦେଖିଲି କିଛି ଦୂରରୁ ଜଣେ ଲୋକ ବାଘକୁ ଶର ମାରିଥିବାରୁ ବାଘଟି ଛଟପଟ ହେଉଛି ଏବଂ ତାଙ୍କ ଭିତରୁ ଜଣେ ଧାଇଁ ଆସି ମୋର ପିଲାଟିକୁ ଧରି ବଣଭିତରେ ପଶି ଯାଉଛି । ମହାବଳ ବାଘଠାରୁ ଏ ଲୋକ ଗୁଡ଼ାକ ଅଦ୍ଭୁତ ଭୟଙ୍କର ଦେଖା ଯାଉଥିଲେ । ମୁଁ ଚେଷ୍ଟା କରି ମଧ୍ୟ ପାଟିକରି ସେମାନଙ୍କୁ ଡାକିପାରିଲି ନାହିଁ । ତା ପରେ କଣହେଲା ମୁଁ ଜାଣେ ନାହିଁ ।

ମୁଁ ଚେତା ପାଇଲି ଜଙ୍ଗଲର ଗୋଟିଏ ଗଉଡ଼ ଘରେ । ଗଉଡ଼ ଓ ଗଉଡୁଣୀଙ୍କ ସେବାରେ ମୁଁ କ୍ରମେ ବଳ ପାଇଲି । କିଛି ଦିନ ପରେ ଭାବିଲି, ମିଥିଳା ନଗରକୁ ଫେରିଯିବି । କିନ୍ତୁ ଫେରିଯାଇ କେଉଁ ମୁହଁରେ ରାଜା ରାଣୀଙ୍କ ଆଗେ ଠିଆ ହେବି ? ଏଇ ଚିନ୍ତା ମୋର ହୃଦୟକୁ ପେଡ଼ି ପକାଇଲା । ତେଣୁ ଠିକ୍ କଲି, ମୋର ମରଣ ଯାଏଁ ଏ ବଣ ଭିତରେ ମୋର ପିଲାଟିକୁ ଖୋଜି ବୁଲିବି ।

ଏହା କହି ବୁଢ଼ୀ ଆବେଗରେ କାନ୍ଦିବାକୁ ଲାଗିଲା । ବୁଢ଼ୀର ଦୁଃଖ କାହାଣୀ ଓ ତାର ଦୃଢ଼ ପ୍ରତିଜ୍ଞା କଥା ଶୁଣି ମୋର ହୃଦୟ ମଧ୍ୟ ତରଳି ଗଲା । ମୁଁ ବୁଢ଼ୀକୁ ସାନ୍ତ୍ୱନା ଦେଇ ତାକୁ ଯଥାସମ୍ଭବ ଏ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଲି ।

ସେହି ଦିନଠାରୁ ମୁଁ ଜଙ୍ଗଲର ପ୍ରତ୍ୟେକ ଶବର ପଲ୍ଲୀକୁ ଯାଇ ଘର ଘର ବୁଲି ଖୋଜିଲି । ଦିନେ ମୋର ପଥ ମଧ୍ୟରେ ଗୋଟିଏ ବଡ଼ ଶବର ପଲ୍ଲୀ ପଡ଼ିଲା । ସେ ଦିନ ସେ ପଲ୍ଲୀରେ ଗ୍ରାମ୍ୟ ଉତ୍ସବ ଲାଗିଥାଏ । ଶୁଣିଲି ସେ ଗାଁର ଇଷ୍ଟ ଦେବୀଙ୍କ ନିକଟରେ ନରବଳି ଦିଆଯାଉଛି । ସମସ୍ତ ଗ୍ରାମବାସୀ ସେ ଦିନ ସେହିଠାରେ ରୁଣ୍ଡ । ମୁଁ ମଧ୍ୟ ସେହିଠାରେ ଯାଇ ପହଞ୍ଚିଲି ।

ଜୀବନରେ କେବେ ଭାବି ନ ଥିଲି ଦିନେ ମୋତେ ଏପରି ଏକ ବୀଭତ୍ସ ଘୃଣ୍ୟର ଦର୍ଶକ ଭାବରେ ଦଣ୍ଡାୟମାନ ହେବାକୁ ହେବ । ଶହ ଶହ ଭୀଷଣ ନରରାକ୍ଷସଙ୍କ ମଧ୍ୟରେ କରାଳ କାଳୀମୂର୍ତ୍ତି—ସମ୍ମୁଖରେ ଅର୍ଦ୍ଧ—ଦଗ୍ଧ ହିତ ଗୋଲାପ କଳିଟି ପରି ଗୋଟିଏ କୋମଳ ଶିଶୁ—ବେକରେ ମନ୍ଦାରମାଳା—ସର୍ବାଙ୍ଗରେ ରକ୍ତଚନ୍ଦନ—ପାର୍ଶ୍ୱରେ ଶାଣିତ ଖଡ୍‌ଗହସ୍ତ ଘାତକ—ଚତୁର୍ଦ୍ଦିଗରେ ଅର୍ଦ୍ଧନଗ୍ନ ବିକୃତ ମୁଖ ଉନ୍ମତ୍ତ ଯୁବକ ଯୁବତୀମାନଙ୍କର ତାଣ୍ଡବନୃତ୍ୟ—ଗୀତ—ବାଦ୍ୟ ।

ଏ ହତଭାଗା ଶିଶୁ ଯେ ନିଶ୍ଚୟ ମିଥିଳା ରାଜକୁମାର ଏଥିରେ ମୋର ଅଣୁମାତ୍ର ସନ୍ଦେହ ରହିଲା ନାହିଁ । କିନ୍ତୁ ଏପରି ଅବସ୍ଥାରେ ମୁଁ ତାଙ୍କୁ ଉଦ୍ଧାର କରିବା ପାଇଁ ଚେଷ୍ଟା କରିବା ଦ୍ୱାରା ଆଜି ମୋର ନିଜ ପ୍ରାଣ ପ୍ରତି ବି ଭୟ ହେଲା । ମୁଁ ମନେ କଲି ଶତ ରାହୁ କବଳରୁ ଏକମାତ୍ର ଚନ୍ଦ୍ରଙ୍କୁ ଉଦ୍ଧାର କରିବା ପାଇଁ ଚେଷ୍ଟା କରିବା ଏବଂ ଏ ଶିଶୁକୁ ଉଦ୍ଧାର କରିବା ପାଇଁ ପ୍ରୟାସ କରିବା ଏକା କଥା । ମୁଁ ନୀରବରେ କିଛି ସମୟ ଠିଆ ହୋଇ ଚକିତ ନୟନରେ ଚାହିଁ ରହିଥିଲି ।

ଅକସ୍ମାତ୍ ମୋ ମୁଣ୍ଡରେ ଗୋଟାଏ ବୁଦ୍ଧି ପଶିଲା । ମୁଁ ହଠାତ୍ ସେଠାରେ ଉଚ୍ଚସ୍ୱରରେ କାନ୍ଦି ବସିଲି । ଉତ୍ସବ ସମୟରେ କେହି ଜଣେ କାନ୍ଦୁଥିବାର ଶୁଣି ଶବର ଗୁଡ଼ାକ ଅତି କ୍ଷୁବ୍ଧ ହୋଇଗଲେ । ମୁଁ କାହିଁକି କାନ୍ଦୁଛି ଜଣା ଜଣା କରି ପଚାରିଗଲେ । ମୁଁ କାନ୍ଦି କାନ୍ଦି କହିଲି— ମା କାଳିକା ତୁମମାନଙ୍କୁ ଶହ ଶହ ବର୍ଷ ପରମାୟୁ ଦେଉ । ତୁମମାନଙ୍କୁ ନିତି ନିତି ବଡ଼ ବଡ଼ ପାରିଧି ମିଳୁ । ମୁଁ ବ୍ରାହ୍ମଣ; ମୋର ଗୋଟିଏ ବୋଲି ପୁଅ; ମୋର ବୁଢ଼ୀମା ବଣରେ ଅଇଲା ବେଳେ ବାଘ ହାବୁଡ଼େ ପଡ଼ି ପିଲାଟିକୁ ହଜେଇ ଦେଇଛି । ତୁମେ କାଏ ଦେଖିଥିଲେ କହ । ମା କାଳୀ ତୁମର ମଙ୍ଗଳ କରିବ ।

ମୋର ବିକଳ କ୍ରନ୍ଦନ ବାସ୍ତବରେ ଶବରମାନଙ୍କ ପାଷାଣ ହୃଦୟକୁ ମଧ୍ୟ ତରଳାଇ ଦେଇଥିଲା । ସେମାନେ ଯେଉଁ ଶିଶୁଟିକୁ ବଳି ଦେଉଥିଲେ ସେଇଟି ମୋର କି ନାହିଁ ଦେଖିବା ପାଇଁ କହିଲେ । ଏହି ସୁଯୋଗରେ ମୁଁ କାଳୀଙ୍କ ନିକଟକୁ ଧାଇଁ ଯାଇ ରାଜକୁମାରଙ୍କୁ କୋଳରେ ଧରି ଚୁମ୍ବନ ଦେବାକୁ ଲାଗିଲି । ରାଜକୁମାର ମଧ୍ୟ ଜୀବନ ଭୟରେ ମୋତେ କୁଣ୍ଢେଇ ଧରି ପକାଇଲେ । ଉଭୟଙ୍କ ଆଖିରୁ ଅବିରଳ ଅଶ୍ରୁ ଗଳିପଡ଼ିଲା ।

ଏ କଥା ଦେଖି ଶବରମାନେ ଭାବିଲେ ଯେ, ଶିଶୁଟି ନିଶ୍ଚୟ ମୋହର ପୁଅ । ତେଣୁ, ସେମାନେ କୌଣସି ବାଧା ନ ଦେଇ ଆମ ଦୁହିଁଙ୍କୁ ବିଦାୟ ଦେଲେ । ମୁଁ ସେମାନଙ୍କୁ ଅଶେଷ ଆଶୀର୍ବାଦ ଦେଇ ଫେରି ଆସିଲି ।

ମହାରାଜ, ଶୁଣି ପାରିଲି ମିଥିଳା ଦେଶ ବର୍ତ୍ତମାନ ଜଣେ ଅତ୍ୟାଚାରୀ ରାଜାଦ୍ୱାରା ଅଧିକୃତ । ତେଣୁ ଶିଶୁଟିକୁ ଛାମୁଙ୍କ ନିକଟକୁ

ନେଇ ଆସିଲି । ତୁମ୍ଭେ ଏହାଙ୍କର ଲାଳନପାଳନର ଭାର ଗ୍ରହଣ କଲେ ବ୍ରାହ୍ମଣର ଶ୍ରମ ଚରିତାର୍ଥ ହେବ ।

ପ୍ରହାର ବର୍ମା ରାଜହଂସଙ୍କର ଜଣେ ପରମ ବନ୍ଧୁ ଥିଲେ । ସେ ଏ ସମ୍ବାଦରେ ବିଶେଷ ମର୍ମାହତ ହୋଇ ଶିଶୁଟିକୁ ସାଦରେ ଗ୍ରହଣ କଲେ । ଶିଶୁଟିର ନାମଦେଲେ ଉପହାର ବର୍ମା ।

**ଅପହାର ବର୍ମା**— ରାଜହଂସ ଥରେ କଷ୍ଟଦନ ପାଇଁ ତୀର୍ଥଯାତ୍ରା କରି ଯାଇଥିଲେ । ସେ ଗଙ୍ଗାସ୍ନାନ କରି ଫେରିବା ସମୟରେ ବାଟରେ ଗୋଟାଏ ଶବର ପଲ୍ଲୀ ପଡ଼ିଲା । ସେ ଗ୍ରାମଟି ଅତିକ୍ରମ କରି ଗଲାବେଳେ ଦେଖିଲେ, କେତେକ ଶବର ରମଣୀ ଜଳକୁମ୍ଭ ଧରି ଗ୍ରାମ ମଧ୍ୟକୁ ଆସୁଛନ୍ତି । ସେମାନଙ୍କ ସଙ୍ଗରେ ଗୋଟିଏ ଅତି ସୁନ୍ଦର କୋମଳ ଶିଶୁ ତାର ଛୋଟ ଛୋଟ କ୍ରୋଡ଼ି ପାଦ ପକାଇ ଧାଉଁଛନ୍ତି । ଶିଶୁଟିକୁ ଦେଖିଲେ ସେ ଯେ କୌଣସି ଶବର ସନ୍ତାନ ନୁହେଁ ଏହା ସ୍ପଷ୍ଟ ଜଣା ପଡ଼ୁଥିଲା । ତାର ଅଙ୍ଗ ପ୍ରତ୍ୟଙ୍ଗରେ ରାଜଲକ୍ଷଣ ଫୁଟି ଉଠୁଥିଲା । ରାଜହଂସ ଶିଶୁଟିକୁ ଏପରି ଅବସ୍ଥାରେ ଦେଖି ଶବରୁଣୀକୁ ଡାକି ପିଲାଟି କାହାର ବୋଲି ପଚାରିଲେ ।

ଶବରୁଣୀ କହିଲା—ଥରେ ମିଥିଳା ଦେଶର ରଜା ଏବାଟେ ଯାଉଥିଲେ । ଆମ ରାଜ୍ୟ ଭିତରେ ସେ ସୈନ୍ୟ ଧରି ଯାଉଥିବାରୁ ଆମ ଗାଁର ମର୍ଦ୍ଦମାନେ ତାଙ୍କୁ ଅଟକାଇ ତାଙ୍କ ସଙ୍ଗେ ଲଢ଼େଇ କଲେ । ଲଢ଼େଇ ସରିଲା ଉତ୍ତାରୁ ଆମ ଘର ଲୋକ ଏ ପିଲାଟିକୁ କୁଅଡ଼ୁ ଗୋଟାଇ ଆଣିଥିଲେ ।

ଏଥିରୁ ରାଜହଂସ ସ୍ପଷ୍ଟ ବୁଝିପାରିଲେ, ଶିଶୁଟି ନିଶ୍ଚୟ ଉପହାର ବର୍ମାର ଭାଇ ହେବ । ତେଣୁ ପୁଅଟିକୁ ତାଙ୍କୁ ଦେଇ ଦେବା ପାଇଁ ସେ ଶବରୁଣୀକୁ ଅନୁରୋଧ କଲେ । ପ୍ରକୃତରେ ଶବରୁଣୀ ପିଲାଟି

ପ୍ରତି ଅତିଶୟ ଅନୁରକ୍ତା ହୋଇ ପଡ଼ିଥିଲା । ସୁତରାଂ ସେ ଏ ପ୍ରସ୍ତାବରେ ପ୍ରଥମେ ଅସ୍ୱୀକାର କଲା; ମାତ୍ର ଶିଶୁ ପ୍ରତି ରାମତୀର୍ଥଙ୍କର ମଧୁର ବ୍ୟବହାର ସ୍ମରଣ କରି ପରେ ସମ୍ମତା ହେଲା । ସେ ଶିଶୁଟିକୁ ଛାଡ଼ିଦେଇ ଭଲଭାବରେ ତାହାର ଲାଳନପାଳନ କରିବା ପାଇଁ ଅନୁରୋଧ କରି ଚାଲିଗଲା ।

ରାଜହଂସ ଅତି ଆନନ୍ଦରେ ଶିଶୁ ସହ ନିଜ କୁଟୀରକୁ ଫେରିଲେ ଓ ତାର ନାମ ଦେଲେ ଅପହାର ବର୍ମା । ଅପହାର ବର୍ମା ଏଠାରେ ତାର ଉପଯୁକ୍ତ ଦୁଇଟି ସାଙ୍ଗ ପାଇ ଆନନ୍ଦରେ କ୍ରୀଡ଼ା କୌତୁକରେ ଦିନ କଟାଇବାକୁ ଲାଗିଲା ।

---

# (୪)

# ପୁଟେଷ୍ଟାଭବଙ୍କ ଆଗମନ

ପୂର୍ବ ଘଟଣାର ପ୍ରାୟ ଏକମାସ ପରେ ଦିନେ ବାମଦେବ ଋଷିଙ୍କର ଜଣେ ଶିଷ୍ୟ କୋଳରେ ଗୋଟିଏ ଶିଶୁ ଧରି ରାଜହଂସଙ୍କ କୁଟୀରରେ ଉପସ୍ଥିତ ହେଲେ । ସେ ଶିଶୁଟିକୁ ରାଜାଙ୍କ ପାଦତଳେ ରଖି କହିଲେ, "ମହାରାଜ, ମୁଁ ଦିନେ ପୁଣ୍ୟତୋୟା ଜାହ୍ନବୀର ସମତୀର୍ଥ ଘାଟରେ ସ୍ନାନକରି ଫେରିଲାବେଳେ ଗୋଟିଏ ବୁଢ଼ୀ ଏହି ଶିଶୁକୁ ଧରି ଜଙ୍ଗଲ ମଧ୍ୟରେ ବିଚରଣ କରୁଥିଲା । ଜଙ୍ଗଲ୍ ମଧ୍ୟରେ ଏପରି ଦୃଶ୍ୟ ନିତାନ୍ତ ବିରଳ । ତେଣୁ ମୁଁ ବିସ୍ମିତ ହୋଇ ବୁଢ଼ୀ ଓ ଶିଶୁର ପରିଚୟ ମାଗିଲି ।

ବୁଢ଼ୀ କହିଲା ଯେ ସେ କାଳଯବନର ରତ୍ନୋଦ୍ଭବ ନାମକ ଜଣେ ଧନୀ ସୌଦାଗରଙ୍କ ପତ୍ନୀର ଦାସୀ । ରତ୍ନୋଦ୍ଭବ ମଗଧ ରାଜ୍ୟର ଜଣେ ମନ୍ତ୍ରୀଙ୍କ ପୁତ୍ର । ସେ ଦକ୍ଷିଣ ଦେଶରେ ଅଗାଧ ସମ୍ପତ୍ତି ଉପାର୍ଜନ କରି ସସ୍ତ୍ରୀକ ନିଜ ଦେଶକୁ ଫେରି ଯିବାକୁ ଇଚ୍ଛାକଲେ । ଗୋଟାଏ ତରୀରେ ନିଜର ସ୍ତ୍ରୀ, ଶିଶୁ ପୁତ୍ର ଓ ମୂଲ୍ୟବାନ ଧନରତ୍ନସହ ଯାତ୍ରାରମ୍ଭ କଲେ । ତରୀଟି ପ୍ରାୟ ଅର୍ଦ୍ଧ ପଥ ଯାଇଛି, ଏପରି ସମୟରେ ଭୀଷଣ ବାତ୍ୟା ଉପସ୍ଥିତ ହେଲା । ନାବିକମାନେ ସମସ୍ତ ଶକ୍ତି ପ୍ରୟୋଗ କରି ମଧ୍ୟ ବୋଇତଟିକୁ ଅଟକାଇ ପାରିଲେ ନାହିଁ । ତାହା

ଜଳ ତରଙ୍ଗ ଉପରେ ଉଠି ପଡ଼ି ଯାଇ ଗୋଟାଏ ପାହାଡ଼ ଦେହରେ ଧକ୍କା ବାଜି ଫାଟିଗଲା । ତା ପରେ କ୍ରମେ ବୋଇତଟି ବୁଡ଼ିଗଲା । ଶେଷ ମୁହୂର୍ତ୍ତରେ ପତି ପତ୍ନୀଠାରୁ ବିଚ୍ଛିନ୍ନ ହୋଇ ପଡ଼ିଲେ । ସୌଦାଗରଙ୍କ ପତ୍ନୀ ଶୁଭବୃତ୍ତା ଓ କେତେକ ଦାସୀ ଗୋଟାଏ ଭଗ୍ନଯାନ କାଷ୍ଠ ପାଇ ତାହାର ଆଶ୍ରୟରେ କ୍ରମେ କ୍ରମେ ଆସି କୂଳରେ ପହଞ୍ଚିଲେ । ଶିଶୁଟି ମାତାର ଗଳଦେଶରେ ନୀବପଦାରେ ଅବଦ୍ଧ ଥାଏ । କିନ୍ତୁ ଅତିରିକ୍ତ ଶାରୀରିକ ପରିଶ୍ରମ ଓ ମାନସିକ ଯନ୍ତ୍ରଣା ଫଳରେ ତଟରେ ପହଞ୍ଚୁ ପହଞ୍ଚୁ ଶୁଭବୃତ୍ତା ଅଚେତା ହୋଇ ପଡ଼ିଗଲେ ।

ବୃଦ୍ଧା ମୋତେ ଏତକ କହୁଛି—ଏପରି ସମୟରେ ଗୋଟାଏ ବନ୍ୟ ହସ୍ତୀ ଭୀଷଣ ବେଗରେ ଆମଆଡ଼େ ଧାଇଁ ଆସିଲା । ଏ ଦୃଶ୍ୟରେ ବୃଦ୍ଧା ଏପରି ଭୀତ ତ୍ରସ୍ତା ହୋଇ ପଡ଼ିଲା ଯେ ତାର ଅଜ୍ଞାତ ସାରରେ ସେଇଠାରେ ଶିଶୁଟି ତା ହାତରୁ ଖସି ପଡ଼ିଲା ଏବଂ ସେ ଧାଇଁ ଯାଇ ଅରଣ୍ୟ ମଧ୍ୟରେ ପଶିଗଲା । ମୁଁ ମଧ୍ୟ ଏ ଅବସ୍ଥାରେ ଉପାୟାନ୍ତର ନ ଦେଖି ନିକଟସ୍ଥ ଗୋଟାଏ ବଡ଼ ଗଛରେ ଚଢ଼ିଗଲି ।

ଆଶ୍ଚର୍ଯ୍ୟର କଥା ହାତୀଟା ଆମ ଦୁହିଁଙ୍କୁ ଦେଖି ମଧ୍ୟ କାହାରକୁ ଆକ୍ରମଣ ନକରି ଶିଶୁଟିକୁ ତାର ଶୁଣ୍ଢରେ ଗୁଡ଼ାଇ ଧରି ଉପରକୁ ଟେକିଲା । ବୋଧହୁଏ ପରମୁହୂର୍ତ୍ତରେ ସେ ତାହାକୁ ତଳେ ପିଟିଦେଇ ଗୋଡ଼ରେ ଦଳି ଦେଇଥାନ୍ତା; କିନ୍ତୁ ହଠାତ୍ ନିକଟସ୍ଥ ଘନଲତା ମଧ୍ୟରୁ ଗୋଟାଏ ସିଂହ ବାହାରି ହାତୀର ପିଠି ଉପରେ ଡେଇଁ ବସିଲା । ଏଥିରେ ହାତୀ ଚମକି ପଡ଼ିଲା । ସେ ଶିଶୁଟିକୁ ଛାଡ଼ିଦେଇ ସିଂହକୁ ନିଜ ପିଠିରୁ ଖସାଇ ଦେବାପାଇ ତଳେ ଗଡ଼ିବାକୁ ଲାଗିଲା । ଭାଗ୍ୟବଶତଃ ଏହି ସମୟରେ ଗୋଟାଏ

ବୁଢ଼ା ମାଙ୍କଡ଼ ଗଛରୁ ଓହ୍ଲାଇ ଆସି ପିଲାଟିକୁ କୋଳକରି ଗଛ ଉପରକୁ ନେଇଗଲା । ନଚେତ୍ ହାତୀ ଓ ସିଂହର ଭୀଷଣ ଯୁଦ୍ଧ ମଧ୍ୟରେ ପଡ଼ି ପିଲାଟି ଶେଷ ପାଇ ଯାଇଥାନ୍ତା ।

କ୍ରମେ ହାତୀ ଓ ସିଂହ ଯୁଦ୍ଧ କରୁ କରୁ ଜଙ୍ଗଲ ମଧ୍ୟକୁ ଚାଲିଗଲେ । ବୁଢ଼ା ମାଙ୍କଡ଼ଟି ପିଲାଟିକୁ ନେଇ ଗୋଟାଏ କୋରଡ଼ରେ ବସାଇ ଦେଇ ତଳେ ଯୁଦ୍ଧ ଦେଖି ଦେଖି ଅନ୍ୟ ମାଙ୍କଡ଼ମାନଙ୍କ ସହ ଗଛରୁ ଗଛକୁ ଡେଇଁ ଚାଲିଗଲା । କିଛି ସମୟ ପରେ ଚତୁର୍ଦ୍ଦିଗ ନିରାପଦ ଦେଖି ମୁଁ ଶିଶୁଟିକୁ ବୃକ୍ଷ କୋରଡ଼ରୁ ଉଦ୍ଧାର କରି ନିଜ ଆଶ୍ରମକୁ ଫେରିଲି । ଗୁରୁଦେବ ମୋଠାରୁ ସମସ୍ତ ଘଟଣା ଶୁଣି ଶିଶୁଟିକୁ ଆପଣଙ୍କ ହସ୍ତରେ ଅର୍ପଣ କରିବା ପାଇଁ ଆଦେଶ କଲେ । ମୋର ବିଶ୍ୱାସ ଆପଣ ଏଥିରେ ଆପତ୍ତି କରିବେ ନାହିଁ ।

ରତ୍ନୋଦ୍‌ଭବ ରାଜହଂସଙ୍କର ବାଲ୍ୟ ବନ୍ଧୁ । ତାଙ୍କର ଶିଶୁ-ପୁତ୍ର ଏପରି ଆକସ୍ମିକ ମୃତ୍ୟୁ ମୁଖରୁ ଏକାଧିକବାର ରକ୍ଷା ପାଇଥିବାରୁ ସେ ସର୍ବଶକ୍ତିମାନ ପରମେଶ୍ୱରଙ୍କର ସ୍ତବ ଗାନ କରିବାକୁ ଲାଗିଲେ ଓ ବ୍ରାହ୍ମଣଙ୍କର ନିଃସ୍ୱାର୍ଥ ପରିଶ୍ରମ ଓ ଅଶେଷ ଦୟା ଲାଗି ତାଙ୍କୁ ଧନ୍ୟବାଦ ଦେଇ ବିଦାୟ ଦେଲେ ।

ରତ୍ନୋଦ୍ଭବଙ୍କ ସହୋଦର ସୁଶ୍ରୁତ ମଧ୍ୟ ସେଠାରେ ବସି ସମସ୍ତ ଘଟଣା ଶୁଣୁଥିଲେ । ସେ ପୁଲକପୂର୍ଣ୍ଣ ନୟନରେ ଭ୍ରାତୁଷ୍ପୁତ୍ରକୁ କୋଳକୁ ନେଇ ବାରଂବାର ମୁଖ ଚୁମ୍ବନ କରିବାକୁ ଲାଗିଲେ ଓ ନିଜେ ତାର ପାଳନ ଭାର ଗ୍ରହଣ କଲେ । ଶିଶୁଟିର ନାମ ଦିଆଗଲା ପୁଷ୍ପୋଦ୍ଭବ ।

---

# (୫)

## ଅର୍ଥପାଳଙ୍କ ଆଗମନ

ଦିନେ ରଜନୀରେ ରାଣୀ ବସୁମତୀ ପର୍ଣ୍ଣଶାଳା ମଧ୍ୟରେ ନିଦ୍ରିତା ଥିବା ସମୟରେ ହଠାତ୍ କେହି ଜଣେ ବ୍ୟକ୍ତି ତାଙ୍କ ନିକଟରେ ଦଣ୍ଡାୟମାନ ହୋଇ ତାଙ୍କୁ ସମ୍ବୋଧନ କଲା ଭଳି ଜଣାଗଲା । ସେ ଚମକି ପଡ଼ି ଉଠି ଦେଖିଲେ ତାଙ୍କ ସମକ୍ଷରେ ଗୋଟିଏ ସ୍ତ୍ରୀ ମୂର୍ତ୍ତି ଦଣ୍ଡାୟମାନା । ରମଣୀର ଅଲୌକିକ ତେଜରେ କୁଟୀର ଆଲୋକିତ ହୋଇଅଛି । ଏ ଦୃଶ୍ୟରେ ବସୁମତୀ ଚମତ୍କୃତା ହୋଇ ପଡ଼ି ସ୍ତ୍ରୀ ମୂର୍ତ୍ତିର ପରିଚୟ ସଙ୍ଗେ ସଙ୍ଗେ ଆଗମନର ଉଦ୍ଦେଶ୍ୟ ଜିଜ୍ଞାସା କଲେ ।

ରମଣୀ ମୃଦୁ ମଧୁର ସ୍ୱରରେ କହିଲେ—"ମହାରାଣୀ, ମଗଧ ଅଧିପତିଙ୍କର ପ୍ରଧାନ ମନ୍ତ୍ରୀ ଧର୍ମପାଳଙ୍କ ପୁତ୍ର କାମପାଳଙ୍କର ମୁଁ ପତ୍ନୀ ଅଟେ । ଏ ଯେଉଁ ଶିଶୁଟିକୁ ମୁଁ କୋଳରେ ଧରି ଅଛି, ଏ ମୋର ସନ୍ତାନ । ମୋର ପିତା ଯକ୍ଷରାଜ ମଣିଭଦ୍ର । ଏ ଶିଶୁକୁ ଆପଣଙ୍କ ହସ୍ତରେ ଅର୍ପଣ କରିବା ପାଇଁ ସେ ଉପଦେଶ ଦେଇ ଅଛନ୍ତି । କାରଣ ସେ ଜାଣନ୍ତି, ରାଜକୁମାର ରାଜବାହନଙ୍କ ପ୍ରଭାବ ଓ ପ୍ରତାପର ଦିନେ ସମଗ୍ର ଆର୍ଯ୍ୟାବର୍ତ୍ତକୁ ମୁଗ୍ଧ ଚକିତ କରି ପକାଇବ । ତେଣୁ ଏ ଶିଶୁଟିକୁ ଆପଣଙ୍କ ଲାଳନପାଳନରେ ଛାଡ଼ି

ହେଲେ ସେ ଅବାଲ୍ୟନ୍ତୁ ରାଜକୁମାରଙ୍କ ସହଚର ଭାବରେ ରହି ତାର ପୈତୃକ ସୌଭାଗ୍ୟ ଭୋଗ କରି ଯଥା ସମୟରେ କର୍ତ୍ତବ୍ୟ ପାଳନ ପାଇଁ ଉପଯୁକ୍ତ ହେବ ।"

ଏ କଥା ଶୁଣି ରାଣୀ ଯକ୍ଷ କନ୍ୟାଙ୍କୁ ଆସନ ପ୍ରଦାନ ପୂର୍ବକ ସମ୍ମାନିତ କରିବାକୁ ଯିବା ମାତ୍ରେ ସେ କେଉଁଆଡ଼େ ଅନ୍ତର୍ହିତ ହୋଇ ଗଲେ । ତହୁଁ ରାଣୀ ଶିଶୁଟିକୁ ରାଜହଂସଙ୍କ ନିକଟକୁ ନେଇ ସମସ୍ତ ଘଟଣା ଜଣାଇଲେ ।

ରାଜହଂସ ଏପରି ଆଶ୍ଚର୍ଯ୍ୟଜନକ ଘଟଣା ତଥା ନିଜ ପୁତ୍ରର ଭବିଷ୍ୟତ ସମ୍ବନ୍ଧେ ସୁସମ୍ବାଦ ପାଇ ବିଶେଷ ଆନନ୍ଦିତ ହେଲେ । ସେ ଶିଶୁର ନାମ ରଖିଲେ "ଅର୍ଥପାଳ" ଏବଂ ତାହାର ରକ୍ଷଣାବେକ୍ଷଣ ଭାର ତାହାର ଜ୍ୟେଷ୍ଠତାତ ସୁମିତ୍ରଙ୍କ ହସ୍ତରେ ନ୍ୟସ୍ତ କଲେ ।



## (୭)

# ସୋମଦତ୍ତଙ୍କ ଆଗମନ

ଗ୍ରୀଷ୍ମଋତୁର ପ୍ରାରମ୍ଭରେ ଋଷି ବାମଦେବଙ୍କର ଜଣେ ଶିଷ୍ୟ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଯାଉଥିଲେ । ସେ ଦାକ୍ଷିଣାତ୍ୟର କାବେରୀ ନଦୀରେ ସ୍ନାନ ତର୍ପଣାଦି ଶେଷକରି ଫେରୁ ଅଛନ୍ତି ଏପରି ସମୟରେ କିଛି ଦୂରରେ ଜଣେ ସ୍ତ୍ରୀ ଲୋକର ବିକଳ କ୍ରନ୍ଦନ ଶୁଣି ପାରିଲେ । ସେ ନିକଟକୁ ଯାଇ ଦେଖିଲେ କାବେରୀ କୂଳରେ ସ୍ତ୍ରୀ ଲୋକଟିଏ ବସି କ୍ରନ୍ଦନ କରୁଅଛି; କୋଳରେ ଗୋଟିଏ ମାତ୍ର ଶିଶୁ । ଉଭୟେ ଆପାଦମସ୍ତକ ଜଳସିକ୍ତ । ଶିଷ୍ୟ ତାହାକୁ ଆଶ୍ୱାସନା ଦେଇ କ୍ରନ୍ଦନର କାରଣ ପଚାରିଲେ ।

ସ୍ତ୍ରୀ ଲୋକଟି ଶୋକ ସମ୍ବରଣ କରି କହିଲା—"ମହାଶୟ, ମଗଧରାଜ ରାଜହଂସଙ୍କର ସିତବର୍ମା ନାମକ ଜଣେ ମନ୍ତ୍ରୀ ଥିଲେ । ତାହାଙ୍କର ପୁତ୍ର ସତ୍ୟବର୍ମା ବିଦେଶରେ ବହୁଧନରତ୍ନ ଅର୍ଜ୍ଜନ କରି ଏହି ନଦୀ ତଟରେ ଏକ ବ୍ରାହ୍ମଣ ଶାସନରେ ବାସ କଲେ । ସେ ସେହି ଗ୍ରାମରେ "କାଳୀ" ନାମକ ଗୋଟିଏ କନ୍ୟାକୁ ବିବାହ କରିଥିଲେ । ବହୁ ବର୍ଷପରେ ମଧ୍ୟ କାଳୀର ଗର୍ଭରେ ସନ୍ତାନ ସନ୍ତତି ନହେବାରୁ ସତ୍ୟବର୍ମା କାଳୀର ଭଗିନୀ ଗୌରୀକୁ ବିବାହ କଲେ । କିଛି ଦିନ ପରେ ଗୌରୀର ଗର୍ଭରୁ ଏ ପୁତ୍ରଟି ଜାତ ହେଲା । କାଳୀ

ଏକଥା ସତ୍ୟ କହିପାରିବି ନାହିଁ । ମୁଁ ଏ ଶିଶୁଟିକୁ ପାଳି ଥାଏ । ଆଜି ମୁଁ ନଈ କୂଳରେ ବସି ଏହାକୁ ଗୀତ ଗାଇ ଖେଳାଉ ଥିଲି କାଳି ପଛରୁ ଲଢ଼ି ଲଢ଼ି ଆସି ହଠାତ୍ ଆମ ଦୁହିଁଙ୍କୁ ନଦୀମଧ୍ୟକୁ ପେଲି ଦେଲା । ନିକଟରେ ଗୋଟାଏ ଭାସନ୍ତା କାଠଗଡ଼ ପାଇ ନଥିଲେ, ଶିଶୁ ସହିତ ମୁଁ ନିଶ୍ଚୟ ବୁଡ଼ି ମରିଥାନ୍ତି । ଗୋଟିଏ ହାତରେ ଶିଶୁକୁ ଓ ଅନ୍ୟ ହାତରେ କାଠଗଡ଼ଟି ଧରି ଭାସି ଆସି ମୁଁ କୂଳରେ ଲାଗିଲି । କିନ୍ତୁ ମୋର ଭାଗ୍ୟ ମନ୍ଦ । ଏ କୂଳରେ ଲାଗୁ ଲାଗୁ ଗୋଟାଏ କଳା ସାପ ପାଣିରେ ଭାସି ଆସି ମୋ ଦେହରେ ଗୁଡ଼େଇ ହୋଇ ମୋତେ କାମୁଡ଼ି ଦେଲା । ତାର ବିଷଜ୍ୱାଳାରେ ମୋର ସର୍ବାଙ୍ଗ ବର୍ତ୍ତମାନ ଜଳୁଅଛି । ମୋର ଆଉ ବଞ୍ଚିବାର ଆଶା ନାହିଁ । ମୁଁ ନଈ ମଝିରେ କେତେ ଦୂର ଭାସି ଆସି ଅଛି ଜାଣେ ନାହିଁ । ମୋର ମୃତ୍ୟୁପରେ ଏ ଶିଶୁର ଅବସ୍ଥା କଅଣ ହେବ ଏ ବଣର ଦେବତାହିଁ ଜାଣନ୍ତି ।"

ଏ କଥା କହୁ କହୁ ସ୍ତ୍ରୀ ଲୋକଟି ଅଚେତା ହୋଇ ପଡ଼ିଲା । ଋଷିକୁମାର ସର୍ପ ବିଷର କେତେକ ପ୍ରତିକାର ଜାଣିଥିଲେ । ସେ ଚିକିତ୍ସାର ବ୍ୟବସ୍ଥା କରୁ କରୁ ବୁଢ଼ୀର ପ୍ରାଣବାୟୁ ଉଡ଼ିଗଲା ।

ମୃତ ଦେହର ସତ୍କାର କରସାରି ଋଷିକୁମାର ଶିଶୁକୁ ଧରି ଫେରିଲେ । ସେ ରାଜହଂସଙ୍କ କୁଟୀରରେ ଉପସ୍ଥିତ ହୋଇ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ । ରାଜହଂସ ଶିଶୁଟିକୁ ଗ୍ରହଣ କରି ସତ୍ୟବର୍ମାଙ୍କ ଭ୍ରାତା ସୁମତିଙ୍କ ହସ୍ତରେ 'ଅର୍ପଣ କଲେ । ଶିଶୁର ନାମ ରଖାଗଲା "ସୋମଦତ୍ତ" ।

(୨)

## ଦଶକୁମାରଙ୍କ ବାଲ୍ୟ ଶିକ୍ଷା ଓ ଦେଶାନ୍ତର ଯାତ୍ରା

ଏହି ଭାବରେ ଦୈବବଶତଃ ସମ୍ମିଳିତ ବାଳକମାନଙ୍କ ସହିତ ରାଜବାହନ ପ୍ରକୃତିର ଲୀଳାମୟ କ୍ରୋଡ଼ରେ କ୍ରୀଡ଼ା କରିବାକୁ ଲାଗିଲେ । ପାହାଡ଼ର ଶୃଙ୍ଗ ଆରୋହଣ କରିବା—ଅରଣ୍ୟରୁ ସିଂହ ଶାବକ ଧରି ଆଣିବା—ସନ୍ତରଣଦ୍ୱାରା ଖରସ୍ରୋତା ନଦୀ ଲଙ୍ଘନ କରିବା—ଅତ୍ୟୁଚ୍ଚ ଜଳପ୍ରପାତ ରୋଧ କରିବା ପାଇଁ ଚେଷ୍ଟା କରିବା ସେମାନଙ୍କର ଆମୋଦ ପ୍ରମୋଦରେ ପରିଣତ ହେଲା । ପରେ ଯଥାବିଧି ସେମାନଙ୍କର ଚୂଡ଼ାକରଣ ଓ ଉପନୟନାଦି ସଂସ୍କାର କର୍ମ ସମ୍ପନ୍ନ କରାଗଲା ।

ବୟୋବୃଦ୍ଧି ସଙ୍ଗେ ସଙ୍ଗେ ରାଜହଂସ ଦଶକୁମାରଙ୍କୁ ଏକବଂ ଶିକ୍ଷା ଦେବାକୁ ଲାଗିଲେ । ଉପଯୁକ୍ତ ଶିକ୍ଷକମାନଙ୍କଠାରୁ ସେମାନେ ନାନା ଦେଶୀୟ ନିରୁକ୍ତ, ବ୍ୟାକରଣ, ଛନ୍ଦ, ଜ୍ୟୋତିଷ ପ୍ରଭୃତି ଷଡ୍ ବେଦାଙ୍ଗ, ଚାରି ବେଦ, କାବ୍ୟ, ନାଟକ, ଆଖ୍ୟାନ, ଇତିହାସ ପୁରାଣ, ସ୍ମୃତି, ଶାକୁନ, ( ପକ୍ଷୀମାନଙ୍କର ରବଜ୍ଞାନ ) ନ୍ୟାୟ ଓ ମୀମାଂସା ଆଦି ସକଳ ଶାସ୍ତ୍ର ଅଧ୍ୟୟନ କଲେ । ଚାଣକ୍ୟ ଓ କାମନ୍ଦକାଦି ପ୍ରଣୀତ ସକଳନୀତି ଶାସ୍ତ୍ରରେ ସେମାନଙ୍କର ଅଭିଜ୍ଞତା ଜନ୍ମିଲା । ବୀଣା ପ୍ରଭୃତି ବାଦ୍ୟ ଯନ୍ତ୍ର, ସଂଗୀତ ଓ ଶିଳ୍ପ ଶାସ୍ତ୍ରରେ ସେମାନଙ୍କର ନିପୁଣତା ପ୍ରକାଶିତ ହେଲା । ମଣି, ମନ୍ତ୍ର ଓ

ଔଷଧାଦି ବିଦ୍ୟାରେ ସେମାନେ ଧୁରନ୍ଧର ହୋଇ ଉଠିଲେ । ହସ୍ତୀ, ଅଶ୍ୱ ଓ ରଥାରୋହଣ ଏବଂ ନାନାବିଧ ଅସ୍ତ୍ର ପ୍ରୟୋଗରେ ପ୍ରତ୍ୟେକେ ଦକ୍ଷତା ଲାଭ କଲେ । ଏପରିକି ଚୌର୍ଯ୍ୟ, ଅକ୍ଷକ୍ରୀଡ଼ା ଇତ୍ୟାଦି ଅଧମ ଶିକ୍ଷା ଗୁଡ଼ିକରେ ମଧ୍ୟ ସେମାନଙ୍କଠାରେ ବିଚକ୍ଷଣତା ଦେଖାଗଲା । ଏହିପରି ସର୍ବବିଷୟରେ ଶିକ୍ଷିତ, ଯୌବନ ଶୋଭାରେ ସମ୍ପୂର୍ଣ୍ଣ ଏବଂ କର୍ତ୍ତବ୍ୟ କାର୍ଯ୍ୟରେ ଆଳସ୍ୟହୀନ କୁମାରଗଣ ରାଜହଂସ ତଥା ମନ୍ତ୍ରୀମାନଙ୍କ ପ୍ରାଣରେ ଅପୂର୍ବ ଆନନ୍ଦ ଓ ଉତ୍ସାହ ଧାରା ପ୍ରବାହିତ କରିବାକୁ ଲାଗିଲେ ।

କୁମାରମାନେ ସକଳ ଶାସ୍ତ୍ରରେ ଅଗାଧ ପ୍ରବେଶ ଲାଭ କରିଥିବା ଦେଖି ରାଜା, ରାଣୀ ଓ ମନ୍ତ୍ରୀମାନଙ୍କର ବିଶ୍ୱାସ ଜାତ ହେଲା ଯେ ଏମାନେ ଦିନେ ତାଙ୍କର ଅପହୃତ ରାଜ୍ୟର ପୁନରୁଦ୍ଧାର କରି ମାନବ ଜାତିର ହିତ ସାଧନ କରିବେ । ତେଣୁ ବାମଦେବ ଋଷିଙ୍କର ଉପଦେଶ କ୍ରମେ ସାଂସାରିକ ସକଳ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନଲାଭ କରିବାକୁ ଦେଶଦେଶାନ୍ତର ଭ୍ରମଣ କରିବା ପାଇଁ ସେମାନଙ୍କୁ ଉପଦେଶ ଦିଆଗଲା । ଶୁଭ ଦିବସରେ ରାଜବାହନ ଓ ସହାଧ୍ୟାୟୀଗଣ ଗୁରୁବର୍ଗଙ୍କର ଚରଣ ବନ୍ଦନା କରି ଯାତ୍ରାରମ୍ଭ କଲେ ।

ଯାତ୍ରାର ପ୍ରଥମ ଦିବସ ସେମାନେ ବିନ୍ଧ୍ୟାଚଳର ଭୀମକାନ୍ତ ଦୃଶ୍ୟ ପୂର୍ଣ୍ଣ ଅରଣ୍ୟମାର୍ଗରେ ଭ୍ରମଣ କରି ସାୟାହ୍ନରେ ଏକ ଉପତ୍ୟକା ଭୂମିରେ ପ୍ରବେଶ କଲେ । ଏହିଠାରେ ରାତ୍ରିଯାପନ କରିବା ନିମିତ୍ତ ବନ୍ଧୁମାନେ ଇଚ୍ଛା ପ୍ରକାଶ କରିବାରୁ ରାଜବାହନ ସମ୍ମତ ହୋଇ ଆଦେଶ ପ୍ରଦାନ କଲେ ।

---

## (୮)

# ମାତଙ୍ଗ ଓ ରାଜବାହନ

ରାଜବାହନ ଗୋଟିଏ ବୃକ୍ଷ ମୂଳରେ ବିଶ୍ରାମ କଲେ । ଅନ୍ୟ ବନ୍ଧୁବର୍ଗ କିଛି ଦୂରରେ ଅଗ୍ରସ୍ଥ ଗ୍ରାମୀଣ ତଥା ପାନାହାରର ଆୟୋଜନରେ ଲାଗିଲେ । ଏହି ସମୟରେ ହଠାତ୍ ଗୋଟାଏ ଭୀଷଣାକୃତି ମାନବ ରାଜବାହନଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ତାହାଙ୍କୁ ନମସ୍କାର କଲା । ତାର ବେଶ ଭୂଷା ମଧ୍ୟରେ ଖଣ୍ଡିଏ ମାତ୍ର କୌପୀନ, ହସ୍ତରେ କୁଠାର ସ୍କନ୍ଧରେ ଉପବୀତ ଓ ଦେହରେ ଶସ୍ତ୍ରାଘାତର ଶତ ଚିହ୍ନ । ଉପବୀତଧାରୀ ବ୍ରାହ୍ମଣ ତାହାଙ୍କୁ ନମସ୍କାର କରିବା ଦେଖି ରାଜବାହନ ବିସ୍ମିତ ହୋଇ ତାହାଙ୍କର ପରିଚୟ ଜିଜ୍ଞାସା କଲେ ।

ଆଗନ୍ତୁକ କହିଲା—ଯୁବରାଜ, ଏ ଅରଣ୍ୟରେ ନିମ୍ନ ଶ୍ରେଣୀର କେତେକ ବ୍ରାହ୍ମଣ ବାସ କରନ୍ତି । ସେମାନେ ବହୁକାଳାବଧି ନିଜର ପବିତ୍ର ଷଟ୍‌କର୍ମ ତ୍ୟାଗକରି ପାର୍ବତ୍ୟ ଅନାର୍ଯ୍ୟମାନଙ୍କ ସହ ସହିତ ଉପକଣ୍ଠସ୍ଥ ଗ୍ରାମମାନ ଲୁଣ୍ଠନ କରି ଜୀବିକା ନିର୍ବାହ କରନ୍ତି । ସେହି ବଂଶରେ ମୋର ଜନ୍ମ । ମୋର ନାମ ମାତଙ୍ଗ ।

ଥରେ ଅମ୍ଭେମାନେ ଦଳବଦ୍ଧ ହୋଇ ଗୋଟାଏ ଗ୍ରାମ ଲୁଣ୍ଠନ କଲୁ । ଧନ ସମ୍ପତ୍ତି ସହ ଗ୍ରାମବାସୀଙ୍କୁ ବନ୍ଦୀ କରି ଫେରିଲୁ

ବେଳେ କେତେ ଜଣ ଅନାର୍ଯ୍ୟ ଜଣେ ବ୍ରାହ୍ମଣ ପଥିକଙ୍କୁ ଆକ୍ରମଣ କରି ତାର ସର୍ବସ୍ୱ ଅପହରଣ କରୁଥିବା ମୁଁ ଦେଖିଲି । ବ୍ରାହ୍ମଣ ଉପରେ ଏ ଅତ୍ୟାଚାର ଦେଖି ମୋର ଭୀଷଣ କ୍ରୋଧ ଜାତ ହେଲା । ତେଣୁ ମୁଁ ଏକାକୀ ଅନାର୍ଯ୍ୟମାନଙ୍କ ବିରୁଦ୍ଧରେ ଲଢ଼ି ବ୍ରାହ୍ମଣକୁ ରକ୍ଷା କରିବାକୁ ଚେଷ୍ଟା କଲି । କିନ୍ତୁ ଏପରି ଦୁଃସାହସିକ କାର୍ଯ୍ୟର ପ୍ରତିଫଳ ମୋତେ ସଙ୍ଗେ ସଙ୍ଗେ ଭୋଗ କରିବାକୁ ହେଲା । ଅନାର୍ଯ୍ୟମାନଙ୍କ ପ୍ରତିଆକ୍ରମଣରେ ମୁଁ ଆହତ ହୋଇ ଭୂପତିତ ହେଲି । କିନ୍ତୁ ସମୟପରେ ଆମ ଦଳର ଅନ୍ୟମାନେ ଏକଥା ଜାଣିପାରି ଅନାର୍ଯ୍ୟମାନଙ୍କୁ ଆକ୍ରମଣ କଲେ । ଏହାର ଫଳ କଅଣ ହେଲା ମୁଁ ଜାଣେ ନାହିଁ । କାରଣ ଅତିରିକ୍ତ ରକ୍ତସ୍ରାବ ଫଳରେ ମୁଁ ସେତେବେଳକୁ ଚେତନାଶୂନ୍ୟ ହୋଇ ପଡ଼ିଥିଲି ।

ଅଚୈତନ୍ୟ ଅବସ୍ଥାରେ ମୋତେ ଜଣାଗଲା ଯେପରିକି ମୁଁ ଯମଲୋକରେ ପ୍ରବେଶ ଲାଭ କରିଅଛି । ଗୋଟାଏ ଯମଦୂତ ମୋତେ ଯମଙ୍କ ସମ୍ମୁଖକୁ ନେଇଗଲା । ଯମ ମୋର ପାପପୁଣ୍ୟର ବିଗ୍ଭର କରି ତାଙ୍କ ଦୂତକୁ ଉଦ୍ଦେଶ୍ୟ କରି କହିଲେ—"ଏ ଲୋକଟା ସଂସାରରେ ବହୁତ ପାପ କରିଅଛି । କିନ୍ତୁ ଠିକ୍ ମୃତ୍ୟୁ ପୂର୍ବରୁ ଏ ହେଉଁ ନିଃସ୍ୱାର୍ଥପର ପୁଣ୍ୟ କାର୍ଯ୍ୟ କରିଛି ତାର ଫଳରେ ତାର ସମସ୍ତ ପାପ କ୍ଷୟ ହୋଇ ଯାଇଅଛି । ଆଉ ମଧ୍ୟ ଆଜି ସେ ଯେ ମୃତ ହୋଇଛି ଏହା ତାର ପ୍ରକୃତ ମରଣ ନୁହେ—ଅପମୃତ୍ୟୁ । ଥରେ ତାକୁ ସମସ୍ତ ନରକ ପୁରି ବୁଲାଇ ସଂସାର କ୍ଷେତ୍ରରେ ତା ନିଜ ମର ଦେହଭିତରେ ପୁଣି ଛାଡ଼ି ଦେଇ ଆସ । ପୁନର୍ଜ୍ଜୀବିତ ହେବା ପରେ ଏ ଘଟଣା ଗୁଡ଼ିକ ତାର ସ୍ମରଣ ରହିବ ଏବଂ ପ୍ରକୃତ ମରଣ ପର୍ଯ୍ୟନ୍ତ ସେ ଆଉ ପାପକାର୍ଯ୍ୟ କରିପାରିବ ନାହିଁ ।"



ରାଜବାହନ ଓ ମାତଙ୍ଗ

ଚିତ୍ରଗୁପ୍ତ ସଙ୍ଗେ ସଙ୍ଗେ ଯମଙ୍କ ଆଦେଶ ପାଳନ କଲେ । ହାୟ ! ନରକର ସେ ଭୀଷଣ ବୀଭତ୍ସ ଦୃଶ୍ୟଗୁଡ଼ିକ ସ୍ମରଣ କଲେ ଏବେ ସୁଦ୍ଧା ମୋର ହୃତ୍‌କମ୍ପ ଜାତ ହେଉଅଛି । କେଉଁଠାରେ ବାୟୁମଣ୍ଡଳ ପ୍ରଜ୍ଜ୍ୱଳନ୍ତ ଅଗ୍ନିଠାରୁ ବଳି ଉତ୍ତପ୍ତ, କେଉଁଠାରେ ତୁଷାରବର୍ଷିଠାରୁ ଶୀତଳ । ଏକ ସ୍ଥାନରେ ଅସୂଚୀଭେଦ୍ୟ ଅନ୍ଧକାର ଓ ତୀବ୍ର ବିଷାକ୍ତ ଧୂମ ପୂର୍ଣ୍ଣ—ଅନ୍ୟ ସ୍ଥାନରେ ପୂତିଗନ୍ଧମୟ ବାୟୁ ଓ ପ୍ରଖର ଆଲୋକରେ ଚକ୍ଷୁ ଉନ୍ମୀଳନ କରିବା କିମ୍ବା ଶ୍ୱାସପ୍ରଶ୍ୱାସ ଗ୍ରହଣ କରିବା ଶକ୍ତି ଲୋପ ପାଉଅଛି । ଏହି ସ୍ଥାନମାନଙ୍କରେ ଯମଦୂତମାନେ ପାପୀମାନଙ୍କୁ ଅବଢ଼ି କରି ନିର୍ମ୍ମମ ପ୍ରହାର କରୁଅଛନ୍ତି । ଏକ ସ୍ଥାନରେ ତପ୍ତ ତୈଳଭାଣ୍ଡ ମଧ୍ୟରେ ସେମାନଙ୍କୁ ନିକ୍ଷେପ କରି ଯାଉଥାଏ ଏବଂ ଅପର ସ୍ଥାନରେ ବିଷଧର ସର୍ପମାନଙ୍କ ଦଂଶନରେ ପାପୀଗଣ ଆର୍ତ୍ତନାଦ କରି ଉଠୁଥାନ୍ତି ।

ଏହିପରି କଳ୍ପନାତୀତ ଅସଂଖ୍ୟ ଦୃଶ୍ୟ ଦେଖି ଦେଖି କେତେବେଳେ ମୋର ଚେତନା ଆସିଗଲା । ମୁଁ ଉଠି ବସି ଦେଖିଲି ଯେଉଁ ବ୍ରାହ୍ମଣଙ୍କୁ ମୁଁ ଦସ୍ୟୁମାନଙ୍କ ହସ୍ତରୁ ରକ୍ଷା କରିବାକୁ ଚେଷ୍ଟା କରିଥିଲି ସେ ମୋର ଶୁଶ୍ରୂଷା କରୁଅଛନ୍ତି ।

ଏହି କୃତଜ୍ଞ ବ୍ରାହ୍ମଣଙ୍କ ସେବା ଫଳରେ ମୁଁ ଅତି ଶୀଘ୍ର ସବଳ ହୋଇ ଉଠିଲି । କେବଳ ସେତିକି ନୁହେଁ, ତାଙ୍କ ସହବାସ କରିବା ଫଳରେ ମୋର ନୈତିକଜୀବନରେ ମଧ୍ୟ ବହୁତ ପରିବର୍ତ୍ତନ ଘଟିଗଲା । ଖୁବ ଅଳ୍ପ ସମୟ ମଧ୍ୟରେ ମୁଁ ତାଙ୍କଠାରୁ ମାନବ ଜୀବନର ଲକ୍ଷ୍ୟ ଓ ମୁକ୍ତି ସମ୍ବନ୍ଧେ ବହୁତ କଥା ଶିକ୍ଷା କରିପାରିଲି । କିନ୍ତୁ କିଛି ଦିନ ପରେ ଏ ବ୍ରାହ୍ମଣ ତପସ୍ୟାସାଧନ ଉଦ୍ଦେଶ୍ୟରେ ହିମାଳୟ ପ୍ରଦେଶକୁ ଯାତ୍ରା କଲେ । ବର୍ତ୍ତମାନ ମୁଁ

ମଧ୍ୟ ପାରିବାରିକ ସକଳ ବନ୍ଧନ ଛିନ୍ନକରି ଈଶ୍ୱରାରାଧନାରେ ଜୀବନ ଅତିବାହିତ କରିବା ପାଇଁ ଠିକ୍ କରିଅଛି ।

ଏ ସମସ୍ତ କଥା କହି ସାରିବା ପରେ ମଧ୍ୟ ମୁଁ ଆଜ ଆପଣଙ୍କ ନିକଟକୁ କାହିଁକି ଆସିଅଛି ତାହା କହି ନାହିଁ । ଗତ ରାତ୍ରିରେ ମୁଁ ଗୋଟିଏ ଅତି ଆଶ୍ଚର୍ଯ୍ୟଜନକ ସ୍ୱପ୍ନ ଦେଖିଲି । ସ୍ୱପ୍ନରେ ଦେବଦେବ ମହାଦେବ ମୋତେ ଆଦେଶ କଲେ, "ମାତଙ୍ଗ ତୁମେ ଦଣ୍ଡକାରଣ୍ୟକୁ ଯାତ୍ରା କର । ତାହାର ଉତ୍ତର ପଶ୍ଚିମ ସୀମାରେ ଗୋଟିଏ ସ୍ୱଚ୍ଛନୀର ନଦୀ ପ୍ରବାହିତ । ଏହି ନଦୀର ତୀର ଦେଶରେ ଗୋଟିଏ ସ୍ଫଟିକମୟ ଶିବଲିଙ୍ଗ ବିରାଜିତ । ସିଦ୍ଧସାଧକଗଣ ପ୍ରତିଦିନ ଏହି ଲିଙ୍ଗଙ୍କର ପୂଜାରାଧନା କରନ୍ତି । ସେହି ଶିବଲିଙ୍ଗର ପଶ୍ଚାଦ୍‌ଭାଗରେ ପାର୍ବତୀଙ୍କର ପଦଚିହ୍ନ ଶୋଭିତ ଖଣ୍ଡିଏ ପ୍ରସ୍ତର ନିକଟରେ ବ୍ରହ୍ମାଙ୍କର ମୁଖ ବିବର ତୁଲ୍ୟ ଏକ ବୃହତ୍ ଗର୍ତ୍ତଅଛି । ଏ ଗହ୍ୱର ନିକଟରେ ଗୋଟିଏ ପ୍ରସ୍ତର ଫଳକ ପଡ଼ି ରହିଛି । ଯଦି କେହି ବୀରପୁରୁଷ ଏ ପ୍ରସ୍ତର ଖଣ୍ଡକ ଉତ୍ତୋଳନ କରିପାରେ ତେବେ ନିମ୍ନଭାଗରେ ଏକ ତାମ୍ର ଫଳକ ଦେଖାଯିବ । ଗହ୍ୱରମଧ୍ୟ ଦେଇ ପାତାଳପୁରରେ କିପରି ପ୍ରବେଶ କରିବାକୁ ହେବ ତତ୍ସମ୍ବନ୍ଧେ କେତେକ ଉପଦେଶ ଏ ଫଳକ ଉପରେ ଅଙ୍କିତ ଅଛି । ଯେଉଁ କ୍ଷତ୍ରିୟ ଯୁବକ ପ୍ରସ୍ତର ଫଳକଟି ଉତ୍ତୋଳନ କରି ପାରିବାର ସମ୍ଭାବନା ଅଛି ସେ ଆସନ୍ତା କାଲି ଏ ଅରଣ୍ୟ ମଧ୍ୟରେ ପ୍ରବେଶ କରିବେ । ତାହାଙ୍କ ସାହାଯ୍ୟରେ ତୁମେ ଏ ଅସାଧ୍ୟ ସାଧନ କରିପାରିବ ।"

ଦେବଦେବଙ୍କର ଏହି ଆଦେଶ ପାଳନ କରିବା ପାଇଁ ମୁଁ ଆଜ କୃତସଙ୍କଳ୍ପ । ଭାଗ୍ୟବଶତଃ ଆପଣଙ୍କର ସାକ୍ଷାତ୍ ପାଇ ଅଛି । ଆପଣ ନିଶ୍ଚୟ ସେହି କ୍ଷତ୍ରିୟ ଯୁବକ । ତେଣୁ ଆପଣ ମୋତେ ଏକାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ସବିନୟ ଅନୁରୋଧ କରେଁ ।

ଏପରି ଏକ ବାସ୍ତବ୍ଯୁକ୍ତର ବ୍ୟାପାରରେ ନିଜର ସତ୍‌ସାହସର ପରିଚୟ ଦେବାପାଇଁ ରାଜବାହନ ଆନନ୍ଦରେ ସ୍ୱୀକୃତ ହେଲେ । ତେଣୁ ଅର୍ଦ୍ଧରାତ୍ରି ସମୟରେ ଉଭୟେ ଦଣ୍ଡକାରଣ୍ୟ ଅଭିମୁଖରେ ଯାତ୍ରା କରିବା କଥା ଠିକ୍ ହେଲା । ମାତଙ୍ଗ ସେଠାରୁ ବିଦାୟ ନେଲେ ।

ପଥଶ୍ରାନ୍ତି ଯୋଗୁ ରାତ୍ରି ଭୋଜନ ପରେ ମନ୍ତ୍ରୀ ପୁତ୍ରଗଣ ସୁଷୁପ୍ତିର କୋମଳ କୋଡ଼ରେ ଚେତନା ଶୂନ୍ୟ ହୋଇ ପଡ଼ିଲେ । କେବଳ ରାଜକୁମାର ଶଯ୍ୟା ଗ୍ରହଣ କରିମଧ୍ୟ ଜାଗ୍ରତ । ଠିକ୍ ଅର୍ଦ୍ଧରାତ୍ରି ସମୟରେ ସେ ବନ୍ଧୁମାନଙ୍କ ଅଜ୍ଞାତସାରରେ ଶଯ୍ୟାତ୍ୟାଗ କରି ମାତଙ୍ଗ ସହ ମିଳିତ ହେଲେ ।

ମନ୍ତ୍ରିପୁତ୍ରଗଣ ପ୍ରଭାତରେ ଶଯ୍ୟାତ୍ୟାଗ କରି ଦେଖନ୍ତି ତ ରାଜକୁମାର ସେମାନଙ୍କ ସଙ୍ଗରେ ନାହାନ୍ତି । ସମସ୍ତଙ୍କ ମନ ଆଶଙ୍କା ଓ ଉଦ୍‌ବେଗରେ ଆନ୍ଦୋଳିତ ହେଲା । ଦିନ ସାରା ନିକଟବର୍ତ୍ତୀ ଅଞ୍ଚଳମାନଙ୍କରେ ଅନୁସନ୍ଧାନ କରାଗଲା । କିନ୍ତୁ କୌଣସିଠାରେ ତାଙ୍କର କୌଣସି ପ୍ରକାର ଚିହ୍ନ ସୁଦ୍ଧା ଦେଖାଗଲା ନାହିଁ ।



# (୯)

# ପାତାଳ ବିଜୟ

ହିଂସ୍ର ଜନ୍ତୁ ପୂର୍ଣ୍ଣ ଅରଣ୍ୟାନୀ—କଣ୍ଟକାକୀର୍ଣ୍ଣ ବନ୍ଧୁର ପଥ—ଅସୂର୍ଯ୍ୟଭେଦ୍ୟ ଅନ୍ଧକାର ଏ ସବୁକୁ ଅଗ୍ରାହ୍ୟ କରି ଗଜବାହନ ମାତଙ୍ଗଙ୍କର ଅନୁସରଣ କରିବାକୁ ଲାଗିଲେ । ସମସ୍ତ ରାତି ପଥମଧ୍ୟରେ କଟିଗଲା । ଠିକ୍ ସୂର୍ଯ୍ୟୋଦୟ ପୂର୍ବରୁ ସେମାନେ ଗୋଟିଏ ସ୍ୱଚ୍ଛନୀରା ନିର୍ଝରଣୀ ନିକଟରେ ଉପସ୍ଥିତ ହେଲେ । ନିର୍ଝରର ଝଙ୍କାର ବନ ବିହଙ୍ଗାବଳୀର କାକଳୀ ସଙ୍ଗେ ମିଶି ବନ୍ଧୁଦ୍ୱୟଙ୍କ କର୍ଣ୍ଣରେ ଅମୃତଧାରା ବର୍ଷଣ କଲାପରି ବୋଧ ହେଲା । ଶୀତଳ ପ୍ରଭାତ ସମୀର ସଂସ୍ପର୍ଶରେ ଉଭୟେ ସତେଜ ବୋଧ କଲେ । ଅରୁଣ ରାଗ ରଞ୍ଜିତ ବନାନୀ ସେମାନଙ୍କ ହୃଦୟରେ ଅଭିନବ ଉତ୍ସାହ ଆନୟନ କରିବା ସଙ୍ଗେ ସଙ୍ଗେ ପଥଶ୍ରାନ୍ତିକୁ ଲଘୁ କରି ଦେଲା ।

•

ଏହିଠାରୁ ମାତଙ୍ଗ ଝରଣାର ତୀରେ ତୀରେ ଅଗ୍ରସର ହୋଇ ଏକ ସ୍ଫଟିକ ଲିଙ୍ଗ ନିକଟରେ ଉପସ୍ଥିତ ହେଲେ । ଶିବଲିଙ୍ଗର ପଶ୍ଚାଦ୍‌ଭାଗରେ ପାର୍ବତୀଙ୍କର ପଦଚିହ୍ନ ଶୋଭିତ ଖଣ୍ଡିଏ ପ୍ରସ୍ତର । ତାହାର ଅପର ପାର୍ଶ୍ୱରେ ଏକ ସୁବୃହତ୍ ପ୍ରସ୍ତର ଫଳକ ଦେଖାଗଲା ।

ମାତଙ୍ଗଙ୍କର ନିର୍ଦ୍ଦେଶ କ୍ରମେ ଗଜବାହନ ପ୍ରଥମ ଚେଷ୍ଟାରେ ହିଁ ପ୍ରସ୍ତରଫଳକ ଖଣ୍ଡିକୁ ସ୍ଥାନଚ୍ୟୁତ କରି ଦେଲେ ଏବଂ ତତ୍‌କ୍ଷଣାତ୍ ତନ୍ନିମ୍ନସ୍ଥ ତାମ୍ରଫଳକ ସୂର୍ଯ୍ୟକିରଣରେ ଉଦ୍ଭାସିତ ହୋଇ ଉଠିଲା ।

ମାତଙ୍ଗ ତାମ୍ରଫଳକରେ ଖୋଦିତ ଲିପି ପଢ଼ି ଦେଖିଲେ ତାମ୍ରପତ୍ରରେ ପାତାଳ ପଥ ସମ୍ବନ୍ଧେ ସେଥିରେ ଏକ ବିସ୍ତୃତ ବିବରଣୀ ଲିପିବଦ୍ଧ ହୋଇଅଛି । ତାର ମର୍ମ ହେଉଛି—ପାତାଳ ପଥ ଅଶାନ୍ତରଙ୍ଗ ଭାବେ ବିପଦ ସଙ୍କୁଳ । ଏ ପଥଦେଇ ପାତାଳପୁରରେ ପ୍ରବେଶ କରିବା ପାଇଁ ଅମିତ ସାହସ ଓ ଧୈର୍ଯ୍ୟ ଆବଶ୍ୟକ । ସାଧାରଣ ମାନବ ଏ ପଥ ଅତିକ୍ରମ କରି ପାରିବ ନାହିଁ ।

ଲିପିପାଠ ପରେ ବନ୍ଧୁଦ୍ୱୟ ପାତାଳ ବିବର ମୁଖରେ ପ୍ରବେଶ କରିବା ପାଇଁ ପ୍ରସ୍ତୁତ ହେଲେ । ଭୀତି ବା ଆଶଙ୍କାର କାଳିମା କାହାର ହୃଦୟକୁ ସ୍ପର୍ଶ କଲାନାହିଁ । ପ୍ରଫୁଲ୍ଲ ବଦନରେ ଉଭୟେ ଗହ୍ୱର ମୁଖ ମଧ୍ୟକୁ ଲମ୍ଫ ପ୍ରଦାନ କଲେ ।

ଅସୂର୍ଯ୍ୟଭେଦ୍ୟ ଅନ୍ଧକାର ମଧ୍ୟରେ ହଠାତ୍ କେଉଁଠାରୁ ଶତ ମୃତ୍ୟୁ ଯନ୍ତ୍ରଣାର ବିକଟ ଚିତ୍କାର ସେମାନଙ୍କର କର୍ଣ୍ଣ କୁହରକୁ ସ୍ତବ୍ଧ କରିଦେଲା—ଯେପରିକି ନରକର ଲକ୍ଷ ଲକ୍ଷ ଅର୍ଦ୍ଧଦଗ୍ଧ ଶରୀରର ବିକଳ କ୍ରନ୍ଦନ ଅଖଣ୍ଡ ଧାରାରେ ବହି ଆସୁଅଛି । ମାତଙ୍ଗଙ୍କ ମାନସ ପଟରେ ପୂର୍ବଦୃଷ୍ଟ ନରକର ନିର୍ମମ ଦୃଶ୍ୟ ସକଳ ନାଚି ଗଲା । ସେ ସ୍ତମ୍ଭିତ ହୋଇ ଗଜବାହନଙ୍କୁ ଆକର୍ଷି ଧରି ରହିଲେ । ଏଣେ ବହୁକାଳାବଧି ସୁଷୁପ୍ତ ଶତଶତ ବାଦୁଡ଼ି ମନୁଷ୍ୟ ପଦ-ଶବ୍ଦରେ ବିଚଳିତ ହୋଇପଡ଼ି ଚିତ୍କାର ସହ ଭୀଷଣ ବେଗରେ ଉଡ଼ିବାକୁ ଲାଗିଲେ ଏବଂ ଶତ୍ରୁମୁଖରେ ଦୀର୍ଘପକ୍ଷ ପ୍ରହାର କରି ସେମାନଙ୍କୁ ଅସ୍ଥିର କରି ପକାଇଲେ । ସେ ଚିତ୍କାର—ସେ ପ୍ରହାର

ଏବଂ ସେ ଶ୍ୱାସରୋଧୀ ଦୁର୍ଗନ୍ଧ ସହ୍ୟକରି ସେଠାରେ ଅବସ୍ଥାନ କରିବା ସାଧାରଣ ମନୁଷ୍ୟ ପକ୍ଷେ ଅସମ୍ଭବ ।

ତଥାପି ଦୁଇ ବନ୍ଧୁ ଅଗ୍ରସର ହେଲେ—କିନ୍ତୁ ବେଶି ସମୟ ପାଇଁ ନୁହେ । ହଠାତ୍ ସେମାନଙ୍କ ସମ୍ମୁଖରେ ତୀବ୍ର ଧୂମୋଦ୍‌ଗାରୀ କରାଳ ଅଗ୍ନିଶିଖା ହୁହୁ ପ୍ରଜ୍ଜ୍ୱଳିତ ହେଲା ଏବଂ ନିବିଡ଼ ଧୂମରାଶି ତଥା ପ୍ରଖର ଅଗ୍ନିତେଜରେ ବନ୍ଧୁଦ୍ୱୟଙ୍କର ଚକ୍ଷୁ ସ୍ୱତଃ ମୁଦ୍ରିତ ହୋଇ ପଡ଼ିଲା । ମାତଙ୍ଗ ଆଉ ସହ୍ୟ କରିପାରିଲେ ନାହିଁ । କିଂକର୍ତ୍ତବ୍ୟ-ବିମୂଢ଼ ହୋଇ ଅଗ୍ନିଶିଖା ମଧ୍ୟରେ ନିଜର ଦେହ ବିସର୍ଜନ କରିବାକୁ ସେ ଉଦ୍ୟତ ହେଲେ । କିନ୍ତୁ ହଠାତ୍ ପୁଣି ଏକ ଅପୂର୍ବ ପରିବର୍ତ୍ତନ ଘଟିଲା । ନିକଟରେ କେଉଁଠାରୁ ଏକ ତୁଷାର-ଶୀତଳ ଝରଣା ଫୁଟି ଉଠିଲା ।

ଏ ଘଟନାରେ ରାଜବାହନଙ୍କ ଏକ ବୁଦ୍ଧି ଦେଖାଗଲା । ସେ ଶୀତଳ ଜଳରେ ଅବଗାହନ କରି ସିକ୍ତ ଦେହରେ ଅଗ୍ନିଶିଖା ମଧ୍ୟଦେଇ ଅପର ପାର୍ଶ୍ୱକୁ ଚାଲିଗଲେ ଏବଂ ସେହି ଉପାୟ ଅବଲମ୍ବନ କରିବା ପାଇଁ ମାତଙ୍ଗଙ୍କୁ ଉପଦେଶ ଦେଲେ ।

ପୁଣି କିଛିଦୂର ଅଗ୍ରସର ହେବାପରେ ସେମାନଙ୍କୁ ଭୀଷଣ ଅନ୍ଧକାର ପୂର୍ଣ୍ଣ ପଥମଧ୍ୟରେ ଗତି କରିବାକୁ ପଡ଼ିଲା । ତାହା ଏତେ ନିବିଡ଼ ଯେ ସେମାନେ ଚତୁଷ୍ପଦ ଜୀବପରି ହସ୍ତ ଓ ପଦ ସାହାଯ୍ୟରେ ଅସ୍ତେ ଅସ୍ତେ ଅଗ୍ରସର ହେବାକୁ ଲାଗିଲେ । କ୍ରମେ କ୍ରମେ ପଥ ମଧ୍ୟ ଅପ୍ରଶସ୍ତତର ହୋଇ ପଡ଼ିଲା ଏବଂ ଏହିପରି ଭାବରେ ବହୁଦୂର ଯିବା ପରେ ସେମାନେ କ୍ରମନିମ୍ନ ପାବଚ୍ଛଶ୍ରେଣୀ ଦେଇ ନିମ୍ନଦେଶକୁ ଅବତରଣ କଲାପରି ବୋଧ କଲେ ।

କେତେ ଦୂର ପଥ ଯେ ଏହାପରି ଭାବରେ ସେମାନେ ଗତ କଲେ ତାହା ଅନୁମାନର ବହିର୍ଭୂତ । ଶେଷରେ ଏକ ଅସ୍ପଷ୍ଟ ଆଲୋକରେ ସେମାନେ ପାବଳ୍ଚ ଗୁଡ଼ିକୁ ଦେଖିବାକୁ ପାଇଲେ । ମାତ୍ର କେତେକ ମୁହୂର୍ତ୍ତ ପରେ ଏ ଆଲୋକ ଏତେ ତୀବ୍ର ଓ ତେଜୋଦ୍ଦୀପ୍ତ ହେଲା ଯେ ତାହା ମାନବଚକ୍ଷୁ ପକ୍ଷେ ଅସହ୍ୟ ହୋଇ ପଡ଼ିଲା । ସୁତରାଂ ଉଭୟେ ବନ୍ଧୁ ଚକ୍ଷୁ ଉପରେ ଦୁଇ ତିନି ସ୍ତର ବସ୍ତ୍ର ବନ୍ଧନ କରି ଅଗ୍ରସର ହେଲେ । ତଥାପି ଆଲୋକରଶ୍ମି ଚକ୍ଷୁ ମଧ୍ୟରେ ସୂଚୀବତ୍ ବିଦ୍ଧ ହେବାକୁ ଲାଗିଲା ଏବଂ ଉଭୟେ ଉପାୟାନ୍ତର ନଦେଖି ସେଠାରେ କିଛି ସମୟ ଅବନତ ମୁଖରେ ବସି ରହିବାକୁ ବାଧ୍ୟ ହେଲେ ।

ଏହାପରି ବହୁ ସମସ୍ୟାବଳି ଅସଂଖ୍ୟ ବିପଦର ସମ୍ମୁଖୀନ ହୋଇ ବନ୍ଧୁଦ୍ୱୟ ଏକ ବିସ୍ତୃତ ପ୍ରାନ୍ତରରେ ପହଞ୍ଚି ଦେଖିଲେ ମେଘାଚ୍ଛାଦିତ ଦିବସ ପରି ଚତୁର୍ଦ୍ଦିଗ ଅସ୍ପଷ୍ଟ । ନିକଟରେ ଲୋକାଳୟର କୌଣସି ସୂଚନା ନାହିଁ ।

ଦୀର୍ଘ ସମୟବ୍ୟାପୀ କ୍ଳାନ୍ତ ପଥ ଅନୁସରଣ କରି ମାତଙ୍ଗ ଓ ଯୁବରାଜ ଶୁଭ୍ର ସୌଧମାଳିନୀ ପାତାଳପୁରୀର ବିସ୍ତୃତ ରାଜପଥରେ ଅବତୀର୍ଣ୍ଣ ହେଲେ । ନଗର ମଧ୍ୟରେ କିଛିଦୂର ଅଗ୍ରସର ହେବା ପରେ ପଥପାର୍ଶ୍ୱସ୍ଥ ଗୋଟିଏ ବାପୀ ମଧ୍ୟରେ ପଦ୍ମଫୁଲଟିଏ ଫୁଟିଥିବା ସେମାନେ ଦେଖିପାରିଲେ । ତାମ୍ର ଫଳକର ନିର୍ଦ୍ଦେଶ ଅନୁସାରେ ଏହିଠାରେ ଏକ ହୋମାନୁଷ୍ଠାନ କରି ଆହୁତି ପ୍ରଦାନ କରିବାକୁ ହେବ । ହୋମ ପାଇଁ ପୂର୍ବରୁ ସକଳ ସାମଗ୍ରୀ ବାପୀ ନିକଟରେ ସଂରକ୍ଷିତ ହୋଇଥିଲା । କିଛି ସମୟ ବିଶ୍ରାମ କରିସାରିବା ପରେ ମାତଙ୍ଗ ସ୍ନାନାହ୍ନିକ କର୍ମ ଶେଷ କରି ହୋମାଗ୍ନି ପ୍ରଜ୍ୱଳିତ

କରିଦେଲେ ଏବଂ ରାଜବାହନ ଭକ୍ତିଯୁକ୍ତ ଖଡ଼୍ଗହସ୍ତରେ ହୋମ-କ୍ରିୟାକୁ ନିର୍ବିଘ୍ନ କରିବା ପାଇଁ ଦଣ୍ଡାୟମାନ ହୋଇ ରହିଲେ ।

ହୋମ ଶେଷ ହେଲା । ଅଗ୍ନିଦେବତା ଓ ଇଷ୍ଟ ଦେବତା ଚରୁଗ୍ରହଣ କରି ପରିତୃପ୍ତ ହୋଇଥିବାରୁ ହୋମାନଳ ମଧ୍ୟରେ ଶରୀରୀ ହୋଇ ଉଭୟଙ୍କୁ ବର ପ୍ରଦାନ କଲେ । ଦେବତାମାନଙ୍କର ଅନ୍ତର୍ଦ୍ଧାନ ସଙ୍ଗେ ସଙ୍ଗେ ମାତଙ୍ଗ ନିଃଶଙ୍କ ଚିତ୍ତରେ ହୋମକୁଣ୍ଡ ମଧ୍ୟକୁ ଲମ୍ଫ ପ୍ରଦାନ କଲେ । ଆଶ୍ଚର୍ଯ୍ୟର କଥା, ମୁହୂର୍ତ୍ତକ ମଧ୍ୟରେ ମାତଙ୍ଗଙ୍କର କଦାକାରରୂପ ନବଯୌବନର ସୁଷମାରେ ପୁରିଗଲା ଏବଂ ମୁଖମଣ୍ଡଳରୁ ଦେବକାନ୍ତି ଫୁଟି ଉଠିଲା ।

ଠିକ୍ ଏହି ସମୟରେ ସେମାନେ ଆଉ ଏକ ବିସ୍ମୟୋତ୍ପାଦକ ବ୍ୟାପାରର ସମ୍ମୁଖୀନ ହେଲେ । ହଠାତ୍ କେଉଁଠାରୁ ଜଣେ ଅସାମାନ୍ୟ ରୂପବତୀ ରାଜକୁମାରୀ ସର୍ଖୀବୃନ୍ଦ ସମଭିବ୍ୟାହାରରେ ସେମାନଙ୍କର ନିକଟବର୍ତ୍ତୀ ହେବା ଦେଖାଗଲା । ସେମାନଙ୍କର ସୁମଧୁର ଚରଣନୂପୁର ଧ୍ୱନିରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହେଲା ଏବଂ ଦୀର୍ଘ କୁନ୍ତଳ ଶୋଭୀ କୁସୁମସମ୍ଭାର ତଥା ଅଙ୍ଗରାଗର ସୌରଭରେ ବାୟୁମଣ୍ଡଳ ସୁରଭିତ ହୋଇ ପଡ଼ିଲା ।

ରାଜକୁମାରୀ ମାତଙ୍ଗଙ୍କ ପଦ ବନ୍ଦନା କଲେ ଏବଂ ପଦତଳରେ ଗୋଟିଏ ତେଜୋଦୀପ୍ତ ମଣି ସମର୍ପଣ କରି ସକଳ ସତ୍ତ୍ୱତାର ଆଧାର ଲଜ୍ଜାବନତ ବଦନ ମଣ୍ଡଳରେ ସ୍ମିତହାସ୍ୟ ରେଖା ଫୁଟାଇ ଦେଇ ଅଦୂରରେ ଦଣ୍ଡାୟମାନା ହେଲେ ।

ମାତଙ୍ଗ ଏବଂ ରାଜବାହନ ନିର୍ବୋଧ ଭାବରେ ଠିଆହୋଇ ଏ ସବୁ କେବଳ ଦେଖି ଯାଉଥିଲେ । କିଛିକ୍ଷଣ ପରେ ମାତଙ୍ଗ ରାଜକୁମାରୀଙ୍କର ପରିଚୟ ମାଗିବାରୁ ସେ କହିଲେ–"ଦ୍ୱିଜୋତ୍ତମ,

ମୁଁ ପାତାଳପୁରର ରାଜକନ୍ୟା । ମୋର ନାମ କାଳନ୍ଦୀ । ମୋର ପିତା ସ୍ୱୀୟ ବାହୁବଳରେ ବଳୀୟାନ୍ ହୋଇ ସ୍ୱର୍ଗରାଜ୍ୟ ଆକ୍ରମଣ କରିବାରୁ ବିଷ୍ଣୁ-ଚକ୍ର ତାଙ୍କପାଇଁ ଯମାଳୟ-ପଥ ପରିଷ୍କାର କରିଦେଲା। ସେହିଦିନଠାରୁ ମୁଁ ପିତୃହୀନ ହୋଇ ଏ ପାତାଳପୁରରେ ଏକାକିନୀ ବାସ କରୁଅଛି । ଦିନେ ମହର୍ଷି ନାରଦ ମୋ ପ୍ରତି ସଦୟ ହୋଇ ମୋର ଭବିଷ୍ୟତ୍ ଜୀବନ ସମ୍ବନ୍ଧେ କହିଲେ ଯେ କେତେକ ବର୍ଷପରେ ପୃଥିବୀର ଜଣେ ମହାବୀରଙ୍କର ପାତାଳପୁରକୁ ଆଗମନ ହେବ । ତାଙ୍କ ସହିତ ଜଣେ ମହାତେଜା ବ୍ରାହ୍ମଣ ବୀର ମଧ୍ୟ ଆଗମନ କରିବେ । ଏହି ବ୍ରାହ୍ମଣ ବୀର ଏ ପାତାଳପୁରୀର ପାଳକ ହେବେ । ଏହି ଶୁଭ ମୁହୂର୍ତ୍ତର ଅପେକ୍ଷାରେ ମୁଁ ବହୁ ବିନିଦ୍ର ରଜନୀ ଯାପନ କରିଅଛି । ବର୍ତ୍ତମାନ ସେ ପରମ ମୁହୂର୍ତ୍ତ ଉପସ୍ଥିତ । ପ୍ରାଣେଶ୍ୱର, ଅଧୀନାକୁ ଶ୍ରୀଚରଣ ତଳେ ଆଶ୍ରୟ ଦେଇ ଏ ଅଜନ୍ମ ଦୁଃଖିନୀ ବାଳିକାର ଜୀବନ ସାର୍ଥକ କରନ୍ତୁ ଏବଂ ଏ ପାତାଳ ପୁରର ପରିପାଳନ ଭାର ସ୍ୱହସ୍ତରେ ଗ୍ରହଣ କରି ରାଜ୍ୟରୁ ଅରାଜକତା ଦୂର କରନ୍ତୁ ।”

ଉକ୍ତ ମାତଙ୍ଗଙ୍କର ବିବାହ ତଥା ଅଭିଷେକ ଉତ୍ସବରେ କିଛି ଦିନ ତନ୍ମୟ ରହିବା ପରେ ରାଜବାହନଙ୍କର ଅନ୍ୟ ବନ୍ଧୁମାନଙ୍କ କଥା ସ୍ମରଣ ହେଲା ଏବଂ ସଙ୍ଗେ ସଙ୍ଗେ ସେ ପୃଥିବୀ ପୃଷ୍ଠକୁ ଫେରିଯିବା ପାଇଁ ଇଚ୍ଛାପ୍ରକାଶ କଲେ ।

ବିଦାୟ ସମୟରେ ମାତଙ୍ଗ କୃତଜ୍ଞତାର ଚିହ୍ନସ୍ୱରୂପ କାଳନ୍ଦୀଙ୍କଠାରୁ ପାଇଥିବା ମଣିଟି ରାଜବାହନଙ୍କୁ ଉପହାର ଦେଲେ । ଏ ମଣିର ଶକ୍ତି ହେଉଛି ଯେ ଏହାକୁ ଧାରଣ କରିବା ବ୍ୟକ୍ତି କଦାପି କ୍ଷୁଧାତୃଷ୍ଣାର ବାଧା ବୋଧ କରିବ ନାହିଁ ।

ରାଜବାହନ ଏକାକୀ ପାତାଳପୁରରୁ ଫେରିଲେ । କିନ୍ତୁ ସୁଡ଼ଙ୍ଗ ଦ୍ୱାରରେ ଉପସ୍ଥିତ ହେବା ମାତ୍ରେ ତାହାଙ୍କର ହୃତ୍‌କମ୍ପ ଜାତ ହେଲା । କାରଣ, ଯେଉଁ ପଥଦେଇ ସେ ସାହସୀ ମାତଙ୍ଗଙ୍କ ସହ ଆସି ମଧ୍ୟ ଅକଥନୀୟ ଦୁଃଖ ଅନୁଭବ କରିଥିଲେ, ସେ ପଥରେ ବର୍ତ୍ତମାନ ଏକାକୀ ଫେରିବେ କିପରି ? ମାତ୍ର ଆଶ୍ଚର୍ଯ୍ୟର କଥା, ସେ ଅଗ୍ରସର ହୋଇ ଦେଖିଲେ—ସମ୍ମୁଖରେ ଆଉ ସେ ପ୍ରାଚୀର ନାହିଁ—ଗହ୍ୱର ନାହିଁ—ଅନ୍ଧକାର ନାହିଁ—ଅଗ୍ନିଶିଖା ନାହିଁ ବା ଝରଣା ନାହିଁ । ସମସ୍ତ ପଥ ଗୋଟିଏ ପ୍ରଶସ୍ତ ଆଲୋକିତ ରାଜପଥରେ ପରିଣତ ହୋଇ ଯାଇଛି ।

ରାଜବାହନ ପୃଥିବୀପୃଷ୍ଠରେ ଅବତୀର୍ଣ୍ଣ ହୋଇ ଯେଉଁଠାରେ ବନ୍ଧୁମାନଙ୍କୁ ତ୍ୟାଗକରି ଯାଇଥିଲେ ସେହି ସ୍ଥାନ ଉଦ୍ଦେଶ୍ୟରେ ଯାତ୍ରା କଲେ । କିନ୍ତୁ ସେଠାରେ ଆଉ ଅଛି କିଏ ? ନୀରବ ଦ୍ରୁମଲତା—ଅତ୍ୟୁଚ୍ଚ ବନ୍ୟଶିଖରୀ—କିମ୍ବା ମୂକ ବଣ୍ୟଜନ୍ତୁଗଣ ବନ୍ଧୁମାନଙ୍କ ସମ୍ବନ୍ଧେ ତାଙ୍କୁ କୌଣସି ସମ୍ବାଦ ଦେଇ ପାରିଲେ ନାହିଁ ।



# (୧୦)

# ସୋମଦତ୍ତଙ୍କ ଭ୍ରମଣ ବୃତ୍ତାନ୍ତ

ବିନ୍ଧ୍ୟ ପର୍ବତରେ ବନ୍ଧୁମାନଙ୍କର ସାକ୍ଷାତ ନପାଇ ରାଜବାହନ ସେମାନଙ୍କର ଅନ୍ୱେଷଣ କରିବାକୁ ଲାଗିଲେ । ସେ ବହୁ ଗ୍ରାମ ଓ ଜନପଦ ଅତିକ୍ରମ କରି କେତେକ ଦିନପରେ ଉଜ୍ଜୟିନୀ ନଗରୀର ନିକଟବର୍ତ୍ତୀ ହେଲେ । କିନ୍ତୁ କୌଣସିଠାରେ ସହଚରମାନଙ୍କର କିଛିମାତ୍ର ସମ୍ବାଦ ନପାଇବାରୁ ତାହାଙ୍କର ମାନସିକ ଅବସାଦ ଶାରୀରିକ କ୍ଳାନ୍ତିକି ଦ୍ୱିଗୁଣିତ କରିପକାଇଲା । ସେ ନଗରୀର ଉପକଣ୍ଠସ୍ଥ ଏକ ଉଦ୍ୟାନରେ କିଛି ସମୟ ବିଶ୍ରାମ ନେବାପାଇଁ ତନ୍ମଧ୍ୟରେ ପ୍ରବେଶ କଲେ । ରାଜବାହନ କିଛି କ୍ଷଣ ଅବସ୍ଥାନ କରିଛନ୍ତି ଅକସ୍ମାତ୍ ବହୁ ଅନୁଚର ପରିବେଷ୍ଟିତ ଗୋଟିଏ ଶିବିକା ଉଦ୍ୟାନର ପ୍ରବେଶ ଦ୍ୱାରରେ ରହିଲା ଏବଂ ରାଜପରିଚ୍ଛଦ ପରିହିତ ଜଣେ ଯୁବକ ସେଥିମଧ୍ୟରୁ ବାହାରି ତାଙ୍କରି ଆଡ଼କୁ ଧାବମାନ ହେଲେ । ରାଜବାହନଙ୍କ ବିସ୍ମୟ-ବିସ୍ଫାରିତ-ନେତ୍ର ହଠାତ୍ ଆନନ୍ଦାଶ୍ରୁ ସିକ୍ତ ହୋଇପଡ଼ିଲା । ସେ ଦେଖିଲେ, ସମ୍ମୁଖରେ ବନ୍ଧୁ ସୋମଦତ୍ତ—ତାହାଙ୍କର ସର୍ବକନିଷ୍ଠ ସହଚର । ସୋମଦତ୍ତ ଉତ୍ଫୁଲ୍ଲପ୍ରାଣରେ ତାଙ୍କ ପଦତଳେ ନମସ୍କାରକରି ଦଣ୍ଡାୟମାନ ହେବା ମାତ୍ରେ ରାଜବାହନ ତାହାଙ୍କର ରୋମାଞ୍ଚିତ ଶରୀରକୁ ଆଲିଙ୍ଗନକରି ସକଳ ଖେଦ ଓ ଅବସାଦ ଭୁଲିଗଲେ ।

ସୋମଦତ୍ତଙ୍କ ଆଦେଶରେ ଶିବିକା ଉଦ୍ୟାନ ମଧ୍ୟକୁ ଆଣୀତ ହେଲା । ସେ ତାହା ମଧ୍ୟରୁ ନିଜ ସହଧର୍ମିଣୀଙ୍କୁ ଆଣି ରାଜବାହନଙ୍କ ସହିତ ପରିଚୟ କରାଇଦେଲେ ଏବଂ ସେ ଦୁହେଁ ପରସ୍ପରପ୍ରତି ଯଥାଯୋଗ୍ୟ ସମ୍ମାନ ଜଣାଇବା ପରେ ବନ୍ଧୁତ୍ରୟ ଏକ ନାଗେଶ୍ୱର ବୃକ୍ଷଛାୟାରେ ଉପବେଶନ କରି ମଧୁରଆଳାପରେ ନିମଗ୍ନ ହେଲେ ।

ଅନ୍ୟ ସଖାମାନଙ୍କ ସ୍ଥିତି ସେ ସେଠାକୁ କିପରି ଆସିଲେ ଏହି ପ୍ରଶ୍ନର ଉତ୍ତରରେ ସୋମଦତ୍ତ କହିଲେ—"ଯୁବରାଜ, ଆପଣ ଅମ୍ଭମାନଙ୍କ ଛ୍ୟାଟକର ନିରୁଦ୍ଦିଷ୍ଟ ହୋଇଥିବା ଜାଣିପାରି ପ୍ରତ୍ୟେକ ବନ୍ଧୁ ବିଭିନ୍ନ ଦେଶରେ ଆପଣଙ୍କ ଅନ୍ୱେଷଣରେ ବାହାରିଲୁଁ । ଏକଥା ଅମ୍ଭମାନଙ୍କ ମଧ୍ୟରେ ସ୍ଥିରୀକୃତ ହେଲା ଯେ, ଅମ୍ଭେମାନେ ପ୍ରତ୍ୟେକେ ନିଜ ନିଜର କର୍ତ୍ତବ୍ୟ ଶେଷକରି କୃତକାର୍ଯ୍ୟ ହେଉ ବା ନହେଉ ଉଜ୍ଜୟିନୀ ନଗରୀରେ ଅନ୍ୟମାନଙ୍କ ଅପେକ୍ଷାରେ ରହିବୁ ।

ମୁଁ ମୋର ନିର୍ଦ୍ଦିଷ୍ଟ ପଥରେ ବାହାରିଲି । ବହୁଦୂର ଅତିକ୍ରମ କରି ଯିବାପରେ ସମ୍ମୁଖରେ ଗୋଟିଏ କ୍ଷୁଦ୍ର ନଦୀ ପଡ଼ିଲା । ନଦୀ ମଧ୍ୟରେ ଜଳପାନ କଲାବେଳେ ନଦୀ ଶଯ୍ୟାରେ ଖଣ୍ଡେ ତେଜୀୟାନ୍ ପ୍ରସ୍ତର ମୋର ଦୃଷ୍ଟି ଆକର୍ଷଣ କଲା । ପ୍ରସ୍ତର ଖଣ୍ଡିକ ଉଠାଇ ଆଣି ଦେଖିଲି, ତାହା ଏକ ମହାର୍ଘ ହୀରକ ।

ହୀରକ ସହ କିଛି ଦୂର ଅଗ୍ରସର ହୋଇ ଗୋଟିଏ ପୁରାତନ ଦେବାଳୟ ନିକଟରେ ଉପସ୍ଥିତ ହେଲି । ଏଠାରେ ଜଣେ ବୃଦ୍ଧ ବ୍ରାହ୍ମଣ କେତେକ ଶିଷ୍ୟଙ୍କୁ ଅଧ୍ୟାପନା କରାଉଥିଲେ । ଅନୁସନ୍ଧାନ କରି ବୁଝିଲି ଶିଷ୍ୟବର୍ଗ ନିଃସ୍ୱ ଓ ପିତୃମାତୃହୀନ । ସେମାନେ କେବଳ ଭିକ୍ଷାଦ୍ୱାରା ନିଜର ଓ ଗୁରୁଙ୍କର ଭରଣପୋଷଣର

ବ୍ୟବସ୍ଥା କରୁଥିଲେ । ଅଗ୍ରଜ ମହାଶୟ ମୋତେ ଦେଖି ବିଶେଷ ଆଦର କରି ଅତିଥି ଭାବରେ ସତ୍କାର କରିବାକୁ ଲାଗିଲେ ।

ଦେବାଳୟଠାରୁ ଅନତିଦୂରରେ କେତେଗୁଡ଼ିଏ ତମ୍ବୁ ପଡ଼ିଥିଲା । ତମ୍ବୁଗୁଡ଼ିକ ସମ୍ବନ୍ଧେ ଜିଜ୍ଞାସା କରିବାରୁ ଅଗ୍ରଜ ମହାଶୟ କହିଲେ—"ଲାଟ ଦେଶର ରାଜା ମତ୍ତକାଳ ମୃଗୟା ଉଦ୍ଦେଶ୍ୟରେ ଏ ଶିବିର ପକାଇ ଅଛନ୍ତି । ସେ ବର୍ତ୍ତମାନ ଏହି ଦେଶର ରାଜକୁମାରୀ ଅସାଧାରଣ ରୂପଲାବଣ୍ୟବତୀ ବାମଲୋଚନୀଙ୍କୁ ବଳପୂର୍ବକ ଗ୍ରହଣ କରି ସ୍ୱଦେଶକୁ ଫେରୁଅଛନ୍ତି । ସେହିଠାରେ ସେମାନଙ୍କର ବିବାହୋତ୍ସବ ଅନୁଷ୍ଠିତ ହେବ । ଏହାଙ୍କ ହସ୍ତରେ ନିଜର କନ୍ୟାରତ୍ନକୁ ସମର୍ପଣ କରିବା ପାଇଁ ଏ ଦେଶର ରାଜା ବୀରକେତୁଙ୍କର ଆଦୌ ଇଚ୍ଛା ନଥିଲା । ମାତ୍ର ମତ୍ତକାଳ ବାମଲୋଚନୀଙ୍କୁ ପାଇବା ପାଇଁ ସସୈନ୍ୟେ ରାଜ୍ୟ ଆକ୍ରମଣ ଓ ରାଜଧାନୀ ଅବରୁଦ୍ଧ କରିବାରୁ ଶାନ୍ତିପ୍ରିୟ ବୀରକେତୁ ଲୋକକ୍ଷୟ ଭୟରେ ନିଜ କନ୍ୟାଙ୍କୁ ତାହାଙ୍କ ହସ୍ତରେ ଅର୍ପଣ କଲେ । ଏହା ପୂର୍ବରୁ ବୀରକେତୁ ମାନପାଳ ନାମକ ଏକ ବ୍ୟକ୍ତିକୁ ନିଜ କନ୍ୟାଙ୍କୁ ପ୍ରଦାନ କରିବାପାଇଁ ପ୍ରତିଶ୍ରୁତ ହୋଇ ତାହାଙ୍କୁ ନିଜର ମନ୍ତ୍ରୀ ପଦରେ ନିଯୁକ୍ତ କରିଥିଲେ । ବର୍ତ୍ତମାନ ଏ ଘଟଣାରେ ମାନପାଳ ଅତ୍ୟନ୍ତ କ୍ଷୁବ୍ଧ ହୋଇ ଚତୁରଙ୍ଗ ବଳସହ ଏ ଅରଣ୍ୟର ଅନ୍ୟ ଅଂଶରେ ଶିବିର ପକାଇ ମତ୍ତକାଳଙ୍କ ସୈନ୍ୟମାନଙ୍କ ମଧ୍ୟରେ ଭେଦନୀତି ପ୍ରୟୋଗ କରିବାପାଇଁ ଚେଷ୍ଟା କରୁଅଛନ୍ତି ।

ମୁଁ ବୃଦ୍ଧବ୍ରାହ୍ମଣଙ୍କ ବାକ୍ୟାଳାପ ଓ କିଛି ଜଳପାନରେ ସନ୍ତୁଷ୍ଟ ହୋଇ ହୀରକ ଖଣ୍ଡିକ ତାହାଙ୍କୁ ପ୍ରଦାନ କରି ଶୟନ କରିବାକୁ ଗଲି । କିନ୍ତୁ କିଛି ସମୟ ପରେ ହଠାତ୍ ବାହାରର

ମୁଖ ବେଳରେ ମୋର ନିଦ୍ରାଭଙ୍ଗ ହେଲା; ଉଠି ଦେଖିଲି, କେତେକ ଖଡ୍‌ଗହସ୍ତ ପୁରୁଷ ବୃଦ୍ଧ ବ୍ରାହ୍ମଣଙ୍କୁ ବନ୍ଦୀକରି ପ୍ରହାର କରିବାକୁ ଉଦ୍ୟତ ହେଉଛନ୍ତି । ବ୍ରାହ୍ମଣ ମୋତେ ଦେଖି ସେମାନଙ୍କୁ କହିଲେ ଯେ ପ୍ରକୃତରେ ଏହି ଅପରିଚିତ ବ୍ୟକ୍ତି ତାହାଙ୍କୁ ହୀରା ଖଣ୍ଡିକ ଦାନ କରିଛନ୍ତି । ଏ କଥାରେ ମୋଠାରୁ ସମ୍ମତି ସୂଚକ ସଙ୍କେତ ପାଇ ସୈନ୍ୟମାନେ ବ୍ରାହ୍ମଣଙ୍କୁ ତ୍ୟାଗକରି ମୋତେ ବନ୍ଦୀ କଲେ । ମୁଁ ଅନୁମାନ କଲି ହୀରକଟି ବୋଧହୁଏ ମତ୍ତକାଳଙ୍କର ଏବଂ ତାହା ମୁଁ ଅପହରଣ କରିନେଇଛି ଭାବି ଏମାନେ ମୋତେ ବନ୍ଦୀ କରୁଛନ୍ତି । ତେଣୁ ହୀରକ କିପରି ଭାବରେ ମୋହର ହସ୍ତଗତ ହେଲା ତାହା ବର୍ଣ୍ଣନା କରିବାକୁ ଚେଷ୍ଟା କଲି । କିନ୍ତୁ ମୋହର ବାକ୍ୟାଳାପକୁ ପ୍ରଳାପବତ୍ କେହି ଗ୍ରହଣ କଲେ ନାହିଁ । ସେମାନେ ମୋହର ହସ୍ତପଦ ଶୃଙ୍ଖଳାବଦ୍ଧ କରି ମୋତେ ଗୋଟିଏ କୁଠୀର ମଧ୍ୟରେ ଅନ୍ୟ ବନ୍ଦୀମାନଙ୍କ ସହିତ ନିକ୍ଷେପ କଲେ ।

ଏ ଘଟଣାର ବିଶେଷ ବିବରଣୀ ମୁଁ ମୋହର ସହବନ୍ଦୀଙ୍କଠାରୁ ସଂଗ୍ରହ କରିବାକୁ ଲାଗିଲି । ସେମାନେ କହିଲେ ଯେ ସେମାନେ ମାନପାଳଙ୍କ ଅନୁଚର । ମନ୍ତ୍ରୀଙ୍କ ଆଦେଶରେ ମତ୍ତକାଳଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ସୁଡ଼ଙ୍ଗ ପଥ ସାହାଯ୍ୟରେ ରାତ୍ରି କାଳରେ ତାହାଙ୍କ ଆବାସରେ ପ୍ରବେଶ କରିଥିଲେ । ସୁତରାଂ ତନ୍ମଧ୍ୟରୁ କେତେକ ବହୁମୂଲ୍ୟ ଧନରତ୍ନ ସଂଗ୍ରହ କରି ଅରଣ୍ୟ ମଧ୍ୟରେ ପ୍ରବେଶ କଲୁ । ମାତ୍ର ସେମାନେ ଖୁବ୍ କମ୍ ସମୟ ମଧ୍ୟରେ ମତ୍ତକାଳଙ୍କ ସୈନ୍ୟମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଧୃତ-ହେଲେ । ଅପହୃତ ସମସ୍ତ ଧନରତ୍ନ ସେମାନଙ୍କ ନିକଟରୁ ସଂଗୃହୀତ ହେଲା । ମୁଁ ପାଇଥିବା ସର୍ବୋତ୍କୃଷ୍ଟ ହୀରକ ଖଣ୍ଡିକ କେବଳ ସେମାନଙ୍କର ହସ୍ତଗତ ହୋଇ ନଥିଲା ।

ମତ୍ତକାଳ ଜାଣି ପାରିଥିଲେ ଯେ ଏ ଷଡ଼୍‌ଯନ୍ତ୍ର ସହିତ ମାନପାଳ ସମ୍ପୃକ୍ତ । ସୁତରାଂ ମତ୍ତକାଳ ଯେ ନିଶ୍ଚୟ ଏଣିକି ଅଧିକ ସାବଧାନତା ଅବଲମ୍ବନ କରିବେ ଏବଂ ଫଳରେ ମାନପାଳଙ୍କର ରାଜକୁମାରୀଙ୍କୁ ଉଦ୍ଧାର କରିବା ଚେଷ୍ଟା ନିଷ୍ଫଳ ହେବ ଏଥିରେ ମୋର ସନ୍ଦେହ ରହିଲା ନାହିଁ । ଏ ସମସ୍ତ ଘଟନା ଶୁଣି ସାରିବା ପରେ ମୋହର ହୃଦୟ ମତ୍ତକାଳଙ୍କ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଲା । ପିତାର ଇଚ୍ଛା ବିରୁଦ୍ଧରେ କନ୍ୟାକୁ ଅପହରଣ କରିବା ପ୍ରଥାକୁ ମୁଁ ଅନୁମୋଦନ କରି ପାରିଲି ନାହିଁ । ତେଣୁ ମତ୍ତକାଳଙ୍କୁ ପ୍ରତିରୋଧ କରିବା ପାଇଁ ଠିକ୍‌କରି ଏକ କର୍ମପନ୍ଥା ସ୍ଥିରକଲି । ଏ ମଧ୍ୟରେ ସହବନ୍ଦୀମାନଙ୍କ ସହିତ ମୋର ଘନିଷ୍ଠତା ଜନ୍ମି ଯାଇଥିଲା । ସେମାନେ ମଧ୍ୟ ମୋ ସହିତ ସହଯୋଗ କରିବା ପାଇଁ ସମ୍ମତ ହେଲେ ।

ପରରାତ୍ରି ଦ୍ୱିତୀୟ ପ୍ରହରରେ ଆମ୍ଭେମାନେ ପରସ୍ପରର ଶୃଙ୍ଖଳ ଛିନ୍ନ କରିପକାଇଲୁଁ ଏବଂ ସୁପ୍ତ ପ୍ରହରୀ ଗଣଙ୍କୁ ଏପରି ଭାବରେ ବନ୍ଦୀକଲୁ ଯେ, ସେମାନେ କୌଣସି ବିପଦ ସଙ୍କେତ ଦେବାପାଇଁ ମଧ୍ୟ ଅବସର ପାଇଲେ ନାହିଁ । ତାପରେ ଏହି ପ୍ରହରୀ-ମାନଙ୍କର ଶସ୍ତ୍ର ସଂଗ୍ରହ କରି ତତ୍‌ସାହାଯ୍ୟରେ ନଗରରକ୍ଷୀମାନଙ୍କ ସମ୍ମୁଖୀନ ହେଲୁଁ । ଏମାନଙ୍କୁ ପରାସ୍ତକରିବା ମଧ୍ୟ ବିଶେଷ ଶ୍ରମ ସାପେକ୍ଷ ହେଲାନାହିଁ । ଆମ୍ଭେମାନେ ଖୁବ୍ କମ୍ ସମୟ ମଧ୍ୟରେ ଶିବିରରେ ପ୍ରବେଶ କଲୁଁ ।

ମାନପାଳ ନିଜର ଅନୁଚର ମାନଙ୍କଠାରୁ ମୋର ସବିଶେଷ ପରିଚୟ ପାଇ ଓ ମୋର ଉଦ୍ଦେଶ୍ୟ ଅବଗତ ହୋଇ ମୋତେ ବିଶେଷ ସମ୍ମାନିତ କଲେ । ସେ ମୋତେ ସେନାପତି ରୂପେ ବରଣକଲେ

ମୋର ମନ୍ତ୍ରଣା ଅନୁସାରେ ଅଧିକ ସୈନ୍ୟ ପ୍ରେରଣ କରିବା ନିମିତ୍ତ ରାଜଧାନୀକୁ ସମ୍ବାଦ ପଠାଇଲେ । ପ୍ରାତଃକାଳ ପୂର୍ବରୁ ଉପସ୍ଥିତ ସୈନ୍ୟଗଣ ସଜ୍ଜିତ ହୋଇ ରହିବା ପାଇଁ ମୁଁ ଆଦେଶ କଲି ।

ବନ୍ଦୀଗଣ ପଳାୟନ କରି ମାନପାଳଙ୍କ ଶିବିରରେ ଆଶ୍ରୟ ନେଇଥିବା ସମ୍ବାଦ ପାଇ ମତ୍ତକାଳ ସସୈନ୍ୟ ଅମ୍ଭମାନଙ୍କ ଶିବିର ଆକ୍ରମଣ କଲେ । ମୋର ସୈନ୍ୟସଂଖ୍ୟା ମୁଷ୍ଟିମେୟ ହେଲେ ମଧ୍ୟ ସେମାନେ ବାସ୍ତବିକ ଅଦ୍ଭୁତ ସାହସ ଦେଖାଇଥିଲେ । ମୁଁ ଯଥାଶୀଘ୍ର ଅନ୍ୱେଷଣ କରି ମତ୍ତକାଳଙ୍କ ସମ୍ମୁଖୀନ ହେଲି । ବହୁ ସମୟାବଧି ପ୍ରବଳ ଯୁଦ୍ଧହେଲା । ଏ ମଧ୍ୟରେ ରାଜଧାନୀରୁ ପୁଣି କେତେକ ସୈନ୍ୟ ଆସି ଅମ୍ଭମାନଙ୍କ ସହିତ ଯୋଗ ଦେଲେ ।

ଶେଷରେ ମତ୍ତକାଳ ଭୂପତିତ ହେଲେ । ରାଜା ନିହତ ହେବାଦେଖି ତାହାଙ୍କର ସୈନ୍ୟଗଣ ପୃଷ୍ଠଭଙ୍ଗ ଦେଇ ପଳାୟନ କରିବାକୁ ଲାଗିଲେ । ଅମ୍ଭେମାନେ ବିଜୟୀ ହୋଇ ବୀର ଦର୍ପରେ ରାଜଧାନୀ ଅଭିମୁଖରେ ପ୍ରତ୍ୟାବର୍ତ୍ତନ କଲୁଁ ।

ରାଜା ବୀରକେତୁ ଅପହୃତା କନ୍ୟାକୁ ଫେରପାଇ ଆନନ୍ଦରେ ବିହ୍ୱଳ ହୋଇ ପଡ଼ିଲେ । ମୋର ବୀରତ୍ୱର କାହାଣୀ ଶୁଣି ରାଜା ଓ ପାରିଷଦ ବର୍ଗ ମୋତେ ଯେଉଁ ସମ୍ମାନ ପ୍ରଦର୍ଶନ କଲେ ତାହା ବାକ୍ୟାତୀତ ।

ବୀରକେତୁ ଅପୁତ୍ରିକ ଥିଲେ ଏବଂ ବାର୍ଦ୍ଧକ୍ୟାବସ୍ଥା ଯୋଗୁଁ ରାଜ୍ୟ ପରିଚାଳନା ତାଙ୍କ ପକ୍ଷେ ଗୁରୁଭାରରେ ପରିଣତ ହୋଇଥିଲା । ସୁତରାଂ ବାମଲୋଚନାକୁ ବିବାହ କରି ସ୍ୱହସ୍ତରେ ଶାସନ ଭାର ଗ୍ରହଣ କରିବା ପାଇଁ ସେ ମୋତେ ଅନୁରୋଧ କଲେ ।

କି ଉତ୍କଣ୍ଠାର ସହିତ ମୁଁ ଏ ଅନୁରୋଧ ରକ୍ଷା କରିଥିବି ତାହା ଆପଣ ଅନୁମାନ କରି ପାରୁଥିବେ । ଖୁବ୍ ଅଳ୍ପ ସମୟ ମଧ୍ୟରେ ବାମଲୋଚନୀଙ୍କ ସହିତ ମୋର ବିବାହ ତଥା ଯୌବରାଜ୍ୟାଭିଷେକ ଉତ୍ସବ ଅତି ଆଡ଼ମ୍ବର ସହକାରେ ସମାପ୍ତ ହେଲା । କିନ୍ତୁ ଯେତେବେଳେ ଏ ଉତ୍ସବ ସ୍ରୋତ ଶିଥିଳ ହୋଇ ଆସିଲା ସେତେବେଳେ ଆପଣଙ୍କ ଦର୍ଶନ ଆକାଂକ୍ଷା ପୁଣି ମୋ ମନମଧ୍ୟରେ ଜାଗରୂକ ହେଲା । ମୁଁ ମୋର ପ୍ରଧାନ କର୍ତ୍ତବ୍ୟରେ ଅବହେଳା କରିଥିବାରୁ ବିଶେଷ ବିବ୍ରତ ହୋଇ ନିକଟବର୍ତ୍ତୀ ଜଣେ ସିଦ୍ଧପୁରୁଷଙ୍କର ଆଶ୍ରୟ ନେଲି । ସେ ମୋତେ ଆଶ୍ୱାସନା ଦେଇ କହିଲେ ଯେ ଅନତି ବିଳମ୍ବେ ଉଜ୍ଜୟିନୀ ନଗରୀରେ ମୁଁ ଆପଣଙ୍କର ସାକ୍ଷାତ ପାଇବି । ତେଣୁ ଆଜି ମୁଁ ମୋହର ପତ୍ନୀଙ୍କ ସହିତ ଏଠାକୁ ଆଗମନ କଲି । ଦୟାମୟଙ୍କ କୃପାରୁ ଆଜି ମୋହର ସକଳ ପରିଶ୍ରମ ସାର୍ଥକ ହୋଇଅଛି ।”

# (୧୧)

## ପୁଷ୍ପୋଦ୍ଭବଙ୍କ ଭ୍ରମଣ ବୃତ୍ତାନ୍ତ

ସୋମଦତ୍ତଙ୍କ ଭ୍ରମଣ ବୃତ୍ତାନ୍ତ ଶୁଣି ରାଜବାହନ କହିଲେ, "ବନ୍ଧୁବର, ତୁମର ସାହାସିକତା ଓ ବୀରତ୍ୱପୂର୍ଣ୍ଣ କ୍ରିୟା କଳାପ ବାସ୍ତବିକ୍ ଅତୁଳନୀୟ । ସେଥିପାଇଁ ବିଧାତା ବାମଲୋଚନୀରୂପକ ଉପଯୁକ୍ତ ପୁରସ୍କାର ଦ୍ୱାରା ତୁମକୁ ପୁରସ୍କୃତ କରିଅଛନ୍ତି । ବର୍ତ୍ତମାନ ଆସ ନଗର ମଧ୍ୟରେ ଆଶ୍ରୟ ଗ୍ରହଣକରି ବିଶ୍ରାମ କରିବା ।"

ଠିକ୍ ଏହି ସମୟରେ ଦୂରରୁ ଜଣେ ବ୍ୟକ୍ତି କ୍ଷିପ୍ର ପଦରେ ସେମାନଙ୍କ ଆଡ଼କୁ ଆଗମନ କରୁଥିବା ଦେଖାଗଲା । ରାଜବାହନ ବିସ୍ମିତହୋଇ ଦେଖିଲେ, ସେ ତାହଙ୍କର ବନ୍ଧୁ ପୁଷ୍ପୋଦ୍ଭବ । ସେ ଏହାର ସୂଚନା ସୋମଦତ୍ତଙ୍କୁ ଦେବା ସଙ୍ଗେ ସଙ୍ଗେ ଉଭୟେ ଅଗ୍ରସର ହୋଇ ତାହାଙ୍କୁ ଆଲିଙ୍ଗନ କଲେ । ପ୍ରତ୍ୟେକର ହୃଦୟରେ ଆନନ୍ଦର ଲହରୀ ଉଦ୍‌ବେଳିତ ହୋଇ ଉଠିଲା । ବିଚ୍ଛେଦ ପରେ ମିଳନ ମଧୁରତର ହୋଇଥାଏ । ବାମଲୋଚନୀଙ୍କ ପରିଚୟ ପାଇ ପୁଷ୍ପୋଦ୍ଭବ ତାହାଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦର୍ଶନ କଲେ । ତତ୍ପରେ ରାଜବାହନଙ୍କ ଅନୁରୋଧରେ ସେମାନେ ପୁଣି ନାଗେଶ୍ୱର ବୃକ୍ଷମୂଳକୁ ପ୍ରତ୍ୟାବର୍ତ୍ତନ କରି ଆଳାପରେ ଲିପ୍ତ ହେଲେ ।

ପୁଷ୍ପୋଦ୍ଭବଙ୍କ ଭ୍ରମଣ ବୃତ୍ତାନ୍ତ ଶୁଣିବା ପାଇଁ ରାଜକୁମାର ଆଗ୍ରହ ପ୍ରକାଶ କରିବାରୁ ସେ କହିଲେ—"ଆପଣଙ୍କ ଅନୁସନ୍ଧାନରେ ବାହାରି ମୁଁ ବହୁ ଜନପଦ ଅତିକ୍ରମ କରିଗଲି । ଦିନେ ମଧ୍ୟାହ୍ନ କାଳରେ ମୁଁ ଏକ ଗିରିପଥ ଅତିକ୍ରମ କରୁଥାଏ, ଆକାଶ ମଧ୍ୟବର୍ତ୍ତୀ ତପନର ପ୍ରଖର କିରଣକାଳରେ ବାୟୁମଣ୍ଡଳ ଉତ୍ତପ୍ତ ହୋଇ ପଡ଼ିଲା । ମୁଁ ଅତ୍ୟନ୍ତ କ୍ଳାନ୍ତ ବୋଧକରି ଗିରିପାଦରେ ଥିବା ଗୋଟିଏ ବୃକ୍ଷଛାୟାତଳେ ଆଶ୍ରୟ ଗ୍ରହଣ କଲି । ଏତିକି ବେଳେ ଗିରି ଶୃଙ୍ଗରୁ ଗୋଟିଏ ମନୁଷ୍ୟର ଛାୟା ମୋର ସମ୍ମୁଖରେ ପଡ଼ିଲା । ମୁଁ ଫେରି ଦେଖିଲି, ଏକ ବ୍ୟକ୍ତି ସମୁନ୍ନତ ସେହି ଗିରି ଶୃଙ୍ଗରୁ ଲମ୍ଫ ପ୍ରଦାନ କରି ଆତ୍ମହତ୍ୟା କରିବା ପାଇଁ ଚେଷ୍ଟିତ । କିନ୍ତୁ ହଠାତ୍ ତାହାଙ୍କୁ ଏଥିରୁ କ୍ଷାନ୍ତ କରିବାର କୌଣସି ଉପାୟ ପାଇଲି ନାହିଁ । ସେ ଲମ୍ଫ ପ୍ରଦାନ କଲେ । ମାତ୍ର ଭାଗ୍ୟବଶତଃ ତାହାଙ୍କର ପାଦ ଭୂମି ସ୍ପର୍ଶ କରିବା ପୂର୍ବରୁ ମୁଁ ବିଦ୍ୟୁତ୍‌ବେଗରେ ଯାଇ ତାହାଙ୍କୁ ଶୂନ୍ୟେ ଶୂନ୍ୟେ ଧରିନେଲି । ଲୋକଟି ହତଚେତନ ହୋଇ ପଡ଼ିଲେ । ବୃକ୍ଷ ଛାୟାରେ ପତ୍ର ଶଯ୍ୟା କରି ମୁଁ ତାଙ୍କୁ ତହିଁରେ ଶୟନ କରାଇ ଦେଲି ।

କିଛି ସମୟ ପରେ ସେ ସଚେତ ହେଲେ । ତାହାଙ୍କର ସେତେବେଳର ନୈରାଶ୍ୟ ପୂର୍ଣ୍ଣ କରୁଣ ଗୃହାଣି ବାସ୍ତବିକ ବଡ଼ ମର୍ମସ୍ପର୍ଶୀ । ମୁଁ ତାହାଙ୍କୁ ଆଶ୍ୱାସନା ଦେଇ ତାହାଙ୍କର ପରିଚୟ ମାଗିଲି ଓ କି ଉଦ୍ଦେଶ୍ୟରେ ଆତ୍ମହତ୍ୟା କରୁଥିଲେ ଜାଣିବାକୁ ଇଚ୍ଛା ପ୍ରକାଶ କଲି । ମାତ୍ର ତାହାଙ୍କ ଉତ୍ତରରୁ ଯେତେବେଳେ ମୁଁ ବୁଝିପାରିଲି ଯେ ସେ ସ୍ୱୟଂ ମୋର ପିତୃଦେବ, ସେତେବେଳେ ମୋ ହୃଦୟ ମଧ୍ୟରେ ଯୁଗପତ୍ କି ହର୍ଷ ବିସ୍ମୟର ବାତ୍ୟା ବହିଥିଲା ଆପଣ ଅନୁମାନ କରି ପାରୁଥିବେ ।

ରାଣୀ ବସୁମତୀଙ୍କ କଥା ଆପଣଙ୍କର ବୋଧହୁଏ ସ୍ମରଣ ଥିବ । ସେ ଆମ୍ଭମାନଙ୍କୁ ଥରେ କହିଥିଲେ ଯେ, ମୋର ପିତାଙ୍କର ନୌକା ଜଳମଗ୍ନ ହେବାରୁ ଜଣେ ପରିଚାରିକା ମୋତେ ଉଦ୍ଧାର କରି ଆଣିଥିଲେ ଏବଂ ପରେ ଦୁର୍ଭାଗ୍ୟ ବଶତଃ ମୁଁ ବାନରମାନଙ୍କର ହସ୍ତରେ ପଡ଼ିଲି । ସେଠାରୁ ବାମଦେବ ଋଷିଙ୍କର ଜଣେ ଶିଷ୍ୟ ମୋହର ପରିଚୟ ପାଇ ମୋତେ ରକ୍ଷା କରିଥିଲେ । କିନ୍ତୁ ମୋହର ପିତା ରତ୍ନୋଦ୍ଭବ ପ୍ରକୃତରେ ଜଳମଗ୍ନ ହୋଇଥିଲେ ମଧ୍ୟ କୌଣସି ପ୍ରକାରେ ମୃତ୍ୟୁମୁଖରୁ ରକ୍ଷା ପାଇଥିଲେ । ପତ୍ନୀ, ପୁତ୍ର ଓ ଅଗାଧ ସମ୍ପତ୍ତି ଆକସ୍ମିକ ଭାବରେ ହରାଇ ଜୀବନଧାରଣ କରିବା ମୃତ୍ୟୁ ଅପେକ୍ଷା କଷ୍ଟଦାୟକ । ଏ ଚିରସ୍ଥାୟୀ ଯନ୍ତ୍ରଣାରୁ ରକ୍ଷା ପାଇବା ପାଇଁ ସେ ଏହା ପୂର୍ବରୁ ଥରେ ଆତ୍ମହତ୍ୟା କରିବାକୁ ଚେଷ୍ଟିତ ହୋଇଥିଲେ । ମାତ୍ର ଜଣେ ଜ୍ୟୋତିଷୀ ତାହାଙ୍କୁ ଏ ଗର୍ହିତ କାର୍ଯ୍ୟରୁ ବିରତ କରାଇ ଆଶ୍ୱାସନା ଦେଇଥିଲେ ଯେ ଷୋଳ ବର୍ଷ ପରେ ସେ ତାହାଙ୍କର ପୁତ୍ର ଓ ପତ୍ନୀଙ୍କୁ ଫେରି ପାଇବେ । ଆଜ ସେହି ଷୋଳ ବର୍ଷ ପୂର୍ଣ୍ଣ ହେଲା; ଅଥଚ ସେ କାହାରି କୌଣସି ସମ୍ବାଦ ପାଇଲେ ନାହିଁ ।

ପିତା ନିଜର ଏ କରୁଣ କାହାଣୀ ବର୍ଣ୍ଣନା କଲାବେଳେ ଅନତି ଦୂରରେ ଏକ ରମଣୀ କଣ୍ଠରୁ ଶୁଣାଗଲା, "ମା, ଦୀର୍ଘ ଷୋଳ ବର୍ଷ ମଧ୍ୟରେ ତୁମର ସମସ୍ତ ଧୈର୍ଯ୍ୟ ଚୂର୍ଣ୍ଣିଭୂତ ହୋଇଛି ସତ୍ୟ; କିନ୍ତୁ ସିଦ୍ଧପୁରୁଷଙ୍କ ବାକ୍ୟ ସଫଳହେବା ପାଇଁ ବର୍ତ୍ତମାନ ସୁଦ୍ଧା ସମୟ ଅଛି । ହତାଶ ହୁଅନାହିଁ; ଅପେକ୍ଷାକର ।"

ଏକଥା ଶୁଣି ପିତାଙ୍କୁ ସେଠାରେ ଅପେକ୍ଷା କରିବା ନିମିତ୍ତ କହି ମୁଁ ତୀବ୍ର ବେଗରେ ସେହି ଦିଗରେ ଧାବମାନ ହେଲି । ଦୂରରେ ଯାଇ ଦେଖିଲି ସମ୍ମୁଖରେ ଭୀଷଣ ଚିତାକୁଣ୍ଡ । ଜଣେ ରମଣୀ

ଜଳଧରେ ଦେହତ୍ୟାଗ କରିବା ଲାଗି ପ୍ରସ୍ତୁତ । ଅନ୍ୟ କେତେଜଣ ସଜଳନୟନା ପ୍ରୌଢ଼ା ଚତୁର୍ଦ୍ଦିଗରେ ଦଣ୍ଡାୟମାନ । ମୁଁ ବିଦ୍ୟୁତ୍ ବେଗରେ ରମଣୀଙ୍କୁ ଚିତା ସମ୍ମୁଖରୁ ଟେକିଆଣି ପିତାଙ୍କ ସମ୍ମୁଖରେ ଉପସ୍ଥିତ ହେଲି । ଏ ଘଟଣାରେ ସମସ୍ତେ ବିସ୍ମିତ ହୋଇ ପଡ଼ିଲେ । ସମବେତ ରମଣୀଗଣ ମୋହର ଅନୁସରଣ କଲେ ।

ରମଣୀ ନିଜେ ବାକ୍‌ଶକ୍ତି ବିହୀନା । ପ୍ରୌଢ଼ାମାନଙ୍କ ମଧ୍ୟରୁ ଯାହାଙ୍କର କଣ୍ଠସ୍ୱର ମୁଁ ଦୂରରୁ ଶୁଣିଥିଲି ସେ ରମଣୀଙ୍କର ଇତିବୃତ୍ତ ଦେଇ କହିଲେ ଯେ ତାହାଙ୍କ ନାମ ସୁବୃତ୍ତା । ସେ କାଳଗୁପ୍ତ ନାମକ ବଣିକଙ୍କର କନ୍ୟା ଏବଂ ରତ୍ନୋଦ୍ଭବ ନାମକ ସାଧବଙ୍କର ପତ୍ନୀ ।

ଅଜ ବିଶେଷ ପରିଚୟ ନେବା ଅବଶ୍ୟକ ହେଲାନାହିଁ । ଏକାବେଳକେ ମୁଁ ମୋହର ପିତାମାତାଙ୍କୁ ପାଇଅଛି । ମୁଁ ନିଜର ପରିଚୟ ଦେବା ସଙ୍ଗେ ସଙ୍ଗେ ସେମାନେ ମୋତେ କୋଳାଗ୍ରତ କରି ଆନନ୍ଦାଶ୍ରୁ ବିସର୍ଜନ କରିବାକୁ ଲାଗିଲେ ।

ପିତାମାତା ପ୍ରକୃତିସ୍ଥ ହେବାପରେ ମୁଁ ମୋହର ଭ୍ରମଣର ଉଦ୍ଦେଶ୍ୟ, ରାଜହଂସଙ୍କର ଓ ରାଜ୍ୟର ସମସ୍ତ କଥା ସେମାନଙ୍କୁ ଜଣାଇଲି । ଉଭୟଙ୍କର ସମ୍ମତିକ୍ରମେ ଜଣେ ମୁନିଙ୍କ ଅଶ୍ରମରେ ସେମାନେ ବାସ କରିବାର ସମସ୍ତ ବ୍ୟବସ୍ଥା କରି, ମୁଁ ମୋହର କର୍ତ୍ତବ୍ୟ ପଥରେ ପୁଣି ଅଗ୍ରସର ହେଲି ।

ମୁଁ କେତେକ ବନ ଭ୍ରମଣ କରିବା ପରେ ଘନ ଅରଣ୍ୟ ମଧ୍ୟରେ ଗୋଟିଏ ପୁରାତନ ମନ୍ଦିର ନିକଟରେ ଅସି ପହଞ୍ଚିଲି । ତାହାର ଉପରଭାଗ ଲତାଜାଳରେ ଅଚ୍ଛନ୍ନ ଥିଲା । ମୁଁ ସେଠାରେ କିଛି ଷଣ ବିଶ୍ରାମ ନେବାପାଇଁ ଇଚ୍ଛା କଲି । କିନ୍ତୁ ବାଟଳ ଗୁଳ୍ମ-ଲତା ମଧ୍ୟରେ ସରୀସୃପ ଇତ୍ୟାଦି ଥାଇ ପାରନ୍ତି ଏହି ଅଶଂକାରେ

ମୋହର ଯଷ୍ଟିକା ସାହାଯ୍ୟରେ ଗୁଳ୍ମଗୁଡ଼ିକୁ ପ୍ରହାର କଲି । ଏକ ସ୍ଥାନରେ ମୋହର ଯଷ୍ଟିଟି କୌଣସି ଧାତବ ଦ୍ରବ୍ୟରେ ବାଜିବା ଭଳି ଶବ୍ଦ ହେଲା । ମୁଁ ଲତା ସମୂହ ପରିଷ୍କାର କରି ଦେଖିଲି ସେଠାରେ ଗୋଟିଏ ଲୌହ ପେଟିକା ଅର୍ଦ୍ଧ ପ୍ରୋଥିତ ଅବସ୍ଥାରେ ରହିଅଛି । ତୀକ୍ଷ୍ଣ ପ୍ରସ୍ତର ଖଣ୍ଡ ସାହାଯ୍ୟରେ ଲୌହ ପେଟିକାକୁ ଫିଟାଇ ଦେଖିଲି ତାହା ସ୍ୱର୍ଣ୍ଣମୁଦ୍ରା ଓ ମଣିମାଣିକ୍ୟ ପୂର୍ଣ୍ଣ । ଏତେ ସମ୍ପତ୍ତି ମୁଁ କପରି ବ୍ୟବହାର କରିବି ସେହି ଚିନ୍ତା ମୋତେ ପ୍ରଥମେ ବିମୂଢ଼ କରି ପକାଇଲା । କିନ୍ତୁ ପରେ ପ୍ରକୃତିସ୍ଥ ହୋଇ ସେଥିରୁ କେତେକ ମୁଦ୍ରା ଗ୍ରହଣ କରି ନିକଟବର୍ତ୍ତୀ ନଗରୀରୁ ଦୁଇଟି ଅଶ୍ୱ ଓ କେତେ ଗୋଟି ଥଳୀ କ୍ରୟ କରି ଆଣିଲି ଏବଂ ସମସ୍ତ ଧନ-ରତ୍ନ ସହ ଉଜ୍ଜୟିନୀ ଅଭିମୁଖରେ ଯାତ୍ରା କଲି ।

ଉଜ୍ଜୟିନୀରେ ପ୍ରବେଶ କରି ମୋହର ପିତାଙ୍କର ପୁରାତନ ବନ୍ଧୁ ବୃଦ୍ଧ ଚନ୍ଦ୍ରପାଳଙ୍କ ପୁଅ ବନ୍ଧୁପାଳଙ୍କ ସହିତ ମୋହର ପରିଚୟ ହେଲା । ତାହାଙ୍କ ସାହାଯ୍ୟରେ ଏଠାରେ ବାଣିଜ୍ୟ କରିବା ପାଇଁ ମାଳବ ରାଜାଙ୍କର ଅନୁମତି ପାଇଲି । କିଛି ଦିନ ପରେ ମୁଁ ଏକ ବିଶାଳ ପ୍ରାସାଦ କ୍ରୟ କଲି ଏବଂ ମୁନି ଆଶ୍ରମରୁ ପିତାମାତାଙ୍କୁ ଆଣି ଏଠାରେ ବାସ କଲି ।

କିନ୍ତୁ ବାଣିଜ୍ୟକୁ ମୋହର ଅବସରବିନୋଦନ ଛଡ଼ା ନିଜ ବୃତ୍ତିରେ ପରିଣତ କରିବା ମୋ ପକ୍ଷରେ ସମ୍ଭବ ହେଲାନାହିଁ । ଆପଣଙ୍କ ଅନୁସନ୍ଧାନ ପାଇ ନ ଥିବାରୁ ମୋହର ମାନସିକ ପରିସ୍ଥିତି କୌଣସି ପ୍ରକାରେ ବ୍ୟବସାୟର ଅନୁକୂଳ ହୋଇ ପାରିଲା ନାହିଁ । ମୁଁ ଅନେକ ଦିନ ଯାଏଁ ବିଭିନ୍ନ ସ୍ଥାନରେ ଆପଣଙ୍କ ଉଦ୍ଦେଶ୍ୟରେ ଭ୍ରମଣ କରିବାକୁ ଲାଗିଲି । ମୋହର ଏ ଅବସ୍ଥା ଦେଖି ଦିନେ

ବନ୍ଧୁପାଳ ମୋତେ କହିଲେ, "ବନ୍ଧୁ, ଏ ଅନନ୍ତ ଭୂମଣ୍ଡଳ ଅନ୍ୱେଷଣ କରି ତୁମେ ତୁମର ସହଚରଙ୍କର ସାକ୍ଷାତ ପାଇବା ସହଜ ନୁହେଁ; ସୁତରାଂ ତୁମେ ନିଶ୍ଚିନ୍ତ ମନରେ ବାସକର । ସହଚରଙ୍କର ସାକ୍ଷାତ୍‌କାର ସୂଚକ ମାଙ୍ଗଳିକ ପକ୍ଷୀ ଦୃଷ୍ଟ ହେଲେ ସେହି ସୂଚନାନୁ ତାହାଙ୍କ ସାକ୍ଷାତ ପାଇବାର ସମୟ ମୁଁ ତୁମ୍ଭଙ୍କୁ ଜଣାଇ ଦେବି ।

ବନ୍ଧୁପାଳଙ୍କର ଆଶ୍ୱାସନା ପୂର୍ଣ୍ଣ ବାକ୍ୟରେ ଆସ୍ଥା ସ୍ଥାପନ କରି ମୁଁ ତେଣିକି ବହୁ ସମୟ ବନ୍ଧୁମାନଙ୍କ ସହ ଅତିବାହିତ କରିବାକୁ ଲାଗିଲି । ଇତି ମଧ୍ୟରେ ଦିନେ ମୋହର ବନ୍ଧୁ ଜଣେ ଅସାମାନ୍ୟ ରୂପବତୀ ନବଯୁବତୀଙ୍କ ସହିତ ବାକ୍ୟାଳାପ କରୁଥିବାର ମୁଁ ଦେଖି ପାରିଲି । ଯୁବତୀ ମୋତେ ଦେଖି ଲଜ୍ଜାବନତ ବଦନରେ ସେଠାରୁ ଅନ୍ତର ହୋଇଗଲେ । ବନ୍ଧୁଙ୍କଠାରୁ ଅବଗତ ହେଲି ଯେ ସେ ତାହାଙ୍କର ଅବିବାହିତା କନିଷ୍ଠା ଭଗିନୀ ବାଳଚନ୍ଦ୍ରିକା ।

ବାଳଚନ୍ଦ୍ରିକାଙ୍କୁ ଦର୍ଶନ କରିବା ମାତ୍ରେ ତାହାଙ୍କର ଅପରୂପ ଲାବଣ୍ୟରେ ମୁଁ ବିମୋହିତ ହୋଇ ପଡ଼ିଥିଲି । ମୋତେ ଦେଖି ବାଳଚନ୍ଦ୍ରିକା ମଧ୍ୟ ଚକିତା ହରିଣୀ ସଦୃଶ ଚଞ୍ଚଳ ନୟନରେ ମୁହୁର୍ମୁହୁ କଟାକ୍ଷ ପାତ କରି ମନ୍ଦବାୟୁ ସଞ୍ଚାଳିତ ଲତାବତ୍ ପ୍ରକମ୍ପିତ ହୋଇ ଉଠିଥିଲେ ଏବଂ ନାନାବିଧ ସୁନିପୁଣ ଗୁପ୍ତ ଅଙ୍ଗଭଙ୍ଗୀ ପ୍ରକାଶ କରି ମୋ ପ୍ରତି ଅନୁରାଗର ସ୍ପଷ୍ଟ ସୂଚନା ଦେଇ-ଥିଲେ । ବନ୍ଧୁଙ୍କଠାରୁ ଆଜମଧ୍ୟ ଶୁଣି ପାରିଲି ଯେ, ମୋହର ଭ୍ରମଣ ବୃତ୍ତାନ୍ତ, ପିତାମାତାଙ୍କ ସହିତ ଆକସ୍ମିକ ମିଳନ ତଥା ଅପର୍ଯ୍ୟାପ୍ତ ଧନରତ୍ନ ଲାଭ ଇତ୍ୟାଦି କଥା ବାରମ୍ବାର ଶୁଣିବା ପାଇଁ ସେ ସର୍ବଦା ଆଗ୍ରହ ପ୍ରକାଶ କରନ୍ତି ।

ଇତି ମଧ୍ୟରେ ଦିନେ ବନ୍ଧୁପାଳ ପକ୍ଷୀରବ ଶୁଣିବା ନିମିତ୍ତ-ନଗର ଉପକଣ୍ଠବର୍ତ୍ତୀ ଉଦ୍ୟାନରେ ପ୍ରବେଶ କଲେ । ମୁଁ ମଧ୍ୟ ତାହାଙ୍କ ସହିତ ଗମନ କଲି ଏବଂ ସେ ପକ୍ଷୀରବ ଶ୍ରବଣ କଲାବେଳେ ଉଦ୍ୟାନର ପ୍ରାନ୍ତଭାଗରେ ପଦଚାରଣ କରିବାକୁ ଲାଗିଲି । ସେଠାରେ ଗୋଟିଏ ସ୍ୱଚ୍ଛ ସରୋବର ନିକଟରେ ହଠାତ୍ ବିଷର୍ଣ୍ଣ-ବଦନା ବାଳଚନ୍ଦ୍ରିକାଙ୍କୁ ଦେଖି ମୋର ବିସ୍ମୟର ସୀମା ରହିଲା ନାହିଁ । ସହସା ସାକ୍ଷାତ ପାଇ ସେ ମଧ୍ୟ ବ୍ୟସ୍ତତାର ସହିତ ମୋ ପ୍ରତି ପ୍ରେମ, ଲଜ୍ଜା ଓ କୌତୁକ ପୂର୍ଣ୍ଣ ଲୀଳାୟିତ ଦୃଷ୍ଟିପାତ କରିବାକୁ ଲାଗିଲେ । କିନ୍ତୁ ତାଙ୍କର ବଦନ ମଣ୍ଡଳରେ ପ୍ରଥମେ ଯେଉଁ ବିଷର୍ଣ୍ଣତାର ଛାୟା ପାତ ହୋଇଥିଲା, ତାହା ମୋହର ଅନ୍ତରରେ ଶଲ୍ୟବତ୍ ବିଦ୍ଧ ହୋଇ ରହିଲା । ମୁଁ ତାହାଙ୍କ ନିକଟବର୍ତ୍ତୀ ହୋଇ ତାହାର କାରଣ ଜିଜ୍ଞାସା କଲି ।

ନିର୍ଜନତା ଯୋଗୁଁ ଲଜ୍ଜା ଓ ଭୟ ପରିତ୍ୟାଗ କରି ବାଳଚନ୍ଦ୍ରିକା କହିଲେ "ବନ୍ଧୁ, ମାଳବାଧିପତି ମାନସାର ବୃଦ୍ଧ ହୋଇ ପଡ଼ିବାରୁ ପୁତ୍ର ଦର୍ପସାରଙ୍କୁ ଉଜ୍ଜୟିନୀରେ ଅଭିଷିକ୍ତ କରି ଅଛନ୍ତି । କିନ୍ତୁ ଦର୍ପସାର ସସାଗରା ଧରାର ଅଧୀଶ୍ୱର ହେବା ଅଭିଳାଷ ପୋଷଣ କରି ତପସ୍ୟା କରିବା ନିମିତ୍ତ ଗମନ କରିବାରୁ ଦାକ୍ଷିଣ ଅତ୍ୟାଗ୍ରହୀ ଚଣ୍ଡବର୍ମା ଓ ଦାରୁବର୍ମାଙ୍କୁ ରାଜ୍ୟ ଶାସନାଧିକାର ପ୍ରଦାନ କରିଅଛନ୍ତି । ଚଣ୍ଡବର୍ମାହିଁ ବର୍ତ୍ତମାନ ରାଜ୍ୟର ସର୍ବେସର୍ବା । ମାତୁଳ ମାନସାର ଏବଂ ଜ୍ୟେଷ୍ଠଭ୍ରାତା ଚଣ୍ଡବର୍ମାଙ୍କର ସକଳ ନିର୍ଦ୍ଦେଶ ଅଗ୍ରାହ୍ୟ କରି ଦାରୁବର୍ମା ପରଦାର ସଂସର୍ଗ, ପର ଦ୍ରବ୍ୟାପହରଣ ପ୍ରଭୃତି ଦୁଷ୍କର୍ମରେ ସର୍ବଦା ଲିପ୍ତ । ଏକଦା ସେ କୌଣସି ପ୍ରକାରେ ମୋହର ସାକ୍ଷାତ ପାଇ ମୋ ରୂପରେ ବିମୋହିତ ହୋଇ ଅଛନ୍ତି । ମୁଁ ଏଥିରେ ଅସ୍ୱୀକୃତା ହେବାରୁ

ବଳପ୍ରୟୋଗପୂର୍ବକ ମୋତେ ଅପହରଣ କରିବା ପାଇଁ ମଧ୍ୟ ସେ ଚେଷ୍ଟିତ । ଯୌବନ, ଧନ, ପ୍ରଭୁତ୍ୱ ଏବଂ ଅବିବେକିତା ବର୍ତ୍ତମାନ ତାହାଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ । ସୁତରାଂ ଏହି ଦୁଶ୍ଚିନ୍ତା ହିଁ ମୋତେ ଦଗ୍ଧ କରୁଅଛି । ମୁଁ ମନେ ମନେ ମୋହର ହୃଦୟସର୍ବସ୍ୱ ଆପଣଙ୍କ ପଦତଳେ ସମର୍ପଣ କରିଅଛି ।

ବାଳଚନ୍ଦ୍ରିକାଙ୍କର ମୋ ପ୍ରତି ଅନନ୍ୟ ଅନୁରାଗ ତଥା ମୋହର ଅଭିଳାଷ ସିଦ୍ଧି ପଥରେ ପ୍ରବଳ ବାଧା ଉପସ୍ଥିତ ଦେଖି ମୁଁ ଯୁଗପତ୍ ହର୍ଷ ଓ ବିଷାଦରେ ମଗ୍ନ ହୋଇ ପଡ଼ିଲି । କିନ୍ତୁ ତାହାପରେ କିଛି ସମୟ ଚିନ୍ତାକରି ତାହାଙ୍କୁ ଆଶ୍ୱାସନା ଦେଇ କହିଲି, "ସୁବଦତି, ଚିନ୍ତାର କୁଆଣାହିଁ । ମୁଁ ପ୍ରତିଜ୍ଞା କରି କହୁଛି, ଯେ କୌଣସି ଉପାୟରେ ମୁଁ ତୁମକୁ ଦୁର୍ବୃତ୍ତ ଦାରୁବର୍ମାର କବଳରୁ ରକ୍ଷା କରିବି ।"

ମେଘବିମୁକ୍ତ ଚନ୍ଦ୍ରମଣ୍ଡଳ ପରି ବାଳଚନ୍ଦ୍ରିକାଙ୍କ ମୁଖ ଉତ୍ଫୁଲ୍ଲିତ ହୋଇ ଉଠିଲା । ସେ କହିଲେ "ଜ୍ୟେଷ୍ଠ ଭ୍ରାତାଙ୍କର ବନ୍ଧୁଭାବରେ ଆପଣ ମୋ ପ୍ରତି ସଦୟ ହେବେ ମୁଁ ଏକଥା ଜାଣେ । ତେଣୁ ଗୋପନ ଭାବରେ ସମସ୍ତ ବୃତ୍ତାନ୍ତ ଆପଣଙ୍କୁ ଜଣାଇବା ପାଇଁ ଆଜି ଏଠାକୁ ଆପଣଙ୍କର ଅନୁସରଣ କରି ଆସି ଅଛି । ଭ୍ରାତା ଓ ପିତା ମୋର ଏ ଅଭିଯୋଗରେ ଆଦୌ ଆସ୍ଥା ସ୍ଥାପନ କରନ୍ତି ନାହିଁ । ସେମାନଙ୍କର ଦୃଢ଼ ଧାରଣା ଦାରୁବର୍ମା ଏପରି ଦୁଃସାହସିକ କାର୍ଯ୍ୟରେ କଦାପି ହସ୍ତକ୍ଷେପ କରିବ ନାହିଁ ।"

ମୁଁ ଉତ୍ତର କଲି, "ସୁନ୍ଦରି, ମୋତେ ବିଶ୍ୱାସ କର । ମୁଁ ଏକ ଉପାୟ ଚିନ୍ତା କରିଛି । ତଦନୁଯାୟୀ କାର୍ଯ୍ୟକଲେ ଆମ୍ଭେମାନେ ଅବଶ୍ୟ କୃତକାର୍ଯ୍ୟ ହେବା । ଆଜିଠାରୁ ତୁମ୍ଭକୁ କୌଣସି ପକ୍ଷ

ଅଗସ୍ତ୍ୟ କାଳପର ଛଳନା କର ଏବଂ ପୁରବାସୀମାନଙ୍କୁ କହ ଯେ, ଯଦି କେହି ପୁରୁଷ ତୁମ ସହିତ ପ୍ରେମ ସମ୍ପର୍କ ସ୍ଥାପନ କରିବା ପାଇଁ ଲାଳାୟିତ ହୁଏ, ତେବେ ଯକ୍ଷ ନିଶ୍ଚୟ ତାହାକୁ ବଧ କରିବ । ଏକଥା ଶୁଣି ଦାରୁବର୍ମା ଯଦି ତାହାର ପାପ ଚେଷ୍ଟାରୁ କ୍ଷାନ୍ତ ହୁଏ ତେବେ ଉତ୍ତମ; ନଚେତ୍ ମୋତେ ଯକ୍ଷ ନାମରେ ଅଭିନୟ କରିବାକୁ ହେବ । ତୁମେ ଜାଣିଥିବ ଏକ ସପ୍ତାହ ପରେ ରାଜପ୍ରାସାଦରେ ଗୋଟାଏ ମହୋତ୍ସବ ହେବ । ଏଥିରେ ଯୋଗ ଦେବା ପାଇଁ ନଗରର ସମ୍ଭ୍ରାନ୍ତ ଶ୍ରେଣୀ ଓ କନ୍ୟାଗଣ ଆମନ୍ତ୍ରିତ ହେଉଛନ୍ତି । ରାଣୀ ଉଦ୍ୟାନର ଏକ ଅଂଶରେ ଏଥିପାଇଁ ଏକ ସୁସଜ୍ଜିତ ମଣ୍ଡପ ନିର୍ମାଣ କରାଉଅଛନ୍ତି । ସେ ଦିନ ରାତିରେ ସେଠାରେ ପାନାହାର ଓ ଆମୋଦର ପ୍ରମୋଦର ବ୍ୟବସ୍ଥା ହେଉଅଛି । ତୁମେ ଦାରୁବର୍ମାକୁ ସୂଚନା ଦିଅ ଯେ ଏହି ରାତିରେ ଉଦ୍ୟାନର କୌଣସି ଜନ ବିହୀନ ପଥରୁ ତୁମକୁ ହସ୍ତଗତ କରିବା ତାହାଙ୍କ ପକ୍ଷରେ ସହଜ ସାଧ୍ୟ ହେବ । ମୁଁ ସେତେବେଳେ ତୁମର ପରିଚ୍ଛଦକାର ପରିଧେୟ ଧାରଣ କରି ନିକଟରେ ଥିବି । ତା ପରେ ସେ ତାହାର ଉପଯୁକ୍ତ ପୁରସ୍କାର ପାଇବ ।"

ବାଳଚନ୍ଦ୍ରିକା ଆଶ୍ୱସ୍ତା ହୋଇ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ମୁଁ ବନ୍ଧୁପାଳଙ୍କ ନିକଟକୁ ଆସି ଦେଖିଲି ସେ ପ୍ରଫୁଲ୍ଲ ବଦନରେ ମୋ ଅଡ଼କୁ ଆସୁଅଛନ୍ତି । ସେ କହିଲେ "ପକ୍ଷୀମାନଙ୍କ କଥୋପକଥନରୁ ମୁଁ ବୁଝିପାରିଲି, ଏକମାସ ମଧ୍ୟରେ ଆପଣଙ୍କ ବନ୍ଧୁ ଏ ନଗରକୁ ଆଗମନ କରିବେ ।" ଏକଥା ଶୁଣି ମୋହର ଆନନ୍ଦର ସୀମା ରହିଲା ନାହିଁ । ତା ପରେ ଉଭୟେ ସ୍ୱଗୃହାଭିମୁଖରେ ଫେରିଲୁ ।

ବାଳଚନ୍ଦ୍ରିକା ଗୃହରେ ପ୍ରବେଶ କରି ଯକ୍ଷ ଦ୍ୱାରା ଆକ୍ରାନ୍ତ ହେଲାପରି ଛଳନା କରି ନାନା ପ୍ରକାର ପ୍ରଳାପ କରିବାକୁ ଲାଗିଲେ ଏବଂ ତା ମଧ୍ୟରେ ମୋହର ଉପଦେଶାନୁଯାୟୀ ଯକ୍ଷକଥା ପ୍ରକାଶ କଲେ । ଏ ଘଟଣାରେ ବନ୍ଧୁପାଳ ବିଶେଷ ବିବ୍ରତ ହୋଇ ମାନ୍ତ୍ରିକମାନଙ୍କର ଅନୁସନ୍ଧାନ କରିବାକୁ ଲାଗିଲେ । କିନ୍ତୁ ଦୁଇ ତିନି ଦିନ ଅନ୍ତେ ବାଳଚନ୍ଦ୍ରିକାଙ୍କ ଅବସ୍ଥା ସ୍ୱତଃ ପରିବର୍ତ୍ତିତ ହୁଅନ୍ତେ ତାହାଙ୍କ ପରିବାରରେ ଶାନ୍ତି ବିରାଜିତ ହେଲା ।

ଏ ମଧ୍ୟରେ କୌଶଳ କ୍ରମେ ବାଳଚନ୍ଦ୍ରିକାଙ୍କ "ଉଦ୍ୟାନରୁ ଅପହରଣ କରିବା ପ୍ରସ୍ତାବ" ଦାରୁବର୍ମାଙ୍କ ସୁଗ୍ରୀ ଦିଆଗଲା ।

ନିର୍ଦ୍ଦିଷ୍ଟ ଦିବସରେ ବାଳଚନ୍ଦ୍ରିକା ଉତ୍ସବରେ ଯୋଗଦାନ କଲେ । ମୁଁ ପରିଚାରିକା ବେଶରେ ମଣି, ନୂପୁର, ମେଖଳା, କଙ୍କଣ ବଳା ପ୍ରଭୃତି ଅଳଙ୍କାର ବିଭୂଷିତ ହୋଇ ତାହାଙ୍କ ସହିତ ଉଦ୍ୟାନରେ ପ୍ରବେଶ କଲି । ରାଜି ଆଗମନ ସଙ୍ଗେ ସଙ୍ଗେ ବହୁବିଧ ଆମୋଦ ପ୍ରମୋଦର ସ୍ରୋତରେ ଆଗନ୍ତୁକ ନରନାରୀ ବୃନ୍ଦ ଉନ୍ମତ୍ତ ହୋଇ ପଡ଼ିଲେ । କିନ୍ତୁ ମୁଁ ଏବଂ ବାଳଚନ୍ଦ୍ରିକା ଉଦ୍ୟାନର ଏକ ଅନ୍ଧକାରାଚ୍ଛନ୍ନ ଜନବିରଳ ସ୍ଥାନରେ ଯାଇ ଉପସ୍ଥିତ ହେଲୁଁ । ବିବେକଶୂନ୍ୟ ଦାରୁବର୍ମା ଆମର ଗତିବିଧି ଲକ୍ଷ କରୁଥାଏ । ସେ ମଙ୍ଗେ ସଙ୍ଗେ ସେଠାରେ ପହଞ୍ଚି କାମମଦରେ ଉନ୍ମତ୍ତ ହୋଇ ବାଳଚନ୍ଦ୍ରିକାଙ୍କ ଆଲିଙ୍ଗନ କରିବା ପାଇଁ ହସ୍ତ ପ୍ରସାରଣ କଲା । ମୁଁ ନିର୍ଦ୍ଦୟ ଚିତ୍ତରେ ଦାରୁବର୍ମାକୁ ଆକ୍ରମଣ କଲି ଏବଂ ମୁଷ୍ଟି, ଜାନୁ ଓ ପଦାଘାତରେ ତାହାକୁ ନିହତ କଲି ।

ତାହାପରେ ଯେଉଁ ସ୍ଥାନଭ୍ରଷ୍ଟ ଅଳଙ୍କାର ଗୁଡ଼ିକ ତତ୍କ୍ଷଣାତ୍ ମୁଁ ଯଥାସ୍ଥାନରେ ସନ୍ନିବେଶିତ କରି ପକାଇଲି ଏବଂ ସଙ୍ଗେ ସଙ୍ଗେ

ଉପସ୍ଥିତ ତରୁଣୀ ପରି ଆମେ ଦୁହେଁ ଚକ୍ରାର ସହ ଜନଗହଳ ଅଞ୍ଚଳକୁ ଧାବମାନ ହେଲୁଁ । ଆମ୍ଭମାନଙ୍କର ଏ ଅବସ୍ଥା ଦେଖି ହଠାତ୍ ଉତ୍ସବର ସ୍ରୋତରେ ଭଟ୍ଟା ପଡ଼ିଗଲା । ସମବେତ ଜନମଣ୍ଡଳୀ ଆମ୍ଭମାନଙ୍କର ଚତୁର୍ଦ୍ଦିଗରେ ପରିବେଷ୍ଟିତ ହୋଇ ପଡ଼ିଲେ । ବାଳଚନ୍ଦ୍ରିକା ପ୍ରକମ୍ପିତ ଅଙ୍ଗପ୍ରତ୍ୟଙ୍ଗ ଓ ଶ୍ୱାସାବରୁଦ୍ଧ କଣ୍ଠରେ କହିଲେ ଯେ ଦାରୁବର୍ମା ତାହାଙ୍କ ଉପରେ ଅତ୍ୟାଗ୍ରହ ଅତ୍ରମ କରିବାରୁ ଯକ୍ଷ ତାହାଙ୍କୁ ହତ୍ୟା କରିଅଛି । ମୁଁ ମଧ୍ୟ ଅତିରିକ୍ତ ଉପ-ବିହ୍ୱଳତାର ଛଳନା କରୁଥାଏ । ଆମ୍ଭମାନଙ୍କର ଅବସ୍ଥା ଓ ହାବଭାବରୁ ଘଟଣାଟି ନିରାଟ ସତ୍ୟ ଆକାରରେ ସର୍ବ ସମକ୍ଷରେ ଗୃହୀତ ହେଲା ।

ଅମ୍ଭେମାନେ ଗୃହ ଅଭିମୁଖରେ ପ୍ରତ୍ୟାବୃତ୍ତ ହେଲୁଁ । ମୁଁ ମୋହର ଆବାସକୁ ପ୍ରଚ୍ଛନ୍ନ ଭାବରେ ପଳାୟନ କଲି । ବେଶ ପରିବର୍ତ୍ତନ ପରେ ଗୃହର ବହିର୍ଭାଗକୁ ଆସି ନିତାନ୍ତ ଅଜ୍ଞବତ୍ ଏ ଘଟଣା ସମ୍ବନ୍ଧେ କେତେ ବ୍ୟକ୍ତିଙ୍କୁ ଜିଜ୍ଞାସା କରୁ କରୁ ବାଳଚନ୍ଦ୍ରିକାଙ୍କ କୁଶଳ ସମ୍ବାଦ ସଂଗ୍ରହ କରିବା ପାଇଁ ବନ୍ଧୁପାଳଙ୍କ ପ୍ରାସାଦରେ ଉପସ୍ଥିତ ହେଲି ।

ଉଜ୍ଜୟିନୀ ନଗରୀ ବହୁ ଦିବସାବଧି ଏ ଚମତ୍କାର ଘଟନାରେ ଆତଙ୍କଗ୍ରସ୍ତ ହୋଇ ପଡ଼ିଲା । ତେଣୁ ଅନ୍ୟ କୌଣସି ଯୁବକ ବାଳଚନ୍ଦ୍ରିକାଙ୍କ ସହିତ ବିବାହ ପ୍ରସ୍ତାବ ଆଣିବା ତ ଦୂରର କଥା ତାହାଙ୍କ ନାମ ଉଚ୍ଚାରଣ କରିବା ମଧ୍ୟ ବିପଜ୍ଜନକ ମନେ କଲେ । ଫଳରେ ବନ୍ଧୁପାଳଙ୍କର ଆଶଙ୍କା ହେଲା ଯେ ତାହାଙ୍କ ଭଗିନୀକୁ ନିଶ୍ଚୟ ଆଜୀବନ ଅବିବାହିତା ରହିବାକୁ ହେବ । ଏହା ଶୁଣି ମୁଁ ତାହାଙ୍କୁ ସାନ୍ତ୍ୱନା ଦେଇ କହିଲି, "ବନ୍ଧୁବର ଦୁଃଖିତ ହୁଅନାହିଁ, ଏହାର ପ୍ରତିକାର ମୁଁ ଜାଣେ; ମନ୍ତ୍ରଶକ୍ତି ଦ୍ୱାରା ବାଳଚନ୍ଦ୍ରିକାଙ୍କ-ଠାରୁ ଯକ୍ଷର ପ୍ରଭାବ ଦୂର କରି ଦେଇ ପାରିବି ।"

ବନ୍ଧୁପାଳ ମୋହର ପ୍ରସ୍ତାବ ଗ୍ରହଣ କରିବାରୁ ଶୁଭ ଦିବସରେ ବାଳଚନ୍ଦ୍ରିକାଙ୍କୁ ଏକ ଗୃହରେ ଉପବେଶନ କରାଇ ସର୍ବସମକ୍ଷରେ ମୁଁ କେତେକ ଅବୋଧ ମନ୍ତ୍ରୋଚ୍ଚାରଣ କଲି ଏବଂ ସଙ୍ଗେ ସଙ୍ଗେ ଲକ୍ଷଣଶାସ୍ତ୍ରୋକ୍ତ ବାହ୍ୟାଡ଼ମ୍ବର ପୂର୍ଣ୍ଣ କେତେକ ଆନୁଷଙ୍ଗିକ କ୍ରିୟା ଅନୁଷ୍ଠାନ କଲି । ଆନନ୍ଦର କଥା, ମୋହର ଛଳନାପୂର୍ଣ୍ଣ ସାଧନା ଶେଷ ହେବା ପୂର୍ବରୁ ଛଳନାମୂଳକ ଯକ୍ଷ ବାଳଚନ୍ଦ୍ରିକାଙ୍କୁ ପରିତ୍ୟାଗ କରିଥିଲା ଏବଂ ସେ ମୃଦୁ ମଧୁର ହାସ୍ୟଚ୍ଛଟାରେ ପରିଜନମାନଙ୍କର ସନ୍ତୋଷ ବିଧାନ କରିଥିଲେ ।

ଏ ଘଟଣାରେ ବାଳଚନ୍ଦ୍ରିକାଙ୍କର ପିତାମାତା ତଥା ବନ୍ଧୁପାଳ ମୋ ପ୍ରତି କୃତଜ୍ଞତାରେ ଅବନତ ହୋଇ ପଡ଼ିଲେ । ମୁଁ ଯେ ତାହାଙ୍କର କନ୍ୟାକୁ ସାକ୍ଷାତ୍ ଯକ୍ଷ କବଳରୁ ରକ୍ଷା କରିଅଛି ଏକଥା ସେମାନେ ସର୍ବ ସମକ୍ଷରେ ପ୍ରକାଶ କଲେ । ଏହାର କିଛି ଦିନ ପରେ ବାଳଚନ୍ଦ୍ରିକାଙ୍କ ସହିତ ମୋହର ବିବାହ ପ୍ରସ୍ତାବ ଉଠିଥିଲା ।

ବର୍ତ୍ତମାନ ଅମ୍ଭମାନଙ୍କର ବିବାହ ସୁସମ୍ପନ୍ନ ହୋଇଅଛି । କିନ୍ତୁ ଆପଣଙ୍କର ଦର୍ଶନ ନ ପାଇ ବିମଳ ପାରିବାରିକ ସୁଖଭୋଗ ମୋ ପକ୍ଷରେ ବିଷବତ୍ ବୋଧ ହେଉଥିଲା । ଆଜି ତାହା ପୂର୍ଣ୍ଣତା ଲାଭ କରିଅଛି ।"

ପୁଷ୍ପୋଦ୍ଭବଙ୍କ କଥା ଶ୍ରବଣ କରି ରାଜବାହନ ଓ ସୋମଦତ୍ତ ବିଶେଷ ଆନନ୍ଦିତ ହେଲେ । ସେତେବେଳକୁ ଅସ୍ତୋନ୍ମୁଖ ତପନର ଆରକ୍ତ ରଶ୍ମିରଞ୍ଜିତ ଉଜ୍ଜୟିନୀ ନଗରୀ ନବବଧୂର ବନ୍ଧୁଲି ଅଧର ପରି ରକ୍ତାଭ ହୋଇ ଉଠିଥିଲା । ନୀଡ଼ାଭିମୁଖୀ ବକପଂକ୍ତି ପତନଶୀଳ ମୁକ୍ତାମାଳ ସଦୃଶ ଦୂର ବନାନୀର କୁଞ୍ଜଚ୍ଛାୟାତଳେ କେତେବେଳେ

ଲୁଚି ଯାଉଥିଲେ ଏବଂ ଆଉ କେତେବେଳେ ସାଗର ବକ୍ଷରେ ବାତ୍ୟାନ୍ଦୋଳିତ ଫେନଚୂଡ଼ ତରଙ୍ଗବତ୍ ଝଲସି ଉଠୁଥିଲେ । ନଗରର ଜନ କୋଳାହଳ ସହ ଉଦ୍ୟାନର ବିହଗକାକଳୀ ସମ୍ମିଳିତ ହୋଇ ସଙ୍ଗୀତ ମନ୍ଦିରର ବାଦ୍ୟ ବାଦ୍ୟଯନ୍ତ୍ର ସମୁତ୍‌ଥିତ ସପ୍ତସ୍ୱର ଭଳି ଏକ ବିଚିତ୍ର ରାଗିଣୀ ସୃଷ୍ଟି କରୁଥିଲା । ଆଗତ ପ୍ରାୟ ବସନ୍ତର ମନ୍ଦମଳୟାନିଳ ବନ୍ଧୁଦ୍ୱୟଙ୍କ ହୃଦୟରେ ନବୀନ ଉତ୍ସାହ ଓ ପ୍ରେରଣା ବିତରଣ କରିଦେଇ ଗଲା ।

ପତ୍ନୀ ଓ ଅନୁଚରମାନଙ୍କ ସହ ସୋମଦତ୍ତ ନିଜ ରାଜ୍ୟକୁ ଫେରିଗଲେ । ଉପଯୁକ୍ତ ସମୟରେ ସେ ଉଜ୍ଜୟିନୀକୁ ଆସି ବନ୍ଧୁଦ୍ୱୟଙ୍କ ସହ ପୁନଃ ମିଳିତ ହେବା ସ୍ଥିରହେଲା । ରାଜବାହନ ପୁଷ୍ପୋଦ୍ଭବଙ୍କ ସହ ବାସ କରିବା ନିମିତ୍ତ ତାହାଙ୍କ ପ୍ରାସାଦ ଅଭିମୁଖରେ ଯାତ୍ରାକଲେ ।



# (୧୨)

# ଅବନ୍ତୀସୁନ୍ଦରୀଙ୍କର ବାସନ୍ତୀ ପୂଜା

କେତେକ ଦିବସ ମଧ୍ୟରେ ରାଜବାହନଙ୍କର ରୂପ, ଗୁଣ ଓ ପାଣ୍ଡିତ୍ୟର ପ୍ରଶଂସା ସମଗ୍ର ଉଜ୍ଜୟିନୀ ନଗରୀରେ ପ୍ରଚାରିତ ହୋଇଗଲା । ସେ ଜଣେ କୁଳୀନ ବ୍ରାହ୍ମଣ ଯୁବକ ରୂପେ ସର୍ବତ୍ର ପରିଚିତ ହେଲେ । ବନ୍ଧୁପାଳ ପ୍ରଭୃତି ପୁଷ୍ପୋଦ୍ଭବଙ୍କର ଘନିଷ୍ଠ ବନ୍ଧୁଗଣ କେବଳ ତାହାଙ୍କର ପ୍ରକୃତ ପରିଚୟ ପାଇଥିଲେ ।

କ୍ରମେ ଋତୁରାଜ ବସନ୍ତର ପୂର୍ଣ୍ଣ ରାଜତ୍ୱ ଧରାପୃଷ୍ଠରେ ପ୍ରତିଷ୍ଠିତ ହେଲା । କ୍ରମେ ଅରଣ୍ୟାନୀର ହରିତାୟମାନ ଶୋଭା—ପୁଷ୍ପିତ ଉଦ୍ୟାନର ନୟନାଭିରାମ ମାଧୁରୀ—କମଳମାଳିନୀ ସ୍ୱଚ୍ଛ ପୁଷ୍କରିଣୀର ହଂସମିଥୁନ କ୍ରୀଡ଼ା—ବାୟୁ ବିକ୍ଷୋଭିତ ନଦୀବକ୍ଷର ମୃଦୁ ତରଙ୍ଗ—ଅଶୋକ, ପଲାଶ, ନାଗେଶ୍ୱର ଆଦି ପାଦପ ସକଳର ଦୋଳାୟିତ କୁସୁମ ସମ୍ଭାର—କୋରକିତ ଲତା କୁଞ୍ଜର ଲୀଳାୟିତ କମ୍ପନ—କୋକିଳ କଣ୍ଠ ନିଃସୃତ କୁହୁତାନ-ମଧୁପାନମତ୍ତ ଭ୍ରମରର ମଧୁ ଗୁଞ୍ଜନ-ଦିବସର ସମଶୀତୋଷ୍ଣ ସୌରରଶ୍ମି-ରଜନୀର ସୁଶୀତଳ ଜ୍ୟୋତ୍ସ୍ନାଜାଲ ଏବଂ ସର୍ବୋପରି କୁସୁମପରିମଳବାହୀ ମଳୟାନିଳର—ମାଦକତା ଜଗତରେ ନନ୍ଦନ କାନନର ସମ୍ପଦ ବିତରଣ କରି ଯୁବକଯୁବତୀ-ହୃଦୟରେ ଭାବାନ୍ତର ଆନୟନ କଲା ।

ଏହି ସମୟରେ ଧରେ ମହାରାଜ ମାନସାରଙ୍କ କନ୍ୟା ସୁକୁମାରୀ ଅବନ୍ତୀସୁନ୍ଦରୀ ଅବାଲ୍ୟସହଚରୀ ବାଲଚନ୍ଦ୍ରିକା ଓ ପୁରବାସିନୀ ଅନ୍ୟାନ୍ୟ ଯୁବତୀଗଣଙ୍କ ସହ ନଗର ପ୍ରାନ୍ତବର୍ତ୍ତୀ ମନୋହର ରାଜ ଉଦ୍ୟାନରେ ବାସନ୍ତୀ ପୂଜା ଅନୁଷ୍ଠାନ କରିବା ନିମିତ୍ତ ଆଗମନ କଲେ । ସେମାନେ ଗୋଟିଏ ନବ ମୁକୁଳିତ ରସାଳ ତରୁ ତଳେ ଉପବେଶନ କରି ଚନ୍ଦନ, କୁସୁମ, ହରିଦ୍ରା, ଅକ୍ଷତ ଓ ଚୀନ ଦେଶୀୟ ସୂକ୍ଷ୍ମ ସୁକୋମଳ ବସ୍ତ୍ର ପ୍ରଭୃତି ବହୁବିଧ ଉପକରଣ ଏବଂ ନାନାବିଧ ସୁଗନ୍ଧ ଦ୍ରବ୍ୟ ଦ୍ୱାରା କାମଦେବଙ୍କର ଅର୍ଚ୍ଚନା ସମାପନ କରି ପିଞ୍ଜରବିମୁକ୍ତ ବିହଙ୍ଗ ପରି କ୍ରୀଡ଼ା କୌତୁକରେ ନିମଜ୍ଜିତ ହେଲେ ।

ଏତିକି ବେଳେ କନ୍ଦର୍ପତୁଲ୍ୟ ରୂପବାନ୍ ରାଜବାହନ ପ୍ରିୟବନ୍ଧୁ ପୁଷ୍ପୋଦ୍ଭବଙ୍କ ସହିତ ପରମରୂପବତୀ ଅବନ୍ତୀସୁନ୍ଦରୀଙ୍କ ଦର୍ଶନଲାଳସା ହୃଦୟରେ ପୋଷଣ କରି ଏହି ଉଦ୍ୟାନ ନିକଟରେ ଭ୍ରମଣ କରୁଥିଲେ । ବାଲଚନ୍ଦ୍ରିକା ସେମାନଙ୍କୁ ଦେଖିପାରି ହସ୍ତସଙ୍କେତ ଦ୍ୱାରା ନିଃଶଙ୍କ ଚିତ୍ତରେ ନିକଟବର୍ତ୍ତୀ ହେବାପାଇଁ ସୂଚନା ଦେଲେ ।

ରାଜବାହନ ଅବନ୍ତୀସୁନ୍ଦରୀଙ୍କର ସମ୍ମୁଖୀନ ହେବାମାତ୍ରେ ତାହାଙ୍କର ଅସାମାନ୍ୟ ରୂପଲାବଣ୍ୟରେ ବିମୋହିତ ହୋଇଗଲେ । ଦରବିକଶିତ କମଳ ଭଳି ଅବନ୍ତୀସୁନ୍ଦରୀଙ୍କ ମୁଖ ମଣ୍ଡଳ—ଆକର୍ଣ୍ଣ ବିସ୍ତୃତ ନୟନ ଯୁଗଳ—ଅରୁଣ ରାଗରଞ୍ଜିତ ଅଧର—ସୁସଜ୍ଜିତ ଘନକୃଷ୍ଣ କେଶ ଦାମ—ମୃଣାଳ କୋମଳ ବାହୁଲତା—ତପ୍ତକାଞ୍ଚନ-ଗୌର କାନ୍ତି ତାହାଙ୍କର ମନ ଓ ନୟନକୁ ବନ୍ଦୀ କଲା । ସେ ରାଜକୁମାରୀଙ୍କର ଦୃଷ୍ଟିରେ କଟାକ୍ଷ — ଅଧରରେ ମୃଦୁ

ମଧୁର ହାସ—ଗତିରେ ରାଜହଂସୀର ମନ୍ଥରତା—ଅଙ୍ଗ ଭଙ୍ଗୀରେ ଅନିର୍ବଚନୀୟ ସୁଷମା ଅବଲୋକନ କରି ସମ୍ପୂର୍ଣ୍ଣ ଆତ୍ମହରା ହୋଇ ପଡ଼ିଲେ ।

ଏଣେ ରାଜକୁମାରୀ ମଧ୍ୟ ରାଜବାହନଙ୍କ ଅତୁଳନୀୟ ରୂପରେ ବିମୁଗ୍ଧା ହୋଇ ମନ୍ଦବାୟୁବିକମ୍ପିତ ପୁଷ୍ପିତା ଲତାଭଳି ଚଞ୍ଚଳ ହେଲେ । ଲଜ୍ଜା ଓ ଅନୁରାଗର ଅଜ୍ଞାତ ସ୍ପର୍ଶରେ ତାହାଙ୍କର ବଦନ ସ୍ୱତଃ ଆରକ୍ତ, ଅବନତ ତଥା ସଚପଳ ହୋଇ ଉଠିଲା । ସେ ସଖୀ-ମଣ୍ଡଳୀ ମଧ୍ୟରେ ବିଦ୍ୟୁତ୍ ବେଗରେ ଲୁକ୍କାୟିତ ହୋଇ ଅପାଙ୍ଗ ଦୃଷ୍ଟିରେ ରାଜବାହନଙ୍କ ମୁଖମଣ୍ଡଳରେ ପୌରୁଷର ସଙ୍କେତ—ଆଜାନୁ ଲମ୍ବିତ ବାହୁଯୁଗଳରେ ବୀରତ୍ୱର ଆଭାସ—ପ୍ରଶସ୍ତ ବକ୍ଷଦେଶରେ ଅଦମ୍ୟ ସାହସର ସୂଚନା ଏବଂ ସର୍ବାଙ୍ଗରେ ରାଜଲକ୍ଷଣମାନ ପରିଦର୍ଶନ କରି ମନେ ମନେ ଉତ୍‌ଫୁଲ୍ଲ ହେବାକୁ ଲାଗିଲେ । ସେ ଯୁବକଙ୍କର ବିନୟ ନମ୍ର ନୟନ ଯୁଗଳରେ ସକଳ କଳାକୁଶଳତାର ସଙ୍କେତ—ସ୍ୱଚ୍ଛନ୍ଦ ଗତିରେ ଅତି ମାନୁଷର ଲକ୍ଷଣ-ବନ୍ଧୁ ସହ ମିଷ୍ଟାଳାପରେ ପ୍ରତିଭାର ଆଭାସ ପାଇ ତାହାଙ୍କର ଆତ୍ମ-ପରିଚୟ ପାଇବା ନିମିତ୍ତ ଗୋପନରେ ବାଳଚନ୍ଦ୍ରିକାଙ୍କୁ ଜିଜ୍ଞାସା କଲେ ।

ବାଳଚନ୍ଦ୍ରିକା ଅତ୍ୟନ୍ତ ବୁଦ୍ଧିମତୀ । ସେ ରାଜବାହନ ଓ ଅବନ୍ତୀସୁନ୍ଦରୀଙ୍କର ଭାବ ଲକ୍ଷ କରି ବୁଝିପାରିଲେ ଯେ ଉଭୟଙ୍କ ମଧ୍ୟରେ ପ୍ରଥମଦର୍ଶନଜନିତ ଅନୁରାଗ ପ୍ରତିଷ୍ଠିତ ହୋଇଅଛି । କିନ୍ତୁ ସଖୀମାନଙ୍କ ସମକ୍ଷରେ ରାଜବାହନଙ୍କର ପ୍ରକୃତ ପରିଚୟ ଦେବା ଉଚିତ ନୁହେ । ତେଣୁ ସେ କହିଲେ, "ରାଜକୁମାରୀ, ଏ ଜଣେ ସକଳ କଳାବିଦ୍ୟାରେ ସୁନିପୁଣ ବ୍ରାହ୍ମଣ ଯୁବକ; ବେଦବିଦ୍ୟା

ତଥା ଧନୁର୍ବିଦ୍ୟାରେ ତୁଲ୍ୟ ପାରଦର୍ଶୀ, ମଣି, ମନ୍ତ୍ର ଓ ଭେଷଜ ବିଦ୍ୟାରେ ଦକ୍ଷ; ସୁତରାଂ ତୁମର ପୂଜନୀୟ । ଅତଏବ ତାହାଙ୍କୁ ଯଥାଯୋଗ୍ୟ ଅର୍ଚ୍ଚନା କରିପାର ।”

ନିଜ ଅଭିଳାଷର ଅନୁକୂଳ ଉପଦେଶ ପାଇ ରାଜକୁମାରୀ ବ୍ରାହ୍ମଣଙ୍କର ଅର୍ଚ୍ଚନା ନିମିତ୍ତ ଅଗ୍ରସର ହେଲେ । ସେ ସଲଜ୍ଜ ଅସ୍ଫୁଟ ବାକ୍ୟରେ ରାଜବାହନଙ୍କୁ ଆହ୍ୱାନ କରି ମୃଦୁ ବିକମ୍ପିତ ହସ୍ତରେ ଆସନ ପ୍ରଦାନ ପୂର୍ବକ ସଖୀ ହସ୍ତରେ ଅର୍ଘ୍ୟ, ପାଦ୍ୟ, ଆଚମନ, ଗନ୍ଧ, ପୁଷ୍ପ, ଅକ୍ଷତ, କର୍ପୂର, ତାମ୍ବୁଲ ପ୍ରଭୃତି ଦ୍ରବ୍ୟ ଦ୍ୱାରା ତାହାଙ୍କର ଅଭ୍ୟର୍ଥନା କରିବାକୁ ଲାଗିଲେ ।

ରାଜକୁମାରୀଙ୍କ ଦର୍ଶନରେ ରାଜବାହନଙ୍କର ଅକସ୍ମାତ୍ ଚିତ୍ତ-ବିକାର ଓ ଅନୁରାଗ ଜାତ ହୋଇଥିବାରୁ ସେ ଏହାର କାରଣ ନିଜର ଜାତିସ୍ମରଣକ୍ତି ବଳରେ ଚିନ୍ତା କରିବାକୁ ଲାଗିଲେ । ସେ ଜାଣି ପାରିଲେ ଯେ ଅବନ୍ତୀସୁନ୍ଦରୀ ତାହାଙ୍କର ପୂର୍ବ ଜନ୍ମର ପତ୍ନୀ । ପୂର୍ବଜନ୍ମରେ ଯେଉଁ ତପସ୍ୱୀଙ୍କ ଅଭିଶାପରେ ସେ ଦୁହେଁ ଅଭିଶପ୍ତ, ତାହାଙ୍କ ବାକ୍ୟ ଅନୁଯାୟୀ ଅବନ୍ତୀସୁନ୍ଦରୀ ମଧ୍ୟ ଜାତିସ୍ମର ହେବାର କଥା । ତେଣୁ ରାଜବାହନ ରାଜକୁମାରୀଙ୍କର ସେହି ଶକ୍ତିକୁ ସଚେତ କରାଇବା ନିମିତ୍ତ ଚେଷ୍ଟିତ ହେଲେ ।

ଏହି ସମୟରେ ନିକଟବର୍ତ୍ତୀ ପୁଷ୍କରଣୀରେ ଗୋଟିଏ ଅତି ସୁନ୍ଦର ରାଜହଂସ ସନ୍ତରଣ କରୁଥିବା ଦେଖି, ରାଜକୁମାରୀ ତାହାକୁ ଧରି ଆଣିବା ପାଇଁ ବାଳଚନ୍ଦ୍ରିକାକୁ ପ୍ରେରଣ କଲେ । ଏହି ସୁଯୋଗରେ ରାଜବାହନ କହିଲେ, “ହେ ରାଜନନ୍ଦିନି, କ୍ରୀଡ଼ାରତ ଏ ସୁନ୍ଦର ରାଜହଂସକୁ ଧରି ଆଣିବା କେବଳ ଅନ୍ୟାୟ ନୁହେ

ପାପ ହେବ ମଧ୍ୟ । ଏ ସମ୍ବନ୍ଧେ ମୁଁ ଗୋଟିଏ ଗଳ୍ପ କହୁଅଛି ଶୁଣ :—

"ପୂର୍ବକାଳରେ ଶାମ୍ବ ନାମରେ ଜଣେ ରାଜା ଥିଲେ । ତାହାଙ୍କ ରାଣୀଙ୍କ ନାମ ଯଜ୍ଞବତୀ । ଦିନେ ଉଭୟେ ସରୋବର ନିକଟରେ ବିହାର କରିବା ସମୟରେ ରକ୍ତୋତ୍ପଳ ସମୂହ ମଧ୍ୟରେ ନିଦ୍ରିତ-ପ୍ରାୟ ଗୋଟିଏ ରାଜହଂସକୁ ଦେଖି ତାହାକୁ ଧରି ଆଣିଦେବା ପାଇଁ ରାଣୀ ଅନୁରୋଧ କଲେ । ପ୍ରିୟତମା ରାଣୀଙ୍କ ଅନୁରୋଧ ରକ୍ଷାକରି ଶାମ୍ବ ହଂସର ପାଦଯୁଗଳକୁ ମୃଣାଳ ସୂତ୍ରରେ ବନ୍ଧନ କରି ଆଣିଲେ । କିନ୍ତୁ ସେ ରାଣୀଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, 'ପ୍ରିୟେ, ଏ ହଂସକୁ ଧରି ଆଣିବା ପାଇଁ ମୋତେ ଅନୁରୋଧ କରି ଠିକ୍ କରିନାହଁ । କାରଣ ମୁଁ ଏହାକୁ ବନ୍ଧନ କରିଥିଲେ ମଧ୍ୟ ଯୋଗମଗ୍ନ ମୁନି ପରି ବର୍ତ୍ତମାନ ସୁଦ୍ଧା ଏ ନିଶ୍ଚଳ ରହିଅଛି । ଏଣୁ ମୁଁ ଏହାକୁ ବନ୍ଧନ ମୁକ୍ତ କରିଦେଉଅଛି ।'

ମୁକ୍ତ ହଂସଟି କିଛି ଦୂର ଉଡ଼ିଯାଇ କହିଲା, 'ହେ ରାଜନ୍, ମୁଁ ଜଣେ ନୈଷ୍ଠିକ ବ୍ରହ୍ମଚାରୀ । ଏହି ପଦ୍ମବନରେ ଧ୍ୟାନମଗ୍ନ ହୋଇ ପରମାନନ୍ଦରେ ଅବସ୍ଥାନ କରୁଥିଲି । ତୁମେ ନିଜେ ଜ୍ଞାନବାନ୍ ହୋଇ ପତ୍ନୀର ପ୍ରରୋଚନାରେ ମୋହର ଧ୍ୟାନଭଙ୍ଗ କରିଅଛ । ସୁତରାଂ ତୁମେ ପତ୍ନୀ ବିଚ୍ଛେଦ ଦୁଃଖ ଭୋଗ କରିବ ।'

ଏ କ୍ରୂର ଅଭିଶାପ ଶ୍ରବଣ କରି ଶାମ୍ବଙ୍କର ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ପ୍ରିୟତମାର ବିଚ୍ଛେଦ ଚିନ୍ତାରେ ସେ ମର୍ମାହତ ହୋଇ ମୁନିଙ୍କ ପାଦତଳେ ଦଣ୍ଡବତ୍ ପ୍ରଣାମ କରି ସବିନୟ ପ୍ରାର୍ଥନା କଲେ—'ମହାଭାଗ, ମୁଁ ଅଜ୍ଞାନତା ବଶତଃ ଏ ଅପରାଧ କରିଅଛି । ନିଜର ଉଦାର ଗୁଣରେ ମାର୍ଜନା କରନ୍ତୁ ।'

ଶାମ୍ବଙ୍କର କାକୁତି ମିନତି ମୁନିଙ୍କର ହୃଦୟକୁ ଦୟାର୍ଦ୍ର କରି ପକାଇଲା । ସେ ଉତ୍ତର କଲେ, 'ରାଜନ୍, ମୋର ଅଭିଶାପ ବ୍ୟର୍ଥ ହେବନାହିଁ । କାରଣ ଏହା ତୁମର ସ୍ୱକୃତ ପାପର ପ୍ରତିଫଳ ମାତ୍ର । କିନ୍ତୁ ଏ ଜନ୍ମରେ ତୁମର ପତ୍ନୀବିଚ୍ଛେଦ ଘଟିବନାହିଁ । ପର ଜନ୍ମରେ ଏହି ରମଣୀ ଅନ୍ୟଦେହ ଧାରଣ କଲେ, ତୁମେ ଏହାଙ୍କୁ ସହଧର୍ମିଣୀ ରୂପେ ଲାଭ କରିବ ଏବଂ ଦୁଇ ମୁହୂର୍ତ୍ତ ଲାଗି ମୋହର ଚରଣ ଦ୍ୱୟ ଆବଦ୍ଧ କରି ଥିବାରୁ ଦୁଇମାସାବଧି ତୁମର ପଦ ଶୃଙ୍ଖଳାବଦ୍ଧ ହୋଇ ସ୍ତ୍ରୀବିରହ ଦୁଃଖ ଭୋଗ କରିବ । ଏହାପରେ ତୁମର ଯଶଃ ସୌରଭମୟ ଜୀବନ ଆରମ୍ଭ ହେବ । ତୁମେ ସମଗ୍ର ଅର୍ଯ୍ୟାବର୍ତ୍ତର ରାଜରାଜେଶ୍ୱର ହୋଇ ସହଧର୍ମିଣୀଙ୍କ ସହ ସୁଖରେ କାଳାତିପାତ କରିବ ।'

ଏହା ପରେ ରାଜା ଓ ରାଣୀ ଜାତିସ୍ମର ହେବା ପାଇଁ ବର ପ୍ରଦାନ କରି ମୁନି ସେ ସ୍ଥାନ ପରିତ୍ୟାଗ କଲେ । ସୁତରାଂ, ରାଜକୁମାରୀ, ଏ ହଂସକୁ ବନ୍ଦୀ କରିବା ଉଚିତ ନୁହେ ।"

ରାଜବାହନଙ୍କ କଥା ଶ୍ରବଣ କରି ରାଜକୁମାରୀଙ୍କର ଜାତିସ୍ମରତ୍ୱ ଉଦୟହେଲା । ସେ ନିଜର ପୂର୍ବଜନ୍ମ ବୃତ୍ତାନ୍ତ ସ୍ମରଣ କରି ଜାଣିପାରିଲେ ଯେ ସେ ନିଜେ ଯଜ୍ଞବତୀ ଏବଂ ଏହି ବ୍ରାହ୍ମଣ ଯୁବକ ଶାମ୍ବ ଥିଲେ । ତେଣୁ ବର୍ତ୍ତମାନ ହଂସକୁ ବନ୍ଦୀ ନକରିବା ପାଇଁ ସେ ବାଳଚନ୍ଦ୍ରିକାଙ୍କୁ ନିର୍ଦ୍ଦେଶ ଦେଇ ରାଜବାହନଙ୍କୁ କହିଲେ, "ହେ ସୁନ୍ଦର, ପୂର୍ବକାଳରେ ରାଜା ଶାମ୍ବ ପ୍ରିୟତମା ଯଜ୍ଞବତୀଙ୍କ ବାକ୍ୟ ରକ୍ଷା କରିବା ନିମିତ୍ତ ହଂସକୁ ବନ୍ଧନ କରିଥିଲେ । କାରଣ ଜଗତରେ ବିବେକୀ ବ୍ୟକ୍ତି ମଧ୍ୟ ପ୍ରିୟଜନପ୍ରୀତି ଉଦ୍ଦେଶ୍ୟରେ ଅକାର୍ଯ୍ୟ କରିଥାନ୍ତି, ମୁଁ ଜାଣି ପାରିଛି ପୂର୍ବ ଜନ୍ମରେ ମୁଁ ଯଜ୍ଞବତୀ

ଥିଲି ଏବଂ ଆପଣ ଶାମ୍ବ ଥିଲେ । ସେହି ପୂର୍ବ ତପସ୍ୟା ବଳରେ ଏ ଜନ୍ମରେ ମଧ୍ୟ ମୁଁ ଆପଣଙ୍କୁ ପତି ଭାବରେ ପାଇ ଧନ୍ୟ ହେବି ।”

ଠିକ୍ ଏହି ସମୟରେ ମାଳବ ରାଜମହିଷୀ ପରିଜନ ପରିବେଷ୍ଟିତ ହୋଇ ଅବନ୍ତୀସୁନ୍ଦରୀଙ୍କ ବାସନ୍ତୀଲୀଳା ଦର୍ଶନ କରିବା ନିମିତ୍ତ ଉଦ୍ୟାନ ମଧ୍ୟରେ ପ୍ରବେଶ କଲେ । ବାଳଚନ୍ଦ୍ରିକା ଦୂରରୁ ଏହା ଦେଖିପାରି ହସ୍ତ ସଙ୍କେତ ଦ୍ୱାରା ପୁଷ୍ପୋଦ୍ଭବଙ୍କୁ ଜଣାଇଦେବାରୁ ଉଭୟ ବନ୍ଧୁ ଉପବନସ୍ଥ ଘନସନ୍ନିବିଷ୍ଟ ଲତାକୁଞ୍ଜ ମଧ୍ୟରେ ଲୁକ୍କାୟିତ ହୋଇଗଲେ ।

ରାଜମହିଷୀ କିଛିକ୍ଷଣ ଅବସ୍ଥାନ କରି ସଖୀମାନଙ୍କ ସହିତ ଅବନ୍ତୀସୁନ୍ଦରୀଙ୍କର କ୍ରୀଡ଼ାକୌତୁକ ଦେଖି ବିଶେଷ ପ୍ରୀତା ହୋଇଥିଲେ । କିନ୍ତୁ କନ୍ୟାର ଚୂର୍ଣ୍ଣ କୁନ୍ତଳ ବିମଣ୍ଡିତ ବଦନ ମଣ୍ଡଳରେ ଅବସାଦର ସାମାନ୍ୟ ଆଭାସ ପାଇ କ୍ରୀଡ଼ା ସାଙ୍ଗକରି ପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କରିବା ପାଇଁ ଉପଦେଶ ଦେଲେ । ଅଗତ୍ୟା ରାଜକୁମାରୀଙ୍କୁ ଉଦ୍ୟାନ ପରିତ୍ୟାଗ କରିବାକୁ ହେଲା । ସେ ମାତାଙ୍କର ପଶ୍ଚାତ୍ ଗମନ କଲାବେଳେ ରାଜବାହନ ଲୁକ୍କାୟିତ ଥିବା ସ୍ଥାନର ନିକଟବର୍ତ୍ତୀ ହୁଅନ୍ତେ ସେହି ଦିଗକୁ ବିରହଦୁଃଖୀ ଛଳ ଛଳ ଚକ୍ଷୁ ଫେରାଇ ପରୋକ୍ଷ ଭାବରେ ବିଦାୟ ମାଗି କହିଲେ, “ହେ ରାଜହଂସକୁଳ ତିଳକ, ବିହାର କରିବା ଉଦ୍ଦେଶ୍ୟରେ ତୁମେ ଏ ଉଦ୍ୟାନରେ ପ୍ରବେଶ କରିଥିଲ; କିନ୍ତୁ ମୁଁ ଅସମୟରେ ମାତାଙ୍କ ଆଦେଶ ପାଳନ କରି ତୁମକୁ ତ୍ୟାଗ କରି ଯାଉଅଛି । ମୋର ଏ ବ୍ୟବହାର ତୁମର ଅନୁରାଗରେ ପରିବର୍ତ୍ତନ ଘଟାଇବ ନାହିଁ ଏହି ଆଶାପୋଷଣ କରି ରହିଲି ।”

---

## (୧୩)

# ଅବନ୍ତୀସୁନ୍ଦରୀଙ୍କର ଐନ୍ଦ୍ରଜାଲିକ ବିବାହ

ଏ ଘଟଣା ପରେ ବହୁ ଦିବସାବଧି ରାଜବାହନ ଓ ଅବନ୍ତୀ-ସୁନ୍ଦରୀଙ୍କ ମଧ୍ୟରେ ପୁନଃ ସାକ୍ଷାତର କୌଣସି ସୁଯୋଗ ମିଳିଲା ନାହିଁ । ଉଭୟେ ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କରିବାକୁ ଲାଗିଲେ । ରାଜବାହନ କ୍ରମେ ଏତେ ଦୂର ଅଧୀର ହୋଇ ପଡ଼ିଲେ ଯେ ସେ ରାଜ ପ୍ରତିନିଧିଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଆତ୍ମ ପରିଚୟ ତଥା ନିଜର ଓ ଅବନ୍ତୀସୁନ୍ଦରୀଙ୍କର ପୂର୍ବ ଜନ୍ମ ବୃତ୍ତାନ୍ତ ପ୍ରକାଶ କରି ରାଜକୁମାରୀଙ୍କର ପାଣିପ୍ରାର୍ଥନା କରିବା ପାଇଁ ଆକାଙ୍କ୍ଷିତ ହୋଇ ଉଠିଲେ । କିନ୍ତୁ ପୁଷ୍ପୋଦ୍ଭବ ତାହାଙ୍କୁ ଏଥିରୁ କ୍ଷାନ୍ତ କଲେ । ଏକେତ ରାଜ ପ୍ରତିନିଧି ନିତାନ୍ତ ରୁକ୍ଷ ପ୍ରକୃତିକ ଏବଂ ଅସହିଷ୍ଣୁ ବ୍ୟକ୍ତି, ଦ୍ୱିତୀୟତଃ ମାଳବ ଓ ମଗଧ ରାଜବଂଶ ମଧ୍ୟରେ ଚିର ଶତ୍ରୁତା—ଏପରି ଅବସ୍ଥାରେ ରାଜବାହନଙ୍କ ପୂର୍ବଜନ୍ମ ବୃତ୍ତାନ୍ତରେ କିଏ ଅବା ଆସ୍ଥାସ୍ଥାପନ କରିବ ? ତେଣୁ ପରିସ୍ଥିତି ସ୍ୱତଃ ଅନୁକୂଳ ହେବାଯାଏଁ ଅପେକ୍ଷା କରିବା ପାଇଁ ସେ ଉପଦେଶ ଦେଲେ ।

ଯେଉଁ ଉଦ୍ୟାନରେ ଅବନ୍ତୀସୁନ୍ଦରୀଙ୍କ ସହିତ ସାକ୍ଷାତ ହୋଇଥିଲା, ସେଠାରେ ପ୍ରତ୍ୟହ ଭ୍ରମଣ କରିବା ହିଁ ରାଜବାହନଙ୍କର ଏକମାତ୍ର ସାନ୍ତ୍ୱନା ଥିଲା । ଯେଉଁ ରସାଳ ତରୁ ତଳେ ରାଜକୁମାରୀ

ତାହାଙ୍କର ଅର୍ଚ୍ଚନା କରିଥିଲେ ସେହିଠାରେ ପଦଗ୍ରହଣ କରିବା; ଯେଉଁ କୋମଳ ବାଲୁକା ଶଯ୍ୟାରେ ସେ ଅର୍ଦ୍ଧଶାୟିତ ଅବସ୍ଥାରେ କୁସୁମମାଳା ରଚନା କରିଥିଲେ ସେହିଠାରେ ବିଶ୍ରାମ ନେବା; ଯେଉଁ ମାଧବୀ ଲତା କୁଞ୍ଜରୁ ସେ କୁସୁମ ଚୟନ କରିଥିଲେ ତାହାର ଶୋଭା ପୁନଃ ପୁନଃ ଦର୍ଶନ କରିବା; ପ୍ରଥମ ଦର୍ଶନ ମାତ୍ରେ ସେ ଯେଉଁ ସଙ୍କେତ ଅଙ୍ଗ ଭଙ୍ଗୀ ଦ୍ୱାରା ଭାବ ପ୍ରକାଶ କରିଥିଲେ ତାହା ମାନସପଟରେ କଳ୍ପନା କରିବା ଏବଂ ତାହାଙ୍କଠାରୁ ବିଦାୟ ନେଲାବେଳେ ସେ ଯେଉଁ ମୃଦୁ ମଧୁର ଶ୍ଳେଷୋକ୍ତି ପ୍ରୟୋଗ କରିଥିଲେ, ତାହା ସ୍ମରଣ କରିବାରେ ସେ ଆନନ୍ଦ ଅନୁଭବ କରିବାକୁ ଲାଗିଲେ ସତ୍ୟ; କିନ୍ତୁ କୌଣସିଥିରେ ତୃପ୍ତିଲାଭ କରିପାରିଲେ ନାହିଁ ।

ଦିନେ ରାଜବାହନ ସହଚର ପୁଷ୍ପୋଦ୍ଭବଙ୍କ ସହିତ ଏହି ଉଦ୍ୟାନରେ ଭ୍ରମଣ କଲାବେଳେ ଜଣେ ତେଜସ୍ୱୀନ୍ ବ୍ରାହ୍ମଣ ସେଠାରେ ଉପସ୍ଥିତ ହେଲେ । ତାହାଙ୍କ ଅଙ୍ଗର ଫଟିକ ପରିଧେୟ, ସ୍କନ୍ଧର ଶୁଭ୍ର ଉପବୀତ, କର୍ଣ୍ଣର ମଣିମୟ ମକର କୁଣ୍ଡଳ ଓ ନୟନର 'ଦୀପ୍ତିରୁ ସେ ଯେ ଜଣେ ଅସାଧାରଣ ବିଜ୍ଞବ୍ୟକ୍ତି ଏହା ଜଣା ଯାଉଥିଲା । ରାଜବାହନ ଓ ପୁଷ୍ପୋଦ୍ଭବ ତାହାଙ୍କୁ ପ୍ରଣାମକରି ତାହାଙ୍କର ପରିଚୟ ଜିଜ୍ଞାସା କରନ୍ତେ ସେ ଆଶୀର୍ବାଦ କରି କହିଲେ, "ମୋହର ନାମ ବିଦ୍ୟେଶ୍ୱର । ମୁଁ ଇନ୍ଦ୍ରଜାଲ ବିଦ୍ୟାରେ ନିପୁଣ । ଏହି ବିଦ୍ୟା ପ୍ରଦର୍ଶନ କରି ରାଜାମାନଙ୍କର ମନୋରଞ୍ଜନ କରିବା ମୋହର ବୃତ୍ତି ।"

ତାପରେ ବ୍ରାହ୍ମଣ ରାଜବାହନଙ୍କୁ ଉଦ୍ଦେଶ୍ୟ କରି ପଚାରିଲେ, "ଆପଣ ବନ୍ଧୁ ସହ ଏପରି ଏକ ମନୋରମ ଉଦ୍ୟାନରେ ଭ୍ରମଣ

ଲାଗୁଥିଲେ ଆପଣଙ୍କର ମୁଖମଣ୍ଡଳ ପାଣ୍ଡୁର ବର୍ଣ୍ଣ ଦେଖା ଯାଉଅଛି କାହିଁକି ?"

ଐନ୍ଦ୍ରଜାଲିକର ଶକ୍ତି ଓ ଚାତୁର୍ଯ୍ୟ ସାହାଯ୍ୟରେ ହୁଏତ ରାଜବାହନଙ୍କର ଉଦ୍ଦେଶ୍ୟ ସାଧନ ସହଜସାଧ୍ୟ ହୋଇପାରେ, ଏହି ଆଶାରେ ପୁଷ୍ପୋଦ୍ଭବ ନିଜ ବନ୍ଧୁଙ୍କର ପ୍ରକୃତ ପରିଚୟ ଦେଇ ଅବନ୍ତୀସୁନ୍ଦରୀଙ୍କ ସହିତ ତାହାଙ୍କର ଅନୁରାଗ ପ୍ରସଙ୍ଗ ଏବଂ ସେମାନଙ୍କର ଭବିଷ୍ୟତ ମିଳନରେ ଯେ ସମସ୍ତ ବାଧା ବିଦ୍ୟମାନ ତାହା ବର୍ଣ୍ଣନା କଲେ ।

ଏକଥା ଶୁଣି ବିଦ୍ୟେଶ୍ୱର ଈଷତ୍ ହାସ୍ୟ କରି ରାଜବାହନଙ୍କୁ ଉଦ୍ଦେଶ୍ୟ କରି କହିଲେ, "ପ୍ରଭୁ, ମୁଁ ଆପଣଙ୍କର ଅନୁଚର ମାତ୍ର । ମୁଁ ଉପସ୍ଥିତ ଥିଲାବେଳେ ଆପଣଙ୍କ ପକ୍ଷେ କୌଣସି କାର୍ଯ୍ୟ ଅସାଧ୍ୟ ନୁହେ । ମୁଁ ଇନ୍ଦ୍ରଜାଲ ବିଦ୍ୟାଦ୍ୱାରା ମାଳବ ରାଜା ତଥା ପୁରବାସୀମାନଙ୍କୁ ସମ୍ମୋହିତ କରି ସବୁ ସମକ୍ଷରେ ରାଜକନ୍ୟାଙ୍କ ସହିତ ଆପଣଙ୍କର ବିବାହ କିମ୍ବା ସମ୍ପନ୍ନ କରିଦେବି । ରାଜକୁମାରୀଙ୍କର କୌଣସି ସହଚରୀ ଦ୍ୱାରା ଯଦି ଆପଣ ଏ ବୃତ୍ତାନ୍ତ ପୂର୍ବରୁ ତାହାଙ୍କ ନିକଟକୁ ପ୍ରେରଣ କରିପାରନ୍ତି ତେବେ ମୋହର କାର୍ଯ୍ୟ ଅତ୍ୟନ୍ତ ସହଜସାଧ୍ୟ ହୋଇପାରନ୍ତା ।"

ଐନ୍ଦ୍ରଜାଲିକର ଆଶ୍ୱାସନାପୂର୍ଣ୍ଣ ବାକ୍ୟରେ ଅତ୍ୟନ୍ତ ଆଶ୍ୱାସିତ ହୋଇ ରାଜବାହନ ଏଥିରେ ସମ୍ମତ ଜଣାଇଲେ । ସୁତରାଂ ବିଦ୍ୟେଶ୍ୱର ଗୋଟିଏ କର୍ମଯୋଜନା ପ୍ରସ୍ତୁତ କରି ପରଦିବସ ପ୍ରତ୍ୟୁଷରୁ ପ୍ରତ୍ୟେକେ ତଦନୁଯାୟୀ ପ୍ରସ୍ତୁତ ରହିବା ପାଇଁ ଉପଦେଶ ଦେଇ ବିଦାୟ ନେଲେ ।

ଉଭୟେ ବନ୍ଧୁ ନଗର ମଧ୍ୟକୁ ଫେରି ଆସିଲେ । ସେମାନେ ପ୍ରଥମେ ବାଳଚନ୍ଦ୍ରିକାଙ୍କ ଦ୍ୱାରା ଏ ସମ୍ବାଦ ଏବଂ ରାଜକୁମାରୀଙ୍କ କର୍ତ୍ତବ୍ୟ ସମ୍ବନ୍ଧେ ସ୍ପଷ୍ଟ ସୂଚନା ତାହାଙ୍କ ନିକଟକୁ ପ୍ରେରଣ କଲେ ।

ପରଦିବସ ଅତି ପ୍ରତ୍ୟୁଷରୁ ବିଦ୍ୟେଶ୍ୱର ବହୁମୂଲ୍ୟ ବସ୍ତ୍ର ଓ ଅଳଙ୍କାର ଭୂଷିତ ହୋଇ, ବହୁ ଶିଷ୍ୟ ଓ ପରିଜନ ପରିବେଷ୍ଟିତ ହୋଇ ରାଜ ଦ୍ୱାରରେ ଉପସ୍ଥିତ ହେଲେ । ଦ୍ୱାରପାଳଗଣ ଐନ୍ଦ୍ରଜାଲିକଙ୍କ ଆଗମନ ସମ୍ବାଦ ରାଜାଙ୍କ ନିକଟରେ ଦେବାମାତ୍ରେ ରାଜା ମାନସାର, ରାଜପ୍ରତିନିଧି ଚଣ୍ଡବର୍ମା, ପାରିଷଦ ବର୍ଗ ଏବଂ ଅନ୍ତଃପୁରର ରମଣୀମାନଙ୍କ ସହିତ ସୁସଜ୍ଜିତ ନାଟ୍ୟ ମନ୍ଦିରକୁ ଆଗମନ କରି ବିଦ୍ୟା ପ୍ରଦର୍ଶନ କରାଇବା ନିମିତ୍ତ ବିଦ୍ୟେଶ୍ୱରଙ୍କୁ ଆଦେଶ ପ୍ରଦାନ କଲେ ।

ଅନୁମତି ପାଇ ବିଦ୍ୟେଶ୍ୱର ଅନୁଚରମାନଙ୍କ ସହିତ ନାଟ୍ୟ ମନ୍ଦିରରେ ପ୍ରବେଶ କଲେ । ପ୍ରଥମେ ବହୁବିଧ ବାଦ୍ୟ ଯନ୍ତ୍ର ସହ କେତେକ ରୂପବତୀ ଯୁବତୀ ରାଗ ରାଗିଣୀ ଯୁକ୍ତ ସଂଗୀତ ଗାନକରି ଦର୍ଶକମାନଙ୍କର ମନୋରଞ୍ଜନ କରୁକରୁ ଐନ୍ଦ୍ରଜାଲିକ ମଣ୍ଡଳ ମଧ୍ୟରେ ଦଣ୍ଡାୟମାନ ହୋଇ ମୟୂରପୁଚ୍ଛଯୁକ୍ତ ଗୁମର ପରିଚାଳନ ପୂର୍ବକ ରାଜା ମାନସାର ତଥା ଦର୍ଶକ ମଣ୍ଡଳୀର ଚକ୍ଷୁ ସମ୍ମୋହିତ କରି ପକାଇଲେ । ତାପରେ ସେ ସ୍ଥିରଭାବରେ ଅବସ୍ଥାନ କରି ଅସ୍ପଷ୍ଟ ମନ୍ତ୍ରୋଚ୍ଚାରଣ କରନ୍ତେ ସହସା ଫଂଣାଯୁକ୍ତ ଶତ ଶତ ସର୍ପ ତୀବ୍ର ବିଷୋଦ୍‌ଗୀରଣ କରି ମଣ୍ଡଳ ମଧ୍ୟରେ ଇତସ୍ତତଃ ବିଚରଣ କରିବାକୁ ଲାଗିଲେ । ଏ ଦୃଶ୍ୟରେ ସମଗ୍ର ନାଟ୍ୟ ମନ୍ଦିର ଭୀତତ୍ରସ୍ତ ଓ କୋଳାହଳ ପୂର୍ଣ୍ଣ ହୋଇ ଉଠିଲା । ଫୁତ୍କାର ସହ ସର୍ପଗୁଡ଼ିକ କ୍ରମେ ଦର୍ଶକମାନଙ୍କର ଖୁବ୍ ନିକଟବର୍ତ୍ତୀ ହେବାକୁ

ଲାଗିଲେ । ଏତିକି ବେଳେ କେଉଁ ଅଜ୍ଞାତ ସ୍ଥାନରୁ ଅସଂଖ୍ୟ ଗୃଧ୍ରପକ୍ଷୀ ଲମ୍ଫ ପ୍ରଦାନ କରିବାର ଦେଖାଗଲା ଏବଂ ପ୍ରତ୍ୟେକ ପକ୍ଷୀ ନିଜ ପୃଷ୍ଠରେ ଗୋଟିଏ ଗୋଟିଏ ସର୍ପ ଧରି ଆକାଶ ମାର୍ଗକୁ ଉଡ଼ିଗଲେ । କ୍ଷଣକ ମଧ୍ୟରେ ବିସ୍ମୟମୁଗ୍ଧ ନାଟ୍ୟମନ୍ଦିର ତ୍ରାସ୍ତବ୍ଧ ଓ ଆଶ୍ୱସ୍ତ ହୋଇପଡ଼ିଲା ।

ଏହାପରେ ଦ୍ୱିତୀୟ ଦୃଶ୍ୟର ଆରମ୍ଭ ହେଲା । ବିଦ୍ୟେଶ୍ୱର ଦ୍ୱିତୀୟବାର ମନ୍ତ୍ରୋଚ୍ଚାରଣ କରିବା ମାତ୍ରେ ଦର୍ଶକମାନଙ୍କ ସମକ୍ଷରେ ଏକ ପୌରାଣିକ ଘଟଣା ପ୍ରତିଭାତ ହେଲା । ଦୈତ୍ୟରାଜ ହିରଣ୍ୟକଶିପୁ-ସମ୍ମୁଖରେ ନବନୀତ କୋମଳ ଶିଶୁ ପ୍ରହ୍ଲାଦ ଦଣ୍ଡାୟମାନ । ଦୈତ୍ୟର ପଦାଘାତରେ ସ୍ତମ୍ଭ ମଧ୍ୟରୁ ନରସିଂହ ରୂପୀ ଭଗବାନଙ୍କର ଆବିର୍ଭାବ ! ଜ୍ୱଳନ୍ତ ଚକ୍ଷୁ ! ବିକଟାଳ ବଦନ ! ବିଦ୍ୟୁତ୍ କାନ୍ତି ଯୁକ୍ତ କେଶର ! ମେଘମନ୍ଦ୍ର ହାସ୍ୟ ରୋଳ ! ଜଗତର ପ୍ରତି ରନ୍ଧ୍ର ପ୍ରକମ୍ପିତ ହୋଇ ଉଠିଲା । ଓଃ କି ଭୀଷଣ ସେ ଦୃଶ୍ୟ ! କି ବିଶାଳ ସେ ମୁଖବ୍ୟାଦାନ । ଗ୍ରହପୁଞ୍ଜ ସହ ବିରାଟ ବିଶ୍ୱ ଯେପରି ତନ୍ମଧ୍ୟକୁ ଆକର୍ଷିତ ହୋଇ ପଡ଼ୁଛି ! ପରମୁହୂର୍ତ୍ତରେ ହିରଣ୍ୟକଶିପୁର ବକ୍ଷ ବିଦାରଣ । ଦର୍ଶକ ବୃନ୍ଦଙ୍କ ଚକ୍ଷୁ ସ୍ୱତଃ ମୁଦ୍ରିତ—ହୃଦୟ ସ୍ତବ୍ଧ—ପ୍ରାଣ ଅସ୍ପନ୍ଦନଶୂନ୍ୟ ହୋଇ ପଡ଼ିଲା; ଭୀତି ଓ ଭକ୍ତିର ବାତ୍ୟା ମଧ୍ୟରେ ପ୍ରତ୍ୟେକର ହୃଦୟ-ତନ୍ତ୍ରୀ ପରମାଣୁବତ୍ ଦିଗଦିଗନ୍ତରେ ବିକ୍ଷିପ୍ତ ହେଲାପରି ବୋଧ ହେଲା ।

ଏହାପରେ ବିଦ୍ୟେଶ୍ୱର ମାନସାରଙ୍କୁ ସମ୍ବୋଧନ କରି କହିଲେ, "ମହାରାଜ, ଅତୀତର ଦୁଇଟି ଭୟାବହ ଘଟଣା ପରେ ଭବିଷ୍ୟତରେ ଆପଣଙ୍କର ମଙ୍ଗଳ ଜନକ ଗୋଟିଏ ମନୋରମ ଦୃଶ୍ୟ ଦେଖାଇବା ଉଚିତ ମନେ କରେ । ଅନୁମତି ହେଲେ,

ଆପଣଙ୍କ କନ୍ୟା ସଦୃଶ କୌଣସି ଯୁବତୀ ସହିତ ସକଳ ସୁଲକ୍ଷଣ ସମ୍ପନ୍ନ କୌଣସି ରାଜପୁତ୍ରଙ୍କର ଶୁଭ ବିବାହ ଦୃଶ୍ୟ ଦେଖାଇବି ।"

ବୃଦ୍ଧ ରାଜା ହୃଦୟର ଏ ନିତ୍ୟ ଅଭିଳଷିତ ଦୃଶ୍ୟ ସନ୍ଦର୍ଶନ କରିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କଲେ ଏବଂ ଦର୍ଶକବୃନ୍ଦ ଏ ସମସ୍ତ ଘଟଣା ଯେ କେବଳ ଐନ୍ଦ୍ରଜାଲିକ ମାୟା ପୂର୍ଣ୍ଣ ଏହି ଧାରଣାର ବଶବର୍ତ୍ତୀ ହୋଇ ଅତ୍ୟନ୍ତ ଆମୋଦ ବୋଧ କରିବାକୁ ଲାଗିଲେ ।

ଏହି ସମୟରେ ବିଦ୍ୟେଶ୍ୱର ସକଳପ୍ରକାର ବୈବାହିକ ଅଙ୍ଗର ଅନୁଷ୍ଠାନ କରିବାକୁ ଲାଗିଲେ । ହୋମାଗ୍ନି ସଂଯୋଜିତ ହେବାମାତ୍ରେ ମନ୍ଦିରଟି ସୁଗନ୍ଧଯୁକ୍ତ ଧୂମ ପଟଳରେ ଅନ୍ଧକାରାଚ୍ଛନ୍ନ ହୋଇଗଲା । ରାଜକୁମାରୀ ନିଜ ମାତାଙ୍କ ନିକଟରେ ଉତ୍କଣ୍ଠା ପୂର୍ଣ୍ଣ ହୃଦୟରେ ବାଳଚନ୍ଦ୍ରିକାଙ୍କ ସହ ଦଣ୍ଡାୟମାନା ହୋଇଥିଲେ । ଉପଯୁକ୍ତ ମୁହୂର୍ତ୍ତରେ ଲଜ୍ଜା ଓ ଭୟ ପରିତ୍ୟାଗ କରି ଗୁରୁଜନମାନଙ୍କ ସମ୍ମୁଖରେ ଛଳନା ମୂଳକ ପ୍ରକୃତ ବିବାହରେ ଯୋଗଦେବାକୁ ହେବ, ଏହି ଚିନ୍ତାରେ ସେ ମ୍ରିୟମାଣା ହୋଇ ପଡ଼ିଥିଲେ । କିନ୍ତୁ ଧୂମପଟଳର ସୁଯୋଗ ପାଇ ବାଳଚନ୍ଦ୍ରିକା ତାହାଙ୍କୁ ଐନ୍ଦ୍ରଜାଲିକର ମଣ୍ଡଳ ମଧ୍ୟକୁ ଠେଲି ଦେଲେ । ଏଣେ ବିଦେଶ୍ୱରଙ୍କ ଶିଷ୍ୟବର୍ଗ ମଧ୍ୟରୁ ଗୁପ୍ତବେଶଧାରୀ ରାଜବାହନ ମଧ୍ୟ ଉପସ୍ଥିତ । ସହସା ମଣ୍ଡଳ ମଧ୍ୟରେ ଦିବ୍ୟ ଆଲୋକ ଉଦ୍ଭାସିତ ହୋଇ ଉଠିଲା । କି ବିସ୍ମୟକର ବ୍ୟାପାର ! ଆଲୋକ ମଧ୍ୟରେ ଅଷ୍ଟାଦଶ ଦେବତା ଯଥୋପଯୁକ୍ତ ଆସନରେ ଉପବିଷ୍ଟ । ଏକ ପାର୍ଶ୍ୱରେ ବ୍ରାହ୍ମଣ ବୃନ୍ଦ ମନ୍ତ୍ରୋଚ୍ଚାରଣରେ ନିଯୁକ୍ତ;.ମଧ୍ୟରେ ହୋମକୁଣ୍ଡ ସମ୍ମୁଖରେ ଗ୍ରଥିତହସ୍ତ ଅବନ୍ତୀସୁନ୍ଦରୀ ଏବଂ ରାଜକୁମାର ବରକନ୍ୟା ବେଶରେ ସମାସୀନ ।

ହସ୍ତଗ୍ରନ୍ଥି ପରେ ବିବାହ ବିଧି ସମାପ୍ତ ହେଲା । ସଙ୍ଗେ ସଙ୍ଗେ ବିଦ୍ୟେଶ୍ୱର ଦଣ୍ଡାୟମାନ ହୋଇ ଦେବତାମାନଙ୍କୁ ସମ୍ବୋଧନ କରି କହିଲେ, "ହେ ଅଦ୍ଭୁତ ଦେବତାଗଣ, ଶୁଭ ହସ୍ତଗ୍ରନ୍ଥି ବିଧି ବାସ୍ତବରେ ଅତି ଉତ୍ତମ ଭାବରେ ସମାହିତ ହୋଇଅଛି । ଆପଣମାନେ ବର୍ତ୍ତମାନ ସ୍ୱସ୍ୱ ସ୍ଥାନକୁ ପ୍ରତ୍ୟାବୃତ୍ତ ହୁଅନ୍ତୁ ।"

ହଠାତ୍ ମନ୍ଦିରଟି ପୁଣି ଧୂମରାଶିରେ ପୂର୍ଣ୍ଣ ହୋଇଗଲା ଏବଂ ଏହି ଅବସରରେ ରାଜବାହନ ଏବଂ ଅବନ୍ତୀସୁନ୍ଦରୀ ଅଲକ୍ଷରେ ନିଜ ନିଜ ସ୍ଥାନକୁ ଫେରିଗଲେ ।

ବିସ୍ମିତ ଓ ସ୍ତମ୍ଭୀଭୂତ ଦର୍ଶକ ମଣ୍ଡଳୀର ସମ୍ମୋହିତ ଅବସ୍ଥା ଦୂରହେଲା । ପ୍ରତ୍ୟେକେ ବିଦ୍ୟେଶ୍ୱରଙ୍କ ଅଭୂତପୂର୍ବ ଶକ୍ତିର ବହୁ ପ୍ରଶଂସା କରିବାକୁ ଲାଗିଲେ । ରାଜା ସ୍ୱୀୟ କନ୍ୟାର ଭାବୀ ମଙ୍ଗଳ ବିଧାନ ସ୍ୱଚକ୍ଷୁରେ ଦେଖି ଆଶାତିରିକ୍ତ ମୁଗ୍ଧ ହୋଇ ଯାଇଥିଲେ । ସେ ସଙ୍ଗେ ସଙ୍ଗେ ଐନ୍ଦ୍ରଜାଲିକଙ୍କ ବହୁ ଧନରତ୍ନ ପୁରସ୍କାର ଦେଇ ବିଦାୟ ଦେଲେ ।

## (୧୪)

# ବନ୍ଦୀ ରାଜବାହନ

ବୀରଶେଖର ଇକ୍ଷ୍ୱାକୁ ବଂଶୀୟ ରାଜା । ସେ ଉଜ୍ଜୟିନୀର ରାଜା ଦର୍ପସାରଙ୍କର ଅନ୍ତରଙ୍ଗ ବନ୍ଧୁ । ଦର୍ପସାର ପ୍ରତିଜ୍ଞା କରିଥିଲେ ଯେ ବୀରଶେଖରଙ୍କ ସହିତ ନିଜ ଭଗିନୀ ଅବନ୍ତୀସୁନ୍ଦରୀଙ୍କୁ ବିବାହ ଦେବେ । କିନ୍ତୁ କିଛିଦିନ ପରେ ସେ ହିମାଳୟରେ ତପସ୍ୟା କରିବା ନିମିତ୍ତ ଚାଲିଗଲେ । ବୀରଶେଖର ଜଣେ ବିଦ୍ୟାଧରଙ୍କର ପ୍ରପୌତ୍ର । ତାଙ୍କଠାରେ କେତେକ ଦୈବୀ ଶକ୍ତି ଥିଲା । ତାହାର ବଳରେ ସେ ଜାଣି ପାରିଥିଲେ ଯେ ଦର୍ପସାର ସମଗ୍ର ଆର୍ଯ୍ୟାବର୍ତ୍ତର ଅଧୀଶ୍ୱର ହେବା ନିମନ୍ତେ ଯେଉଁ ତପସ୍ୟା କରୁଛନ୍ତି ତାହା ସମ୍ପୂର୍ଣ୍ଣ ହେବା ବହୁ ସମୟସାପେକ୍ଷ । ତେଣୁ ତାହାଙ୍କର ବିବାହ ଯଥାଶୀଘ୍ର ସମ୍ପନ୍ନ କରିଦେବା ପାଇଁ ସେ ଦର୍ପସାରଙ୍କୁ ଅନୁରୋଧ କଲେ । ଏଥିରେ ସ୍ୱୀକୃତ ହୋଇ ଦର୍ପସାର ନିଜର ପ୍ରତିନିଧି ଚଣ୍ଡବର୍ମାଙ୍କ ନିକଟକୁ ଗୋଟିଏ ଆଦେଶ ପତ୍ର ପ୍ରେରଣ କଲେ ।

ଚଣ୍ଡବର୍ମା ଆଦେଶ ପତ୍ର ପାଇ ବୀରଶେଖରଙ୍କୁ ବିଶେଷ ଆଦର ସତ୍କାରରେ ଗ୍ରହଣ କଲେ । ବୃଦ୍ଧ ରାଜାରାଣୀ ମଧ୍ୟ ତାହାଙ୍କଠାରେ ଅତ୍ୟନ୍ତ ପ୍ରୀତ ହୋଇ ନିଜକନ୍ୟା ସହିତ ବିବାହ ପ୍ରସ୍ତାବରେ ସମ୍ମତି ଜଣାଇଲେ । କିନ୍ତୁ ଅବନ୍ତୀସୁନ୍ଦରୀ ଏଥିରେ ମର୍ମାହତ ହୋଇ

ଘୋର ଅମତ ପ୍ରକାଶ କଲେ । ତାହାଙ୍କ ନିକଟରେ ସକଳ ପ୍ରକାର ଯୁକ୍ତି ଓ ଭୀତିପ୍ରଦର୍ଶନ ନିଷ୍ଫଳ ହେଲା । ଏହାର କାରଣ କେହି ଅନୁମାନ କରି ପାରିଲେ ନାହିଁ । ଶେଷରେ ତାହାଙ୍କ ଇଚ୍ଛା ବିରୁଦ୍ଧରେ ମଧ୍ୟ ବିବାହ ଦେବା ନିମିତ୍ତ ଚଣ୍ଡବର୍ମା ନିଷ୍ପତ୍ତି କଲେ । ଏ ଘଟଣାରେ ବୀରଶେଖର ପ୍ରଥମେ ସନ୍ଦେହ କଲେ ଯେ ରାଜକୁମାରୀ ହୁଏତ ଅନ୍ୟ କାହା ସହିତ ଗୁପ୍ତ ପ୍ରଣୟସୂତ୍ରରେ ଆସକ୍ତା ଥିବେ । ପରେ ଐନ୍ଦ୍ରଜାଲିକ ବିବାହ ଘଟଣା ଅବଗତ ହେବାମାତ୍ରେ ସେ ସ୍ପଷ୍ଟ ବୁଝି ପାରିଲେ ଯେ ଛଳନା ପୂର୍ଣ୍ଣ ଐନ୍ଦ୍ରଜାଲିକ କ୍ରୀଡ଼ା ମଧ୍ୟରେ ପ୍ରଚ୍ଛନ୍ନ ବେଶଧାରୀ କୌଣସି ରାଜପୁତ୍ର ବା ବୀରପୁରୁଷ ସହିତ ତାହାଙ୍କର ପ୍ରକୃତ ବିବାହ ହୋଇଯାଇଛି । ସେ ନିଜର ଶକ୍ତି ବଳରେ ଚିନ୍ତା କରି ଦେଖିଲେ, ପୁଷ୍ପୋଦ୍ଭବଙ୍କ ବନ୍ଧୁ ବ୍ରାହ୍ମଣ ଯୁବକହିଁ ସେହି ବ୍ୟକ୍ତି । ସେ ଏହାର ପ୍ରତିଶୋଧ ନେବା ପାଇଁ ବଦ୍ଧପରିକର ହେଲେ । ସେହି ଦିନ ରାତ୍ରିକାଳରେ ସେ ପୁଷ୍ପୋଦ୍ଭବଙ୍କ ପ୍ରାସାଦ ମଧ୍ୟରେ ଗୁପ୍ତ ଭାବରେ ପ୍ରବେଶ କରି ଏକ ରୌପ୍ୟ ଶୃଙ୍ଖଳ ଦ୍ୱାରା ରାଜବାହନଙ୍କ ପଦ ଦୁଇଟିକୁ ଆବଦ୍ଧ କରିଦେଲେ । ଏହି ଶୃଙ୍ଖଳର ଏକ ବିଶେଷ ଗୁଣ ଥିଲା । ଏ ଶୃଙ୍ଖଳ ଦ୍ୱାରା ଆବଦ୍ଧ ବ୍ୟକ୍ତିକୁ ଜଗତର କୌଣସି ଶକ୍ତି ମୁକ୍ତ କରି ପାରିବ ନାହିଁ । ବୀରଶେଖର ଏକ ବିଶେଷ ଘଟଣାରେ ତାହା ପାଇଥିଲେ ଏବଂ ସେ ଜାଣିଥିଲେ ଯେ ଜଣେ ଦେବ କନ୍ୟା କୌଣସି ତପସ୍ୱୀଙ୍କ ଅଭିଶାପରେ ଏ ଶୃଙ୍ଖଳରେ ପରିଣତ ହୋଇଛି । ଅଳ୍ପ ମଧ୍ୟ ତାହାଙ୍କର ଧାରଣା ଥିଲା ଯେ ଏ ଅଭିଶାପ ନିଶ୍ଚୟ ଦୀର୍ଘକାଳ ସ୍ଥାୟୀ ହେବ । ସୁତରାଂ ରାଜବାହନ ଯେ ବହୁକାଳାବଧି ଏହି ଭାବରେ ବନ୍ଦୀ ହୋଇ ଅକର୍ମଣ୍ୟ ତଥା ଜନ ସାଧାରଣଙ୍କର ଉପହାସର ପାତ୍ର ହେବେ ଏଥିରେ ତାହାଙ୍କର ସନ୍ଦେହ ରହିଲା ନାହିଁ ।

ପର ଦିବସ ପ୍ରଭାତରେ ବୀରଶେଖର ଚଣ୍ଡବର୍ମାଙ୍କ ନିକଟକୁ ଯାଇ ଗତ ରାତ୍ରିରେ ସେ ଏକ ବିଚିତ୍ର ସ୍ୱପ୍ନ ଦେଖିଥିବା କଥା କହିଲେ । ସ୍ୱପ୍ନରୁ ତାହାଙ୍କର ଅନୁମାନ ହେଲା, ଅବନ୍ତୀସୁନ୍ଦରୀ ଗୁପ୍ତ ଭାବରେ ଅଥଚ ରାଜଦରବାର ସମ୍ମୁଖରେ କୌଣସି ଜଣେ ଅଜ୍ଞାତ ବ୍ୟକ୍ତିକୁ ବିବାହ କରିଛନ୍ତି । ସେହି ବ୍ୟକ୍ତି ବର୍ତ୍ତମାନ ରାଜଧାନୀର କୌଣସି ସ୍ଥାନରେ ଅବସ୍ଥାନ କରୁଅଛନ୍ତି । ତାହାର ପାଦ ଦୁଇଟି ଏକ ରୌପ୍ୟ ଶୃଙ୍ଖଳଦ୍ୱାରା ଆବଦ୍ଧ ହୋଇ ପଡ଼ିଛି । ଏକଥା ଶୁଣି ଐନ୍ଦ୍ରଜାଲିକ ବିବାହ କଥା ଚଣ୍ଡବର୍ମାଙ୍କ ମାନସ ପଟରେ ବିଦ୍ୟୁତ୍ ରେଖାଭଳି ଖେଳିଗଲା । ବର୍ତ୍ତମାନ ସେ ବୁଝିପାରିଲେ ଐନ୍ଦ୍ରଜାଲିକ-ବିବାହ ଛଳନା ମୂଳକ ନୁହେଁ, ସତ୍ୟ ଘଟଣା । ତେଣୁ ସେହି ମୁହୂର୍ତ୍ତରେ ରୌପ୍ୟ ଶୃଙ୍ଖଳଦ୍ୱାରା ଅବଦ୍ଧ ଯୁବକର ତଥ୍ୟ ସଂଗ୍ରହ କରିବା ପାଇଁ ସେ ନଗର ମଧ୍ୟକୁ ଗୁପ୍ତଚର ପ୍ରେରଣ କଲେ ।

ପୁଷ୍ପୋଦ୍ଭବଙ୍କ ବ୍ରାହ୍ମଣ ବନ୍ଧୁ ଗତ ରାତିରୁ ଏକ ବିଚିତ୍ର ରୌପ୍ୟ ଶୃଙ୍ଖଳଦ୍ୱାରା ଅବଦ୍ଧ ହୋଇ ପଡ଼ିଥିବା କଥା ସେତେବେଳକୁ ସହରରେ ରାଷ୍ଟ୍ର ହୋଇ ଯାଇଥିଲା । ଦୂତଗଣ ଅତି ଅନାୟାସରେ ଏ ସମ୍ବାଦ ନେଇ ଚଣ୍ଡବର୍ମାଙ୍କ ନିକଟକୁ ଫେରିଲେ । ଦୂତ ମୁଖରୁ ପ୍ରକୃତ ସମ୍ବାଦ ପାଇ ଏବଂ ଏ ଷଡ଼୍‌ଯନ୍ତ୍ରମୂଳକ ଐନ୍ଦ୍ରଜାଲିକ ବିବାହ କାଳୀନ ସମସ୍ତ ଘଟଣା ସ୍ମରଣକରି ଚଣ୍ଡବର୍ମା ପ୍ରଚଣ୍ଡ ହୋଇ ଉଠିଲେ । ସେ ସଙ୍ଗେ ସଙ୍ଗେ ଘୋଷଣା କଲେ ଯେ ଷଡ଼୍‌ଯନ୍ତ୍ରକାରୀକୁ ପ୍ରାଣଦଣ୍ଡ ଦିଆଯିବ ଓ ପୁଷ୍ପୋଦ୍ଭବଙ୍କ ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରି ତାହାଙ୍କୁ ରାଜ୍ୟରୁ ନିର୍ବାସିତ କରାଯିବ । ଚଣ୍ଡବର୍ମାଙ୍କ ପ୍ରତିଜ୍ଞା କଥା ଶୁଣି ବାଳଚନ୍ଦ୍ରିକା ନିଜ ଗୃହକୁ ଦୌଡ଼ିଯାଇ ଉଭୟ ବନ୍ଧୁଙ୍କୁ ସମସ୍ତ ବ୍ୟାପାର ଜଣାଇଦେଲେ । ଏକଥା ଶୁଣି ରାଜବାହନ କହିଲେ, "ବନ୍ଧୁ ପୁଷ୍ପୋଦ୍ଭବ, ତୁମେ

ଯଥାଶୀଘ୍ର ଏ ସ୍ଥାନ ପରିତ୍ୟାଗ କରି କୌଣସି ନିରାପଦ ସ୍ଥାନକୁ ଚାଲିଯାଅ । ମୁଁ ଜାଣେ ଚଣ୍ଡବର୍ମା ସମସ୍ତ ପ୍ରତିଜ୍ଞା ସତ୍ତ୍ୱେ ମୋହର କୌଣସି କ୍ଷତି କରି ପାରିବ ନାହିଁ ଏବଂ ଦୁଇମାସ ପରେ ମୁଁ ଏ ବନ୍ଧନରୁ ମୁକ୍ତ ହେବି । ତୁମେ ମୋ ସମ୍ବନ୍ଧେ କୌଣସି ଚିନ୍ତା କରନାହିଁ ।"

ପୁଷ୍ପୋଦ୍ଭବ ବନ୍ଧୁ ଓ ପତ୍ନୀଙ୍କଠାରୁ ବିଦାୟ ନେଇ କେତେକ ଧନରତ୍ନ ସହ ଅନତି ବିଳମ୍ବେ ରାଜଧାନୀ ପରିତ୍ୟାଗ କରି ପଳାୟନ କଲେ ଏବଂ ବାଳଚନ୍ଦ୍ରିକା ରାଜପ୍ରାସାଦକୁ ଫେରି ଆସି ରାଜକୁମାରୀଙ୍କୁ ଏ ଆକସ୍ମିକ ବିପଦରେ ଧୈର୍ଯ୍ୟ ଧରିବା ନିମିତ୍ତ ସାନ୍ତ୍ୱନା ଦେବାକୁ ଲାଗିଲେ । ଏହାର କିଛିକ୍ଷଣ ପରେ ଚଣ୍ଡବର୍ମାଙ୍କ ଅନୁଚରଗଣ ରାଜବାହନଙ୍କୁ ବନ୍ଦୀ କରି ନେଇଗଲେ । ସେମାନେ ତାହାଙ୍କୁ ଜଣାଇ ଦେଲେ ଯେ ଚଣ୍ଡବର୍ମା ତାହାଙ୍କର ପ୍ରାଣଦଣ୍ଡର ଆଦେଶ କରିଅଛନ୍ତି; ପରଦିବସ ପ୍ରଭାତ କାଳରେ ସେ ଆଦେଶ କାର୍ଯ୍ୟରେ ପରିଣତ ହେବ । ଏହାପରେ ଅନୁଚର ଗଣ ପୁଷ୍ପୋଦ୍ଭବଙ୍କର ସମସ୍ତ ସମ୍ପତ୍ତି ବାଜାପ୍ତି କରି ତାହାଙ୍କର ଅନୁସନ୍ଧାନ କରିବାକୁ ଲାଗିଲେ ।

ଏ ଦୁର୍ଘଟଣାରେ ବିଶେଷ ପରିମାଣରେ ବିଚଳିତ ହୋଇ ପଡ଼ିଥିଲେ ଅବନ୍ତୀସୁନ୍ଦରୀଙ୍କ ପିତାମାତା । ସେମାନେ ନିଜ କନ୍ୟାଠାରୁ ଆମୂଳଚୂଳ ପ୍ରକୃତ ବୃତ୍ତାନ୍ତ ପାଇ ଶୁଣି ରାଜବାହନଙ୍କ ଜୀବନ ରକ୍ଷା କରିବାପାଇଁ ଯଥାସମ୍ଭବ ଚେଷ୍ଟା କରିବାକୁ ଲାଗିଲେ । ସେମାନେ ଚଣ୍ଡବର୍ମାଙ୍କ ନିକଟକୁ ସମ୍ବାଦ ଦେଲେ ଯେ ବନ୍ଦୀ ଯୁବକଙ୍କୁ ଯେ କୌଣସି କାରଣରୁ ହେଉ ପ୍ରାଣଦଣ୍ଡ ଦେବାକୁ ହେବ ନାହିଁ । ସେମାନେ ତାହାଙ୍କର ଏକମାତ୍ର କନ୍ୟାର ବୈଧବ୍ୟ

ଅବସ୍ଥା ଦର୍ଶନ କରିବା ପୂର୍ବରୁ ଅତ୍ମହତ୍ୟା କରିବା ପାଇଁ କୃତସଙ୍କଳ୍ପ ହେଲେ ।

ଏପରି ଏକ ଅନତିକ୍ରମଣୀୟ ବାଧାର ସମ୍ମୁଖୀନ ହୋଇ ଚନ୍ଦ୍ରବର୍ମା ବାଧ୍ୟତଃ ନିଜ ପ୍ରତିଜ୍ଞାରୁ ବିରତ ହେଲେ । ସେ ଯୁବକଙ୍କୁ ଏକ କାଷ୍ଠ ପିଞ୍ଜରା ମଧ୍ୟରେ ଆବଦ୍ଧ କରି ରଖିବା ନିମିତ୍ତ ଆଦେଶ କଲେ ଏବଂ ପାନାହାର ନିଷେଧ କରିଦେଲେ । ସେ ମନେ ମନେ ନିଶ୍ଚୟ କଲେ ଯେ ପାନାହାର ଅଭାବରୁ ଯୁବକ ସ୍ୱତଃ ମୃତ୍ୟୁ ମୁଖରେ ପତିତ ହେବ ।

ଚନ୍ଦ୍ରବର୍ମା ଏକ ପତ୍ରରେ ଏ ସମସ୍ତ ଘଟଣା ବିବୃତ କରି ଓ ଆଦେଶ ପ୍ରାର୍ଥନା କରି ଦର୍ପସାରଙ୍କ ନିକଟକୁ ଦୂତ ପ୍ରେରଣ କଲେ । ଏହାପରେ ଅନେକ ଦିବସ ଗତ ହୋଇଗଲା । ଅଥଚ ପାନାହାରର ଅଭାବରେ ମଧ୍ୟ ବନ୍ଦୀଠାରେ କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ । ସେ ପୂର୍ବପରି ସତେଜ, ସବଳ ଓ ସହାସ୍ୟ ମୁଖରେ ଦିନାତିପାତ କରୁଥିବା ଦେଖି ଚନ୍ଦ୍ରବର୍ମା ବିସ୍ମିତ ହୋଇ ପଡ଼ିଲେ । ରାଜବାହନ ପାତାଳପୁରରୁ ଯେଉଁ ମଣିଟି ଉପହାର ପାଇଥିଲେ ତାହାକୁ ନିଜର କେଶ ମଧ୍ୟରେ ଲୁକ୍କାୟିତ ରଖିଥିଲେ । ଏହି ମଣିର ପ୍ରଭାବରେ ସେ କ୍ଷୁଧାତୃଷାର ବାଧା ଅନୁଭବ କରୁ ନ ଥିଲେ ।

ଇତି ମଧ୍ୟରେ ଚନ୍ଦ୍ରବର୍ମା ଅଙ୍ଗଦେଶ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଅଙ୍ଗରାଜ ସିଂହଘୋଷ ନିଜକନ୍ୟା ଅମ୍ବାଳିକାଙ୍କୁ ଚନ୍ଦ୍ରବର୍ମାଙ୍କ ସହିତ ବିବାହ ଦେବାପାଇଁ ସ୍ୱୀକୃତ ହେଲେନାହିଁ । ସୁତରାଂ ଚନ୍ଦ୍ରବର୍ମା ଅଙ୍ଗ ଅଧିକାର କରି ବଳପୂର୍ବକ ଅମ୍ବାଳିକାଙ୍କୁ

ବିବାହକରିବା ପାଇଁ ସସୈନ୍ୟ ଯୁଦ୍ଧଯାତ୍ରା କଲେ । ଅଙ୍ଗ ରାଜଧାନୀ ଚମ୍ପାନଗରୀ ଅବରୁଦ୍ଧ ହେଲା । ଏହା ପୂର୍ବରୁ ସିଂହଘୋଷ ନିଜର ମିତ୍ର ରାଜ୍ୟମାନଙ୍କୁ ସାହାଯ୍ୟ ପ୍ରାର୍ଥନା କରି ଦୂତ ପ୍ରେରଣ କରିଥିଲେ । ସେ ଇଚ୍ଛା କରିଥିଲେ ସୁଦୃଢ଼ ଚମ୍ପାନଗରୀ ମଧ୍ୟରେ ମିତ୍ର ପକ୍ଷମାନଙ୍କର ଆଗମନ ପର୍ଯ୍ୟନ୍ତ ନିରାପଦରେ ଅପେକ୍ଷା କରି ପାରିଥାନ୍ତେ । କିନ୍ତୁ ଏପରି ଅବରୁଦ୍ଧ ହୋଇ ରହିବା ଅପମାନ ଜନକ ମନେକରି ସେ ଦୁର୍ଗ ବାହାରେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ଫଳତଃ ସେ ଅତି ଅନାୟାସରେ ପରାସ୍ତ ଏବଂ ବନ୍ଦୀହେଲେ । ଚଣ୍ଡବର୍ମା ନଗର ମଧ୍ୟରେ ପ୍ରବେଶକରି ରାଜପ୍ରାସାଦ ଅଧିକାର କରିବା ସଙ୍ଗେ ସଙ୍ଗେ ପରଦିନ ଅମ୍ବାଳିକାଙ୍କ ସହିତ ତାହାଙ୍କର ବିବାହର ଆୟୋଜନ କରିବାକୁ ଲାଗିଲେ ।

ସେହି ଦିନ ଦର୍ପସାରଙ୍କ ଉତ୍ତର ସହ ଦୂତ ପ୍ରତ୍ୟାଗତ ହେଲା । ସେ ପତ୍ରରେ ଆଦେଶ କରିଥିଲେ ଯେ ଜଣେ ଅଜ୍ଞାତ କୁଳଶୀଳ ବ୍ୟକ୍ତି ଉଜ୍ଜୟିନୀ ପ୍ରାସାଦରେ ଷଡ଼୍‌ଯନ୍ତ୍ରର ସୂତ୍ରପାତ କରିପାରିବା ଅତ୍ୟନ୍ତ କ୍ଷୋଭର କଥା । ସେ ଧୃତ ହେବା ମାତ୍ରେ ତାହାକୁ ପ୍ରାଣଦଣ୍ଡ ଦେବା ଉଚିତ ଥିଲା । ବୃଦ୍ଧ ପିତାମାତାଙ୍କର ଭକ୍ତିହୀନ ପ୍ରତିବାଦ ପ୍ରତି ଭ୍ରୂକ୍ଷେପ ନକରି ଯୁବକଙ୍କୁ ହସ୍ତୀ ପଦତଳେ ନିକ୍ଷେପିତ କରି ହତ୍ୟାକର । ଲଜ୍ଜାହୀନା, ପାପିଷ୍ଠା ଅବନ୍ତୀସୁନ୍ଦରୀ ଓ କନିଷ୍ଠ ଭ୍ରାତା କୀର୍ତ୍ତିସାରଙ୍କୁ ବନ୍ଦୀଶାଳାରେ ନିକ୍ଷେପ କର; ନଚେତ୍ କୀର୍ତ୍ତିସାର ମୂର୍ଖ ପିତାମାତାଙ୍କର ଓ ଦୁଷ୍ଟରିତ୍ରା ଭଗିନୀର ପକ୍ଷପାତୀ ହୋଇ ଅନର୍ଥ ସୃଷ୍ଟି କରିପାରେ ।

ଚଣ୍ଡବର୍ମା ନିଜ ସଙ୍ଗରେ ରାଜବାହନଙ୍କୁ ନେଇ ଆସିଥିଲେ । କାଷ୍ଠ ପିଞ୍ଜରା ମଧ୍ୟରେ ତାହାଙ୍କୁ ଶାନ୍ତଶିଷ୍ଟ ଓ ହୃଷ୍ଟପୁଷ୍ଟ ଦେଖି

ତାହାଙ୍କର ଅଧିକ ଗାର୍ବଦାହ ହେଉଥାଏ । ସେ ଦର୍ପଯାରଙ୍କ ପଦ ପାଇବା ପରଦିନ ରାଜବାହନଙ୍କ ପ୍ରାଣଦଣ୍ଡର ଆଦେଶ କଲେ । ପ୍ରାଣଦଣ୍ଡାଜ୍ଞାରେ ସେ ସୂଚନା ଦେଲେ ଯେ ପ୍ରଭାତକାଳରେ ତାହାଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେବା ପୂର୍ବରୁ ଦୋଷୀକୁ ଏକ ଗର୍ତ୍ତ ମଧ୍ୟରେ ଆକଣ୍ଠ ପ୍ରୋଥିତ ଅବସ୍ଥାରେ ରଖିବାକୁ ହେବ । ସେ ସ୍ୱୟଂ ହସ୍ତୀ ପୃଷ୍ଠରେ ଆରୋହଣ କରି ହସ୍ତୀ ପଦତଳେ ତାହାର ମସ୍ତକକୁ ନିଷ୍ପେଷିତ କରିବେ ।

ପରଦିବସ ପ୍ରଭାତରେ ରାଜବାହନଙ୍କୁ କାଷ୍ଠ ପିଞ୍ଜରା ମଧ୍ୟରୁ ବହିଷ୍କୃତ କରି ବଧ ଭୂମିର ଗର୍ତ୍ତ ନିକଟକୁ ନିଆଗଲା । ନିକଟରେ ଏକ ସୁସଜ୍ଜିତ ହସ୍ତୀ ଦଣ୍ଡାୟମାନ ହୋଇଥାଏ । ଠିକ୍ ଏହି ସମୟରେ ତାହାଙ୍କର ରୌପ୍ୟ ଶୃଙ୍ଖଳ ସ୍ୱତଃ ଛିନ୍ନ ହୋଇ ଭୂତଳରେ ପତିତ ହୋଇଗଲା ଏବଂ ସେଠାରେ ଗୋଟିଏ ଜ୍ୟୋତିର୍ମୟୀ ନାରୀମୂର୍ତ୍ତି ତାହାଙ୍କ ସମକ୍ଷରେ ପ୍ରାଦୁର୍ଭୂତ ହେଲା । ଅନ୍ୟମାନଙ୍କର ଅଜ୍ଞାତ, ଅଦୃଷ୍ଟ ଏବଂ ଅଶ୍ରୁତ ଭାବରେ ନାରୀମୂର୍ତ୍ତି ବିନୀତ କୋମଳ କଣ୍ଠରେ ରାଜବାହନଙ୍କୁ କହିଲା, "ହେ ରାଜକୁମାର, ମୋହର ଆତ୍ମକାହାଣୀ ଶୁଣିବା ହୁଅନ୍ତୁ । ମୁଁ ଗନ୍ଧର୍ବରାଜ ସୋମ-ରଶ୍ମିଙ୍କ କନ୍ୟା । ମୋହର ନାମ ସୁରତମଞ୍ଜରୀ । ଏକଦା ମୁଁ ହିମାଳୟର ମନ୍ଦୋଦାଙ୍କ ହ୍ରଦ ଉପରେ ଆକାଶ ମାର୍ଗରେ ଗତି କରୁଥିଲି । ଏତିକି ବେଳେ ଦୁଇଟି ରାଜହଂସ କମଳ ଭ୍ରମରେ ମୋହର ମୁଖର ନିକଟବର୍ତ୍ତୀ ହୁଅନ୍ତେ ମୁଁ ସେମାନଙ୍କୁ ତାଡ଼ନା କରିବାକୁ ଚେଷ୍ଟା କରିବାରୁ ମୋହର ସ୍ୱର୍ଣ୍ଣକଙ୍କଣ ସ୍ଖଳିତ ହୋଇ ପଡ଼ିଲା । ସେତେବେଳେ ମାର୍କଣ୍ଡେୟ ଋଷି ଏହି ହ୍ରଦକୂଳରେ ସାବିତ୍ର୍ୟୋପାସନା କରୁଥିଲେ । ଦୁର୍ଭାଗ୍ୟ ବଶତଃ କଙ୍କଣଟି ତାହାଙ୍କ ଉପରେ ପଡ଼ିଲା । ନିତ୍ୟକର୍ମରେ ବାଧାଜାତ ହେବାରୁ ଋଷି କ୍ରୁଦ୍ଧ



ବଧ ଭୂମିରେ ରାଜବାହନ

ହୋଇ ଅଭିଶାପ ଦେଲେ ଯେ, ଯେଉଁ ବ୍ୟକ୍ତି ତାହାଙ୍କ ଉପାସନାରେ ବାଧାଦେଲା, ସେ ଏକ ରୌପ୍ୟ ଶୃଙ୍ଖଳରେ ପରିଣତ ହେଉ । ଏ ଘଟଣା ଜାଣିପାରି ମୁଁ ଋଷିଙ୍କ ପାଦତଳେ ପଡ଼ି କ୍ଷମାପ୍ରାର୍ଥନା କଲି । ମୋହର ପ୍ରାର୍ଥନାରେ ପ୍ରୀତ ହୋଇ ଋଷି ଆଦେଶ କଲେ ଯେ ତାହାଙ୍କ ଅଭିଶାପ ଦୁଇମାସ ପାଇଁ ମାତ୍ର ସ୍ଥାୟୀ ହେବ ଏବଂ ଅଭିଶପ୍ତାବସ୍ଥାରେ ମୋହର ଚୈତନ୍ୟ ଲୁପ୍ତ ହେବନାହିଁ । ମୁଁ ଶୃଙ୍ଖଳ ଆକାରରେ ସେଠାରେ ପଡ଼ିରହିଥିବା ଅବସ୍ଥାରେ ଯୁବରାଜ ବୀରଶେଖର ମୋତେ ଉଠାଇ ଆଣିଲେ । ସେ ଜଣେ ବିଦ୍ୟାଧରଙ୍କର ପ୍ରପୌତ୍ର । ସେ ଅବନ୍ତୀସୁନ୍ଦରୀଙ୍କ ପାଣିଗ୍ରହଣ କରିବା ପାଇଁ ଦର୍ପସାରଙ୍କ ଅନୁମତି ପାଇଥିଲେ । କିନ୍ତୁ ଅବନ୍ତୀ-ସୁନ୍ଦରୀ ଏଥିରେ ଅମତ ପ୍ରକାଶ କରିବାରୁ ସେ ପ୍ରତିହିଂସା ସାଧନ କରିବା ଉଦ୍ଦେଶ୍ୟରେ ଗୁପ୍ତ ଭାବରେ ପୁଷ୍ପୋଦ୍ଭବଙ୍କ ପ୍ରାସାଦରେ ପ୍ରବେଶକରି ଶୃଙ୍ଖଳଟିଦ୍ୱାରା ଆପଣଙ୍କୁ ଆବଦ୍ଧ କଲେ । ଏହାପରେ ଯାହା ଘଟିଛି ଆପଣ ଜାଣନ୍ତି । ଯାହା ହେଉ ଆଜି ମୋହର ଅଭିଶାପର ଅବସାନ ହୋଇଛି । ମୁଁ ମୋହର ନିଜ ଶରୀର ଫେରି ପାଇଅଛି । ମୋ ଯୋଗୁଁ ଏ ଦୁଇ ମାସ ଆପଣଙ୍କୁ ପରାଧୀନତା ଭୋଗ କରିବାକୁ ହୋଇଛି । ବର୍ତ୍ତମାନ ଦୟାପୂର୍ବକ କହନ୍ତୁ, ମୁଁ ଆପଣଙ୍କ ପାଇଁ କଅଣ କରିପାରେ ?"

ରାଜବାହନ ଜାଣନ୍ତି, ସେ ନିଜର ପୂର୍ବଜନ୍ମାର୍ଜିତ ଫଳକୁ ବର୍ତ୍ତମାନ ସୁଖ-ଦୁଃଖ ଭାବରେ ଭୋଗୁକରୁଅଛନ୍ତି । ତେଣୁ କେବଳ ତାହାଙ୍କର ଶୃଙ୍ଖଳମୁକ୍ତି ସମ୍ବାଦ ଅବନ୍ତୀସୁନ୍ଦରୀଙ୍କୁ ଜଣାଇ ଦେବା ନିମିତ୍ତ ସେ ସୁରତମଞ୍ଜରୀଙ୍କୁ ଆଦେଶ କଲେ ।

ଏହି ସମୟରେ ସହସା ଏକ ଭୀଷଣ କୋଲାହଳ ନଗର ମଧ୍ୟରୁ ଶୁଣାଗଲା ଏବଂ ନାଗରିକଗଣ ଇତସ୍ତତଃ ପଳାୟନ କରୁଥିବା

ଦେଖାଗଲା । ଭୀତିଗ୍ରସ୍ତ ଜନତା ମୁଖରୁ ଶୁଣାଗଲା ଯେ ଚଣ୍ଡବର୍ମା ବିବାହ କରିବା ପାଇଁ ବର ବେଶରେ ଭୂଷିତ ହେଉଥିବେଳେ ଜଣେ ଦସ୍ୟୁ ପ୍ରାସାଦ ମଧ୍ୟରେ ପ୍ରବେଶ କରି ତାହାଙ୍କୁ ହତ୍ୟା କରିଅଛି । ଏ ସମ୍ବାଦ ପାଇ ରାଜବାହନଙ୍କ ପ୍ରହରୀଗଣ ତାହାଙ୍କୁ ପରିତ୍ୟାଗ କରି ପ୍ରାସାଦ ଦିଗରେ ଧାବମାନ ହେଲେ । ଏହି ଅବସରରେ ରାଜବାହନ ଲମ୍ଫପ୍ରଦାନ ପୂର୍ବକ ନିକଟସ୍ଥ ହସ୍ତୀ ପୃଷ୍ଠରେ ଆରୋହଣ କରି ଏକ ଧକ୍କାରେ ମାହୁନ୍ତକୁ ଭୂପତିତ କଲେ । ସେ ସ୍ୱହସ୍ତରେ ଅଙ୍କୁଶ ଧରି ମହାବେଗରେ ହସ୍ତୀକୁ ରାଜଧାନୀ ମଧ୍ୟକୁ ଚଳାଇଲେ । ସେ ସମ୍ମୁଖରେ ଦେଖିଲେ ଜଣେ ଯୁବକ କୃପାଣହସ୍ତରେ ଦଳେ ସୈନ୍ୟଙ୍କୁ ଗୋଟିଗୋଟି କରି ବିତାଡ଼ିତ କରି ଆଣୁଛି । ସେ ହସ୍ତୀକୁ ତାହାଙ୍କର ନିକଟବର୍ତ୍ତୀ କରି ତଦୁପରି ଆରୋହଣ କରିବା ନିମିତ୍ତ ଆହ୍ୱାନ କରି କହିଲେ, "ହେ ବୀର ଯୁବକ, ମୋତେ ତୁମର ବନ୍ଧୁ ମନେ କରି ଗଜାରୋହଣ କର । ଆମେ ଦୁହେଁ ନିମିଷକ ମଧ୍ୟରେ ଏ ଶତ୍ରୁସାଗରକୁ ନିଃଶେଷ କରିଦେଇ ପାରିବା ।"

ଏକାକୀ ବହୁ ସମୟ ବ୍ୟାପୀ ଚତୁର୍ଦ୍ଦିଗରୁ ଶତ୍ରୁମାନଙ୍କୁ ପ୍ରତିହତ କରି ଯୁବକ କ୍ରମେ କ୍ଳାନ୍ତ ହୋଇ ପଡ଼ିଥିଲେ । ତେଣୁ ସେ ଆନନ୍ଦ-ମନରେ ହସ୍ତୀ ପୃଷ୍ଠରେ ଆରୋହଣ କରନ୍ତେ ରାଜବାହନ ବିସ୍ମୟ-ବିସ୍ଫାରିତ ନେତ୍ରରେ ଦେଖିଲେ ଯେ ସେହି ମହା ବିକ୍ରମଶାଳୀ ଯୁବକ ତାହାଙ୍କର ବନ୍ଧୁ ଅପହାରବର୍ମା । ରାଜବାହନଙ୍କ ଅନ୍ତରରେ ଆନନ୍ଦର ତରଙ୍ଗ ଉଦ୍ବେଳିତ ହୋଇ ଉଠିଲା । ଅପହାରବର୍ମା ରାଜବାହନଙ୍କୁ ପାଇ ଶତଗୁଣ ଉତ୍ସାହିତ ହୋଇ ଉଠିଲେ । କିନ୍ତୁ କେହି ବାକ୍ୟବ୍ୟୟ କରିବାର ସମୟ ପାଇଲେ ନାହିଁ । ଉଭୟେ ହସ୍ତୀପୃଷ୍ଠରେ ରକ୍ଷିତ ଥିବା ଧନୁ, ଶର, ଚକ୍ର, କଣପ, କର୍ପଣ, କୁନ୍ତ, ପଟ୍ଟିଶ, ମୁଷଳ ଏବଂ ତୋମର ପ୍ରଭୃତି ଚଣ୍ଡବର୍ମାଙ୍କର ଅସ୍ତ୍ର—

ଶସ୍ତ୍ର ସକଳ ଗ୍ରହଣ କରି ନିପୁଣତାର ସହିତ ଶତ୍ରୁମାନଙ୍କ ଉପରେ ନିକ୍ଷେପ କଲେ । ଅଳ୍ପ ସମୟ ମଧ୍ୟରେ ଶତ୍ରୁ ସୈନ୍ୟଗଣ ପୃଷ୍ଠଭଙ୍ଗ ଦେବାକୁ ଆରମ୍ଭ କଲେ । ଏହି ଅବସରରେ ଶତ୍ରୁ ସୈନ୍ୟର ପୃଷ୍ଠଦେଶରୁ ଅନ୍ୟ ଏକ ଯୁବକଙ୍କ ନେତୃତ୍ୱରେ ପଦାତିକ ସୈନ୍ୟଦଳ ଆକ୍ରମଣ କରୁଥିବା ଦେଖାଗଲା । ସୁତରାଂ ସେମାନେ କୌଣସି ଦଗରେ ପଳାୟନ କରିବାର ଉପାୟ ନ ପାଇ ସମୂଳେ ନିପାତ ହେଲେ ।

ଖଣ୍ଡଯୁଦ୍ଧ ଶେଷ ହୁଅନ୍ତେ ରାଜବାହନ ହସ୍ତୀ ପୃଷ୍ଠୋପରି ଅସ୍ତ୍ର ତ୍ୟାଗକରି ଅପହାରବର୍ମାଙ୍କୁ ଏହି ଯୁବକଙ୍କର ପରିଚୟ ଜିଜ୍ଞାସା କଲେ । ଠିକ୍ ସେହି ମୁହୂର୍ତ୍ତରେ ଯୁବକ ନିଜ ହସ୍ତୀକୁ ସେମାନଙ୍କର ନିକଟବର୍ତ୍ତୀ କରି ଉଭୟ ବନ୍ଧୁଙ୍କୁ ପ୍ରଣାମ କଲେ । ସେ ଅପହାରବର୍ମାଙ୍କୁ ଉଦ୍ଦେଶ୍ୟ କରି କହିଲେ, "ଆପଣଙ୍କ ଆଦେଶ ଅନୁଯାୟୀ ସମସ୍ତ କାର୍ଯ୍ୟ କରିଅଛି । ଆପଣ ମୋ ନିକଟରୁ ଏକାକୀ ଚମ୍ପା ଅଭିମୁଖେ ଧାବମାନ ହେବାପରେ ମୁଁ ଦଳେ ସୈନ୍ୟଙ୍କର ନେତୃତ୍ୱ ଗ୍ରହଣକରି ନଗର ମଧ୍ୟରେ ପ୍ରବେଶ କଲି । ଶତ୍ରୁ ବର୍ତ୍ତମାନ ସମୂଳୋତ୍ପାଟିତ ହୋଇଅଛି ।"

ରାଜବାହନଙ୍କୁ ନିଜର ଅଭିନ୍ନହୃଦୟ ବନ୍ଧୁ ଧନମିତ୍ରଙ୍କର ପରିଚୟ ଦେଇସାରି ଅପହାରବର୍ମା କହିଲେ—"ବନ୍ଧୁ ଧନମିତ୍ର, ତୁମେ ବର୍ତ୍ତମାନ ଯାଇ ରାଜା ସିଂହବର୍ମାଙ୍କୁ ମୁକ୍ତ କରିଦିଅ ।"

ଏହାପରେ ରାଜବାହନ ଏବଂ ଅପହାରବର୍ମା ବିଶ୍ରାମ କରିବା ଉଦ୍ଦେଶ୍ୟରେ ଗଙ୍ଗା କୂଳକୁ ଆଗମନ କଲେ । ଏକ ବିଶାଳ ବଟବୃକ୍ଷର ଘନଛାୟା ତଳେ ହସ୍ତୀପୃଷ୍ଠରୁ ଅବତରଣ କରି ସୁବିସ୍ତୃତ ତୂଳ ତଳ୍ପତୁଲ୍ୟ ସୁକୋମଳ ବାଲୁକା ରାଶି ଉପରେ ଉପବେଶନ

କରନ୍ତେ ଗଙ୍ଗାତରଙ୍ଗସ୍ପର୍ଶୀ ଶୀତଳ ବାୟୁପ୍ରବାହ ସେମାନଙ୍କର ସମସ୍ତ ଗ୍ଲାନି ଏବଂ ଅବସାଦ ମୁହୂର୍ତ୍ତିକ ମଧ୍ୟରେ ଅପହରଣ କରିନେଲା । ସେମାନେ ବିଶ୍ରାମ କରି ସେ ଦିନର ଆକ୍ରମଣ ଓ ପ୍ରତିଆକ୍ରମଣ କଥା ଆଲୋଚନା କରିବାକୁ ଲାଗିଲେ । ଏହି ସମୟରେ ଧନମିତ୍ର କେତେକ ଯୋଦ୍ଧୃବେଶ ପରିହିତ ପୁରୁଷଙ୍କ ସହ ସେମାନଙ୍କର ନିକଟବର୍ତ୍ତୀ ହେଉଥିବାର ସେମାନେ ଦେଖି ପାରିଲେ । ରାଜବାହନ ଦଣ୍ଡାୟମାନ ହୋଇ ଦେଖିଲେ ସେମାନେ ତାହାଙ୍କର ବନ୍ଧୁ ଉପହାରବର୍ମା, ଅର୍ଥପାଳ, ପ୍ରମତି, ମନ୍ତ୍ରଗୁପ୍ତ, ବିଶ୍ରୁତ ଏବଂ ମିଥିଳାରାଜ ପ୍ରହାରବର୍ମା, କାଶୀରାଜ କାମପାଳ ଓ ଅଙ୍ଗରାଜ ସିଂହବର୍ମା । କି ଅଭାବନୀୟ ଅପୂର୍ବ ମିଳନ !

---

।

# (୧୪)

# ଅପହାରବର୍ମାଙ୍କ କଥା

ସିଂହବର୍ମାଙ୍କ ଅନ୍ତ୍ରାନ କ୍ରମେ ରାଜବାହନ ଚମ୍ପାନଗରୀରେ କିଛୁକାଳ ଅଶ୍ରୟ ନେବା ଉଚିତ ମନେ କଲେ । ସେ ଉଜ୍ଜୟିନୀକୁ ଫେରିଗଲେ ଦର୍ପସାର ଯେ ତାହାଙ୍କୁ ଶାନ୍ତିରେ ବାସ କରାଇଦେବେ ନାହିଁ ଏଥିରେ ସନ୍ଦେହ ନଥିଲା । ସୁତରାଂ ଅବନ୍ତୀସୁନ୍ଦରୀଙ୍କୁ ଯଥାଶୀଘ୍ର ଚମ୍ପାନଗରୀକୁ ଅନୟନ କରିବାର ବ୍ୟବସ୍ଥା କରାଗଲା । ତାହାଙ୍କର ପିତମାତା ପୁତ୍ର ଦର୍ପସାରଙ୍କ ପ୍ରତିହଂସା ପ୍ରବୃତ୍ତି ସ୍ମରଣ କରି ଏ ପ୍ରସ୍ତାବରେ ସ୍ୱୀକୃତ ହେଲେ । କିଛିଦିନ ପରେ ପୁଷ୍ପୋଦ୍ଭବ ମଧ୍ୟ ବାଳଚନ୍ଦ୍ରିକାଙ୍କ ସହ ଚମ୍ପାନଗରୀରେ ବସତି ସ୍ଥାପନ କଲେ ।

ଦିନେ ରାଜବାହନ ପ୍ରାସାଦୋଦ୍ୟାନରେ ବନ୍ଧୁମାନଙ୍କ ସହ ଆଳାପ କରିବା ବେଳେ ଅପହାରବର୍ମାଙ୍କ ଭ୍ରମଣ ବୃତ୍ତାନ୍ତ ଶ୍ରବଣ କରିବା ପାଇଁ ଆଗ୍ରହ ପ୍ରକାଶ କରିବାରୁ ସେ କହିଲେ—

"ରାଜକୁମାର, ମୁଁ ଅଙ୍ଗଦେଶରେ ଆପଣଙ୍କର ଅନୁସନ୍ଧାନ କରିବା ନିମନ୍ତେ କ୍ଷିପ୍ରଗତିରେ ଚମ୍ପାନଗରୀ ଅଭିମୁଖରେ ଯାତ୍ରା କଲି । ପଥମଧ୍ୟରେ ମୁଁ ବହୁ ସ୍ଥାନରେ ମହର୍ଷି ମରୀଚଙ୍କ ଦିବ୍ୟଜ୍ଞାନ ସମ୍ବନ୍ଧେ ଲୋକ ମୁଖରେ ପ୍ରଶଂସା ଶୁଣିବାକୁ ପାଇଲି । ଏ ମହାତ୍ମା ଚମ୍ପାନଗରୀ ସନ୍ନିକଟ ଅରଣ୍ୟରେ ତପଃସାଧନ କରୁଥିଲେ । ମୁଁ

ତାହାଙ୍କଠାରୁ ଆପଣଙ୍କ ସମ୍ବାଦ ପାଇବାର ଆଶା କରି ଉକ୍ତ ଅରଣ୍ୟରେ ପ୍ରବେଶ କଲି ।

ଏକ ଆଶ୍ରମର ନିକଟବର୍ତ୍ତୀ ହୋଇ ଦେଖିଲି ଗୋଟିଏ ଉତ୍ତୁଙ୍ଗ ରସାଲତରୁ ତଳେ ଜଣେ ବିଷାଦମଳିନ ତପସ୍ୱୀ କୃଷ୍ଣାଜିନ ଉପରେ ଉପବିଷ୍ଟ । ମୁଁ ତାହାଙ୍କର ପଦବନ୍ଦନା କଲି । ସେ ମୋତେ ପରିଚିତ ବ୍ୟକ୍ତି ଭଳି ସମ୍ଭାଷଣ କଲେ । ତାହାପରେ ମୁଁ ପଚାରିଲି, "ମହାତ୍ମା ମରୀଚି କେଉଁଠାରେ ଅଛନ୍ତି କହି ପାରିବେ କି ? ମୁଁ ତାହାଙ୍କ ନିକଟରୁ ମୋହର ନିରୁଦ୍ଦିଷ୍ଟ ବନ୍ଧୁଙ୍କ ସମ୍ବନ୍ଧେ କେତେକ କଥା ଜାଣିବାକୁ ଇଚ୍ଛା କରେ ।"

ତପସ୍ୱୀ ଦୀର୍ଘ ଉଷ୍ଣ ନିଶ୍ୱାସ ପରିତ୍ୟାଗ କରି କହିଲେ, "ଏହି ଆଶ୍ରମରେ ସେହି ନାମକ ଜଣେ ମହର୍ଷି ଥିଲେ । କିନ୍ତୁ ଚମ୍ପାନଗରୀର ସର୍ବୋତ୍ତମ ବେଶ୍ୟା କାମମଞ୍ଜରୀ ତାହାଙ୍କର ସେହି ଦିବ୍ୟ ବ୍ୟକ୍ତିତ୍ୱକୁ ଅପହରଣ କରି ତତ୍‌ପରିବର୍ତ୍ତେ ତାହାଙ୍କୁ ମହା ବୈରାଗ୍ୟ ଓ ମନସ୍ତାପ ଦେଇ ଯାଇଛି ।" ଏହା ଶୁଣି ମୁଁ ବିସ୍ମିତ ହୋଇ ଘଟଣାଟି ଆମୂଳଚୂଳ ବର୍ଣ୍ଣନା କରିବା ପାଇଁ ଋଷିଙ୍କୁ ପ୍ରାର୍ଥନା କଲି ।

ସେ କ୍ଷଣକାଳ ନୀରବ ରହି କହିଲେ, "ଏକଦା ପୂର୍ବ କଥିତ କାମମଞ୍ଜରୀ ବିଷାଦକ୍ଲିଷ୍ଟାପରେତାଙ୍ଗ ପୂର୍ବକ ଲୋତକପୂର୍ଣ୍ଣ ନୟନରେ ମରୀଚିଙ୍କ ଆଶ୍ରମରେ ପ୍ରବେଶକରି ତାହାଙ୍କ ପଦତଳେ ନମସ୍କାର କଲା । ଏହି ସମୟରେ ତାହାର ମାତା ଓ ଆତ୍ମୀୟଗଣ ତାହାର ଅନୁସରଣକରି ସେ ସ୍ଥାନରେ ଉପସ୍ଥିତ ହେଲେ । ଋଷି ତାହାର କାରଣ ପଚାରନ୍ତେ କାମମଞ୍ଜରୀ କହିଲା, "ଭଗବନ୍, ଐହିକ ସୁଖ-ଭୋଗ କ୍ଷଣସ୍ଥାୟୀ । ସୁତରାଂ ପାରତ୍ରିକ ସୁଖ କାମନାକରି ମୁଁ ଆଜି ଆପଣଙ୍କର ଶରଣାପନ୍ନ ହୋଇଛି ।"

ତାହାପରେ କାମମଞ୍ଜରୀର ବୃଦ୍ଧାମାତା ଭୂତଳରେ ଦଣ୍ଡବତ୍ ପ୍ରଣାମକରି କୃତାଞ୍ଜଳିପୁଟରେ କହିଲା,"ମହର୍ଷେ, ମୋହର ପ୍ରାର୍ଥନା ଗ୍ରହଣ କରିବା ହେଉନ୍ତୁ। ବେଶ୍ୟାର ଜନନୀ ଭାବରେ ସକଳ ପ୍ରକାର ନିନ୍ଦନୀୟ କର୍ମ ମୋହର କର୍ତ୍ତବ୍ୟ ହେଲେ ମଧ୍ୟ ମୁଁ ତାହା ପାଳନ କରିଅଛି। ଏ କନ୍ୟାର ଜନ୍ମାବଧି କୁଳାଗୁର ଅନୁଯାୟୀ ତାହାର ଅଙ୍ଗସଂସ୍କାର କରି ଶାରୀରିକ କ୍ଷମତା, ଦୈହିକ ସୌଷ୍ଠବ, କାନ୍ତି ଓ ମେଧାକୁ ନୃତ୍ୟୋପଯୋଗୀ କରିବାରେ ସକଳ ପ୍ରକାର ଯତ୍ନ କରିଅଛି। ତାହାପରେ ଅଙ୍ଗଶାସ୍ତ୍ର ସହିତ କାମଶାସ୍ତ୍ର ଏବଂ ନୃତ୍ୟ, ଗୀତ, ବାଦ୍ୟ, ଅଭିନୟ, ଚିତ୍ରବିଦ୍ୟା, ରନ୍ଧନ ପ୍ରଣାଳୀ, ଗନ୍ଧଦ୍ରବ୍ୟ ପ୍ରସ୍ତୁତପ୍ରକ୍ରିୟା, ପୁଷ୍ପ ରଚନା, ଅଳଙ୍କାର ଓ ବେଶବିନ୍ୟାସ, ହାସପରିହାସ, ବାକ୍‌ଚାତୁରୀ ଇତ୍ୟାଦି ସମସ୍ତ କଳାବିଦ୍ୟା ଶିକ୍ଷାଦେଇ ଅଛି। ତତ୍‌ସହିତ ବ୍ୟାକରଣ, ଜ୍ୟୋତିଷ, ଦର୍ଶନ ଇତ୍ୟାଦି ବିଷୟରେ ମଧ୍ୟ ତାହାର ସମ୍ୟକ୍ ଜ୍ଞାନଲାଭ ହୋଇଅଛି। ବେଶ୍ୟାର ଅନ୍ୟ ଯେଉଁ ସମସ୍ତ ପ୍ରଶଂସନୀୟ ଗୁଣ ଥିବା ଉଚିତ ସେ ସମସ୍ତରେ ତାହାର ପାରଦର୍ଶିତା ଅନନ୍ୟନ କରିବା ପାଇଁ ମୁଁ ଯତ୍ନବାନ୍ ହୋଇଅଛି ଏବଂ ଜୀବନରେ ନିଜ ବୃତ୍ତିରେ ସେ ଯେପରି ସୁଖ୍ୟାତି ଲାଭକରିବ ସେଥିନିମିତ୍ତ ସକଳ ସୁବ୍ୟବସ୍ଥା କରିଯାଇଛି। କୁଳାଗୁର ଅନୁଯାୟୀ ବେଶ୍ୟା ନାୟକ ପ୍ରତି ଉଦ୍‌ଯୋଗୀ ହେବ ମାତ୍ର, ସେଥିରେ ଆସକ୍ତ ହେବାକୁ ହେବନାହିଁ। କିନ୍ତୁ ଏ ନିୟମ ଥିବା ସତ୍ତ୍ୱେ ମୋହର କନ୍ୟା ତାହା ଲଙ୍ଘନ କରି ବିଦେଶାଗତ ଜଣେ ଦରିଦ୍ର ବ୍ରାହ୍ମଣ ଯୁବକ ପ୍ରତି ଆସକ୍ତ ହୋଇ ଅନ୍ୟାନ୍ୟ ଧନାଢ଼୍ୟ ନାୟକମାନଙ୍କୁ ପ୍ରତ୍ୟାଖ୍ୟାନ କରିଅଛି। ଏଣେ ତାହାର ପରିବାର ଯେ କ୍ରମେ କ୍ରମେ ଦାରିଦ୍ର୍ୟର କଷାଘାତରେ ପର୍ଯ୍ୟୁଦସ୍ତ ସେଥି ପ୍ରତି ତାହାର ଦୃଷ୍ଟି ନାହିଁ। ଏ ସମ୍ବନ୍ଧେ ମୁଁ

ତାହାକୁ ସଚେତ କରାଇବା ପାଇଁ ଚେଷ୍ଟିତ ହେବାରୁ ସେ ଅଜ୍ଞ ବନବାସ କରିବା ନିମିତ୍ତ ପ୍ରତିଜ୍ଞା କରି ଗୃହତ୍ୟାଗ କରିଅଛି । ସେ ଯଦି ଏଥିରୁ ବିରତ ନହୁଏ, ମୁଁ ସପରିବାର ଅନାହାରବ୍ରତ ଅବଲମ୍ବନ କରି ଏଠାରେ ପ୍ରାଣତ୍ୟାଗ କରିବି ।”

ଏକଥା ଶୁଣି ମହର୍ଷି ସଦୟ ହୃଦୟରେ କାମମଞ୍ଜରୀକୁ ଉପଦେଶ ଦେଇ କହିଲେ, “ହେ ବାଳିକେ, ବନବାସ ଘୋର ଦୁଃଖର ଆକର । କଠୋର ତପସ୍ୟା ସାଧନ ଦ୍ୱାରା ମୁକ୍ତିଲାଭ ଅଥବା ସ୍ୱର୍ଗପ୍ରାପ୍ତି ହୋଇପାରେ । ଏ ଦୁଇଟି ମଧ୍ୟରୁ ମୁକ୍ତି ତତ୍ତ୍ୱଜ୍ଞାନସାଧ୍ୟ, ଫଳତଃ ଅତ୍ୟନ୍ତ ଦୁଷ୍କର । କିନ୍ତୁ ସ୍ୱର୍ଗ ଲୌକିକ ଧର୍ମାନୁଷ୍ଠାନକାରୀ ସକଳ ବ୍ୟକ୍ତିଙ୍କର ସୁଲଭ । ଅତଏବ ତୁମ ଶକ୍ତିର ଅତୀତ ସେହି ମୁକ୍ତିର ଅଭିଳାଷ ପରିତ୍ୟାଗ କରି ମାତାଙ୍କ ଆଦେଶ ଓ ଉପଦେଶ ଅନୁଯାୟୀ ସ୍ୱଧର୍ମ ଆଚରଣ କର ।”

ଏହାର ଉତ୍ତରରେ କାମମଞ୍ଜରୀ କହିଲା, “ପ୍ରଭୁ, ମୋହର ଦୃଢ଼ ପ୍ରତିଜ୍ଞା, ମୁଁ ଆପଣଙ୍କର ଚରଣରେ ସ୍ଥାନ ନ ପାଇଲେ ଅଗ୍ନି ଦେବତାଙ୍କ କୋଳ ଆଶ୍ରୟ କରିବି । ବେଶ୍ୟାନିବାସ ମୁଁ ଚିରକାଳ ପାଇଁ ତ୍ୟାଗକରିଛି ।”

ପରିବାରର ଦୁରବସ୍ଥା ବିବେଚନା କରି ଓ କାମମଞ୍ଜରୀର ଦୃଢ଼ତାବ୍ୟଞ୍ଜକ ବାକ୍ୟ ଶୁଣି ମହର୍ଷି ବୃଦ୍ଧାଙ୍କୁ କହିଲେ, “ତୁମ୍ଭେ ବର୍ତ୍ତମାନ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରି କିଛିଦିନ ଅପେକ୍ଷା କର । ମୋହର ପ୍ରବୋଧବାକ୍ୟ ଶ୍ରବଣ କରି ଏବଂ ବନବାସଜନିତ ଘୋର କଷ୍ଟ ଅନୁଭବ କରି ତୁମର କନ୍ୟା ସ୍ୱତଃ ଏ ପଥ ପରିତ୍ୟାଗ କରିବ ।”

ଅମ୍ଭୀସୃଗଣ ପ୍ରତ୍ୟାବର୍ତ୍ତନ କରିବା ପରେ କାମମଞ୍ଜରୀ ଗୈରିକ ବସନ ପରିଧାନ କରି ଭକ୍ତି ସହକାରେ ମୁନିଙ୍କ ପଦସେବାରେ ନିଜକୁ ନିୟୋଜିତ କଲା । ସେ ନିଜର ଅଙ୍ଗ ସଂସ୍କାରପ୍ରତି ଅମନୋଯୋଗୀ ହୋଇ ଆଶ୍ରମର ଉଦ୍ୟାନରେ ବୃକ୍ଷ ପାଳନ, ଜଳସେଚନ, ପୁଷ୍ପଚୟନ, ଶିବପୂଜା ନିମିତ୍ତ ଗନ୍ଧ, ମାଲ୍ୟ ନିର୍ମାଣ, ପୂଜା ସମୟରେ ଧୂପ, ଦୀପ ପ୍ରଜ୍ୱଳନ, ନୃତ୍ୟ ଓ ଗାନ ଏବଂ ନିର୍ଜନସ୍ଥାନରେ ଧର୍ମ, ଅର୍ଥ ଓ କାମ ସମ୍ବନ୍ଧରେ ଆଲୋଚନାରେ ନିୟମିତ ଭାବରେ ନିଜର ସମୟ ଅତିବାହିତ କରିବାକୁ ଲାଗିଲା । ସେ ନିଜ ପ୍ରଭାବରେ ଜୀବନ ନିର୍ବାହ କରି ଉତ୍ତମ ବ୍ୟବହାର, ଧର୍ମଚିନ୍ତା ଏବଂ ଅମୃତତତ୍ତ୍ୱ ଆଲୋଚନା ଦ୍ୱାରା ଋଷିଙ୍କୁ ନିଜପ୍ରତି ଆକୃଷ୍ଟ କଲା । କ୍ରମେ ଋଷି ତାହା ପ୍ରତି ଅନୁରକ୍ତ ହୋଇଛନ୍ତି ଏହା ବୁଝିପାରି ଦିନେ କାମମଞ୍ଜରୀ ନିର୍ଜନ ସ୍ଥାନରେ ଋଷିଙ୍କୁ କହିଲା, "ମାନବ ନିତାନ୍ତ ଅଜ୍ଞ । ଧର୍ମ ସହିତ ଅର୍ଥ ଓ କାମକୁ ଏକ ମାନଦଣ୍ଡରେ ତୁଳିବା ତାହାର ନିତାନ୍ତ ମୂର୍ଖତା ।" ଏକଥା କହିଲା ବେଳେ ତାହାର ଅଧରରେ ଅତି ଅସ୍ପଷ୍ଟ ହାସ୍ୟ-ରେଖା ଫୁଟି ଉଠିଲା ।

ତପସ୍ୱୀ କହିଲେ, "ବାଳିକେ, କହ ଦେଖି, ଧର୍ମ କେଉଁ ଅଂଶରେ ଅର୍ଥ ଓ କାମଠାରୁ ଉଚ୍ଚତର ।"

ଉତ୍ତମ ସୁଯୋଗ ପାଇ କାମମଞ୍ଜରୀ ସଲଜ୍ଜ ଚାହାଣିରେ ଧୀରେ ଧୀରେ କହିଲା, "ଜଣେ ସ୍ତ୍ରୀ ବ୍ୟକ୍ତିର ଧାରଣାରୁ କଣ ଆପଣ ଧର୍ମ, ଅର୍ଥ ଓ କାମର ଉଚ୍ଚାବଚତା ବିଗ୍ଭର କରିବେ ? ଦାସୀ ପ୍ରତି ଏହା ଅନୁଗ୍ରହ ବ୍ୟତୀତ ଆଉ କଣ ହୋଇପାରେ ? ତେବେ ଯାହା ହେଉ, ମୁଁ ଜାଣେ, ଧର୍ମ ସହିତ କାମ ଓ ଅର୍ଥ ତୁଳନୀୟ ନୁହନ୍ତି ! ଏକଥା ଅବଶ୍ୟ ସତ୍ୟ ଯେ ଧର୍ମ, ଅର୍ଥ ଓ କାମର



କାମମଞ୍ଜରୀ ଓ ଋଷି ମରୀଚି

ଅପେକ୍ଷା ନଗର ମାନବ ନିବୃତ୍ତି ମାର୍ଗରେ ପ୍ରକୃତ ସୁଖଲାଭ କରିପାରେ; କିନ୍ତୁ ତାହା ସମାଧି ଦ୍ୱାରହିଁ ଲବ୍ଧ ହୋଇଥାଏ। ମାତ୍ର ଅର୍ଥ ଓ କାମ ପରି ଧର୍ମ ବାହାରର କୌଣସି କାରଣର ଅଧୀନ ନୁହେ। ଅତ ମଧ୍ୟ ତତ୍ତ୍ୱଜ୍ଞାନପରିପୁଷ୍ଟ ଧର୍ମକୁ ଯେ କୌଣସି ଭାବେ ଅନୁଷ୍ଠିତ ଅର୍ଥ ଓ କାମଚର୍ଚ୍ଚା ନଷ୍ଟ କରିପାରେ ନାହିଁ ; ଯଦି ଅବା ତାହା ହ୍ରାସ ପାଏ, ତାହାର ପରିପୂରଣ ଅତି ଅନାୟାସ-ସାଧ୍ୟ। ସେତେବେଳେ ଅର୍ଥ ଓ କାମଚର୍ଚ୍ଚାଜନିତ ଦୋଷକୁ ସେହି ଧର୍ମ ବିନଷ୍ଟକରି ଅଶେଷ ମଙ୍ଗଳସାଧନ କରେ। ପୁରାଣ-ମାନଙ୍କରେ ଏହାର ଭୁରି ଭୁରି ପ୍ରମାଣ ଅଛି। ଜ୍ଞାନୀ ଦେବଗଣ ସମୁଦ୍ରମନ୍ଥନ ସମୟରେ ଅସୁରମାନଙ୍କୁ ପ୍ରବଞ୍ଚନା କରି ନଥିଲେ କି ? ଆକାଶ ଯେପରି ଧୂଳି ଦ୍ୱାରା ମଳିନ ହୋଇ ନପାରେ, ସେହିପରି ତତ୍ତ୍ୱଜ୍ଞ ଧାର୍ମିକର ପଞ୍ଚେନ୍ଦ୍ରିୟରେ ପାପସ୍ଥାୟୀ ହୋଇପାରେ ନାହିଁ। ଅତଏବ ମୁଁ ମନେ କରେ ଧର୍ମର ଶତାଂଶରୁ ଏକାଂଶ ସହିତ ଅର୍ଥ ଏବଂ କାମ ତୁଳନୀୟ ନୁହନ୍ତି।"

ଏହା ଶୁଣି ଋଷି ଉତ୍ତରୋତ୍ତର ଅନୁରକ୍ତ ହୋଇ କହିଲେ, "ହେ ବିଳାସିନି, ତୁମେ ଠିକ୍ ବୁଝିଛ। ବିଷୟ ସମ୍ଭୋଗଦ୍ୱାରା ତତ୍ତ୍ୱଜ୍ଞର ଧର୍ମ ବିନଷ୍ଟ ହୁଏ ନାହିଁ। ମୁଁ ଆଜନ୍ମବ୍ରହ୍ମଚାରୀ। ସୁତରାଂ କାମ ଓ ଅର୍ଥ ସମ୍ବନ୍ଧେ ମୋହର କୌଣସି ଧାରଣା ନାହିଁ। ତାହାର ଲକ୍ଷଣ, କାରଣ ଓ ଫଳ ସମ୍ବନ୍ଧେ ମୁଁ ଜାଣିବାକୁ ଇଚ୍ଛାକରେ।"

କାମମଞ୍ଜରୀ ଉତ୍ତର କଲା—"ପ୍ରଥମତଃ ଯାହାର ଉପାର୍ଜନ, ଅଭିବୃଦ୍ଧି ଓ ସଂରକ୍ଷଣ ବ୍ୟାପାର ରହିଛି ତାହାକୁ ଅର୍ଥ କୁହାଯାଏ। କୃଷି, ପଶୁପାଳନ, ବାଣିଜ୍ୟ, ସନ୍ଧି, ବିଗ୍ରହ ଓ ଯାଚନାଦି ଅର୍ଥର କାରଣ। ସତ୍ପାତ୍ରରେ ଦାନ କରିବାରେ ହିଁ ଅର୍ଥର ସାଫଲ୍ୟ।

ଦ୍ୱିତୀୟତଃ ବିଷୟାସକ୍ତ ସ୍ତ୍ରୀ ପୁରୁଷଙ୍କର ସହବାସକୁ କାମ କୁହାଯାଏ । ଜଗତରେ ଯାହା କିଛି ସୁନ୍ଦର ଓ ଉଦ୍ଦୀପକ ବସ୍ତୁ ବିଦ୍ୟମାନ ସେ ସବୁ କାମର ପରିପୋଷକ; ଏହାର ସ୍ମରଣ ପ୍ରୀତିକର, ଆହ୍ଲାଦଦାୟକ ଏବଂ ଅଭିମାନଜନକ । ପ୍ରତ୍ୟକ୍ଷ ସର୍ବୋତ୍କୃଷ୍ଟ ସୁଖଲାଭ ଏହାର ଫଳ । ଏହା ଲାଭ କରିବାକୁ ପ୍ରାସାଦବାସୀ ମଧ୍ୟ ଘୋର ତପସ୍ୟା, ପ୍ରଚୁର ଦାନ, ଭୟଙ୍କର ଯୁଦ୍ଧ କିମ୍ବା ସାଗର-ଲଙ୍ଘନ ପ୍ରଭୃତି ଗୁରୁତର କାର୍ଯ୍ୟରେ ନିଜକୁ ନିୟୋଜିତ କରେ ।”

ମରୀଚି ଏକଥା ଶ୍ରବଣ କରନ୍ତେ ବ୍ରହ୍ମଚର୍ଯ୍ୟ ନିୟମ ଲଙ୍ଘନ କରି କାମମଞ୍ଜରୀ ପ୍ରତି ଆସକ୍ତ ହୋଇ ପଡ଼ିଲେ । କ୍ରମେ ବେଶ୍ୟା ତାହାଙ୍କୁ ସମ୍ପୂର୍ଣ୍ଣରୂପେ ନିଜର ଆୟତ୍ତାଧୀନ କରି ପକାଇଲା । ତପସ୍ୱୀ ପୂଜାରାଧନା ତ୍ୟାଗକରି କାମମଞ୍ଜରୀଙ୍କୁ ହୃଦୟର ଏକମାତ୍ର ଆରାଧ୍ୟ ମନେ କଲେ । କିଛିଦିନ ପରେ ବେଶ୍ୟା ତାହାଙ୍କୁ ଚମ୍ପାନଗରୀକୁ ଆନୟନ କଲା । ସେ ଏକ ଶୋଭାଯାତ୍ରାରେ ତପସ୍ୱୀଙ୍କୁ ମହା ସମାରୋହରେ ନଗର ମଧ୍ୟରେ ନେଇ ନିଜ ଗୃହରେ ପ୍ରବେଶ କଲା ।

ମରୀଚି ବେଶ୍ୟାଗୃହରେ ସ୍ନାନସାରି କଳାଶିଳ୍ପୀବ୍ୟକ୍ତିଙ୍କ ପରି ସୂକ୍ଷ୍ମ ପରିଧେୟ, ସୁବାସଦ୍ରବ୍ୟ ଓ ପୁଷ୍ପମାଳାରେ ଭୂଷିତ ହେଲେ । ସେ ଦିନ ନଗରରେ ମଦନୋତ୍ସବ ହେଉଥାଏ । କାମମଞ୍ଜରୀ ଉକ୍ତ ଉତ୍ସବରେ ମରୀଚିଙ୍କ ସହ ଯୋଗଦାନ କଲା ।

ଏକ ଉଦ୍ୟାନରେ ବହୁ ତରୁଣୀଙ୍କ ସହ ସ୍ୱୟଂ ମହାରାଜା ମଦନୋତ୍ସବରେ ଯୋଗଦାନ କରିଥିଲେ । କାମମଞ୍ଜରୀ ତପସ୍ୱୀଙ୍କ ହସ୍ତଧରି ସେଠାରେ ଉପସ୍ଥିତ ହୋଇ ସହାସ ବଦନରେ ରାଜାଙ୍କୁ

ପ୍ରଣାମ କଲା । ରାଜା ଈଷତ୍ ହାସ୍ୟକରି ବେଶ୍ୟା ଏବଂ ତପସ୍ୱୀଙ୍କୁ ଉପବେଶନ କରିବା ପାଇଁ ଆଦେଶ କଲେ ।

ଏହି ସମୟରେ ଜଣେ ସୁନ୍ଦରୀ ତରୁଣୀ କୃତାଞ୍ଜଳି ପୂର୍ବକ ରାଜାଙ୍କୁ ଜଣାଇଲା, "ଦେବ, କାମମଞ୍ଜରୀ ମୋତେ ଜୟକରି ଅଛନ୍ତି । ଏଣୁ ଆଜିଠାରୁ ମୁଁ ତାହାଙ୍କର ଦାସୀ ହୋଇ ରହିବି ।" ଏକଥା ଶୁଣି ସମବେତ ଜନତା ମଧ୍ୟରୁ ବିଶେଷ କରତାଳି ଧ୍ୱନି ଶୁଣାଗଲା । ରାଜା କାମମଞ୍ଜରୀର ଚତୁରତାରେ ସନ୍ତୁଷ୍ଟ ହୋଇ ତାହାଙ୍କୁ ପ୍ରଚୁର ଧନରତ୍ନ ଉପହାର ଦେଲେ । ନଗରୀର ଶ୍ରେଷ୍ଠ ଗଣିକା ଓ ପୁରବାସୀଗଣ କାମମଞ୍ଜରୀଙ୍କୁ ବହୁ ପ୍ରଶଂସା କଲେ ।

ଏହାପରେ କାମମଞ୍ଜରୀ ସ୍ୱଗୃହକୁ ପ୍ରତ୍ୟାବୃତ୍ତ ହେବା ନିମିତ୍ତ ଉଦ୍ୟତା ହୋଇ କୃତାଞ୍ଜଳି ପୂର୍ବକ ମରୀଚିଙ୍କୁ ଜଣାଇଲା, "ଭଗବନ୍, ଆଜି ମୋହର ଉଦ୍ଦେଶ୍ୟ ସାଧିତ ହୋଇଅଛି । ଆପଣ ତପସ୍ୱୀ; ବର୍ତ୍ତମାନ ନିଜର ପଥ ଅନୁସରଣ କରନ୍ତୁ ।"

ଏହା ଶୁଣିବା ମାତ୍ରେ ତପସ୍ୱୀ ମସ୍ତକରେ ବଜ୍ରପାତ ହେଲା ଭଳି ବୋଧକଲେ । ଗଣିକା ପ୍ରତି ସେ ଏତେଦୂର ଆସକ୍ତ ହୋଇ ପଡ଼ିଥିଲେ ଯେ ତାହାର ବାକ୍ୟ ଶ୍ରବଣରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଅନୁନୟ କରି କହିବାକୁ ଲାଗିଲେ, "ପ୍ରିୟେ, ତୁମର ଏ କି କଠୋର ବ୍ୟବହାର ! ମୋ ପ୍ରତି ଏ ଉଦାସୀନତା କାହିଁକି ? ତୁମର ସେ ଅନୁରାଗ କେଉଁଠି ଅଚାନକ ଲୋପ ହେଲା ?"

କାମମଞ୍ଜରୀ ଉତ୍ତର କଲା, "ଭଗବନ୍, ଯେଉଁ ସୁନ୍ଦରୀ ରାଜାଙ୍କ ନିକଟରେ ପରାଜୟ ସ୍ୱୀକାର କଲା ତା ସହିତ ବିବାଦ କରି ମୁଁ ଆପଣଙ୍କୁ ବଶୀଭୂତ କରିବା ପାଇଁ ପଣ କରିଥିଲି । ଆପଣଙ୍କ ଅନୁଗ୍ରହରୁ ଆଜି ମୁଁ ସେଥିରେ କୃତକାର୍ଯ୍ୟ ହୋଇଅଛି ।"

ବେଶ୍ୟାଦ୍ୱାରା ପ୍ରତାରିତ ହୋଇ ତପସ୍ୱୀଙ୍କର ପୁଣି ଜ୍ଞାନୋଦୟ ହେଲା । ସେ ଦୁଷ୍କର୍ମରୁ ନିବୃତ୍ତ ହୋଇ ଅନୁତାପାନଳରେ ଦଗ୍ଧ ହେବାକୁ ଲଗିଲେ । ବେଶ୍ୟା ପ୍ରତି ଅନୁରାଗ ଦୂରୀଭୂତ ହୁଅନ୍ତେ ତାହା ସ୍ଥାନରେ ହୃଦୟରେ ମହା ବୈରାଗ୍ୟ ଜାତ ହେଲା ।—ମୁହିଁ ସେହି ପ୍ରତାରିତ, ଅନୁତପ୍ତ ଋଷି ମରୀଚି !"

ଏହା କହିସାରି ଭାବାବେଶରେ ମୁନି କିଛିକାଳ ନିସ୍ତବ୍ଧ ହୋଇ ପଡ଼ିଲେ । ତାପରେ ସେ ମୋହର ପରିଚୟ ଜିଜ୍ଞାସା କଲେ । ମୁଁ ପରିଚୟ ଦେବାପରେ ସେ ପୁଣି କିଛିକାଳ ନୀରବ ରହି କହିଲେ, "ଯୁବକ, ତୁମଦ୍ୱାରା ଏ ପାପପ୍ଲାବିତ ଦେଶର ବହୁ ଉପକାର ହେବ ବୋଲି ସୂଚନା ପାଉଛି । ତୁମେ ତୁମ ବନ୍ଧୁଙ୍କ ସହିତ କେବେ ମିଳିତ ହେବ ତାହା ଉପଯୁକ୍ତ ସମୟରେ ମୁଁ ଜଣାଇବି । ତାହା ପୂର୍ବରୁ ତୁମ ସମ୍ମୁଖରେ ବହୁ ଗୁରୁତର କର୍ତ୍ତବ୍ୟ ଅଛି । ସେ ଗୁରୁ କର୍ତ୍ତବ୍ୟ ସାଧନ କରିବାରେ ତୁମକୁ ସାହାଯ୍ୟ କରିବା ପାଇଁ ମୁଁ ମୋହର ଅମୂଲ୍ୟ ଆଶୀର୍ବାଣୀ ବର୍ଷଣା କଲି । ତୁମେ ଏ ଅସାଧ୍ୟ ସାଧନ କରି ପାରିବ ?"

ଏକଥା ଶୁଣି ମୁଁ ଉତ୍କଣ୍ଠାର ସହିତ ଉତ୍ତର ଦେଲି, "ମହର୍ଷେ, ଅନୁଗ୍ରହ କରି ମୋହର କର୍ତ୍ତବ୍ୟ ସମ୍ବନ୍ଧେ ସୂଚନା ଦିଅନ୍ତୁ । ମୁଁ ପ୍ରାଣପଣ କରି ତାହା ନିଶ୍ଚୟ ସାଧନ କରିବି ।"

ମହର୍ଷି କହିଲେ, "ଦୁରାତ୍ମା ଖଳପ୍ରକୃତିର ଲୋକଙ୍କୁ ଉପଯୁକ୍ତ ଦଣ୍ଡ ଦେଇ ସାଧୁମାନଙ୍କୁ ସାହାଯ୍ୟ କରିବାହିଁ ତୁମର କର୍ତ୍ତବ୍ୟ ହେବ । ଚମ୍ପାନଗରୀରେ ଅସାଧୁ ଏବଂ ଆଳସ୍ୟ ପରାୟଣ, ବିପଥଗାମୀ ବ୍ୟକ୍ତିଙ୍କ ଦୌରାତ୍ମ୍ୟ କ୍ରମେ ଅତି ଅସହ୍ୟ ହୋଇ ଉଠୁଛି । ତୁମେ ସୁଶିକ୍ଷିତ ବୁଦ୍ଧିମାନ ଯୁବକ । ଏମାନଙ୍କୁ ଉପଯୁକ୍ତ

ଶାସ୍ତି ଓ ଶିକ୍ଷାଦେଇ ସତ୍‌ମାର୍ଗଗାମୀ କରାଇବା ଭାର ତୁମେ ଗ୍ରହଣ କର ।”

ମରୀଚି ଯେଉଁ ଚକ୍ରାନ୍ତଦ୍ୱାରା ପ୍ରତାରିତ ହେଲେ ତାହା ଶ୍ରବଣ କରି ମୁଁ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ ପଡ଼ିଲି । ଚମ୍ପାନଗରୀର ରୂପଜୀବିନୀ ମୋହର ରକ୍ତକୁ ଉତ୍ତେଜିତ କରି ଦେଇଥିଲା । ମୁଁ ତତ୍‌କ୍ଷଣାତ୍ ଏ କାର୍ଯ୍ୟରେ ହସ୍ତକ୍ଷେପ କରିବା ନିମିତ୍ତ ଋଷିଙ୍କ ସମ୍ମୁଖରେ ପ୍ରତିଜ୍ଞା କଲି ।

ଋଷିଙ୍କ ଆଦେଶରେ ମୁଁ ଆଶ୍ରମରେ ରାତି ଯାପନ କଲି । ବିଶ୍ରାମ କାଳରେ ସେ ମୋତେ ବହୁମୂଲ୍ୟ ଉପଦେଶମାନ ପ୍ରଦାନ କଲେ । ପ୍ରଭାତରୁ ମୁଁ ବିଦାୟ ଗ୍ରହଣ କରି ଚମ୍ପା ଅଭିମୁଖରେ ଯାତ୍ରା କଲି ।

କିଛି ଦୂର ଅଗ୍ରସର ହେବାପରେ ମୋହର ଯାତ୍ରାପଥରେ ଗୋଟିଏ ବୌଦ୍ଧ ଆଶ୍ରମ ପଡ଼ିଲା । ତାହାର ନିକଟରେ ଏକ ଅଶୋକ ବୃକ୍ଷ ତଳେ ଜଣେ କଦାକାର ମଳିନ ବସ୍ତ୍ର ଅସ୍ଥିର ଶୀର୍ଣ୍ଣ ବୌଦ୍ଧଭିକ୍ଷୁ ଲୋତକ ପୂର୍ଣ୍ଣ ନୟନରେ ଉପବେଶନ କରିଥିବା ଦେଖି ମୁଁ ତାହାଙ୍କର ନିକଟବର୍ତ୍ତୀ ହୋଇ ଜିଜ୍ଞାସା କଲି, “ମହାଶୟ, ତପସ୍ୟା ଏବଂ କ୍ରନ୍ଦନ କଦାପି ସହଗାମୀ ହୋଇ ନ ପାରନ୍ତି । ଯଦି ଗୋପନୀୟ ହୋଇ ନଥାଏ ଆପଣଙ୍କର ଶୋକର କାରଣ ପ୍ରକାଶ କରିବେକି ?”

ଭିକ୍ଷୁ ଲୋତକ ସମ୍ବରଣ କରି କହିଲେ, “ମହାଶୟ, ଚମ୍ପାନଗରୀର ପ୍ରସିଦ୍ଧ ଧନିକ ନିଧି ପାଳିତଙ୍କର ମୁଁ ଜ୍ୟେଷ୍ଠ ପୁତ୍ର । ମୋହର ନାମ ବସୁ ପାଳିତ । କିନ୍ତୁ ମୋହର କୁତ୍ସିତ ରୂପ ଯୋଗୁଁ ମୁଁ ସାଧାରଣତଃ ‘ବିରୂପକ’ ନାମରେ ପରିଚିତ । ସେହି ନଗରୀରେ

ଅର୍ଥପତି ନାମକ ଜଣେ ଯୁବକ ଅଛନ୍ତି । ତାହାଙ୍କର ଯଥେଷ୍ଟ ବିଭବ ନଥିଲେ ମଧ୍ୟ ସେ ନୃତ୍ୟଗୀତାଦି କଳାବିଦ୍ୟାରେ ପାରଦର୍ଶୀ ଏବଂ ଦୟାଦାକ୍ଷିଣ୍ୟାଦି ସଦ୍‌ଗୁଣସମ୍ପନ୍ନ ଅଟନ୍ତି । ତାହାଙ୍କର ରୂପଶ୍ରୀ ଅତ୍ୟନ୍ତ ମନୋହର । ତେଣୁ ଲୋକେ ତାହାଙ୍କୁ 'ରୂପବାନ୍' ନାମ ଦେଇ ଅଛନ୍ତି ।

କେତେକ ଖଳପ୍ରକୃତିର ଲୋକ ଆମ୍ଭ ଦୁହିଁଙ୍କ ମଧ୍ୟରେ ଅନର୍ଥ ସୃଷ୍ଟି କରିବା ଲାଳସାରେ ତାହାଙ୍କର ରୂପଗୁଣର ପ୍ରଶଂସା ମୋ ସମ୍ମୁଖରେ ଏବଂ ମୋହର କୁତ୍ସିତତାର ନିନ୍ଦା ତାହାଙ୍କ ନିକଟରେ କରିବାକୁ ଲାଗିଲେ । ଦିନେ ଏକ ଉତ୍ସବ ସଭାରେ ଏହି ଦୁର୍ବୃତ୍ତ ଗଣ ନାନା ଭାବରେ ଆମ୍ଭ ଦୁହିଁଙ୍କ ମଧ୍ୟରେ ତର୍କତା ଅଣାଇ କହିଲେ ଯେ, କୌଣସି ବ୍ୟକ୍ତିର ରୂପ କିମ୍ବା ବିଭବ ପୁରୁଷତ୍ୱର ପରିଚାୟକ ନୁହେ । ସର୍ବ ଶ୍ରେଷ୍ଠ ବେଶ୍ୟା ଯାହାଙ୍କର ଯୌବନ ପ୍ରାର୍ଥନା କରେ ତାହାଙ୍କୁହିଁ ପୁରୁଷଶ୍ରେଷ୍ଠ କୁହାଯାଏ ।

ଏହିଭଳି ନାନା ଖଳ ପ୍ରରୋଚନାର ବଶବର୍ତ୍ତୀ ହୋଇ ଶେଷରେ ଅର୍ଥପତି ଓ ମୋ ଭିତରେ ନିଷ୍ପତ୍ତି ହେଲା ଯେ ଆମ୍ଭେ ଉଭୟେ ବେଶ୍ୟା କାମମଞ୍ଜରୀ ନିକଟରେ ନିଜ ନିଜର ପୌରୁଷ ପରୀକ୍ଷା କରିବୁଁ । ସେ ଯାହାର ପ୍ରଣୟପ୍ରାର୍ଥିନୀ ହେବ ତାହାର ଶ୍ରେଷ୍ଠତ୍ୱ ପ୍ରମାଣିତ ହେବ ।

ଏହି ଘଟଣାର ଅଳ୍ପଦିନ ମଧ୍ୟରେ ଏ ବିବାଦର ନିଷ୍ପତ୍ତି ହୋଇଗଲା; କାରଣ ମୁଁ ଦୂତ ପ୍ରେରଣ କରିବା ମାତ୍ରେ କାମମଞ୍ଜରୀ ମୋହର ପ୍ରଣୟପ୍ରାର୍ଥିନୀ ହେଲା । ମୁଁ ନିଜକୁ ଅତ୍ୟନ୍ତ ଭାଗ୍ୟବାନ ମନେକରି କ୍ରମେ କ୍ରମେ ମୋହର ସକଳ ସମ୍ପତ୍ତି ଏପରିକି ବାସଗୃହ ପର୍ଯ୍ୟନ୍ତ ତାହାକୁ ଉପହାର ଦେବାରେ ବ୍ୟସ୍ତ କରିଦେଲି । କିନ୍ତୁ

ଫଳରେ ସର୍ବନ ଉପସ୍ଥିତ ହେବାହିଁ ମୋ ଭାଗ୍ୟରେ ସାର ହେଲା । ମୋହର ସର୍ବସ୍ୱ ଅପହରଣ କରିସାରିବା ମାତ୍ରେ ବାରଯୁବତୀ କାମମଞ୍ଜରୀ ମୋତେ ଭଗ୍ନକାଂଡ଼ନକ ତୁଲ୍ୟ ତ୍ୟାଗକରି ଗୃହରୁ ଅନ୍ତର କରିଦେଲା ।

ମୋହର ପତନ ସଙ୍ଗେ ସଙ୍ଗେ ଅର୍ଥପତିର ଅଭ୍ୟୁଦୟ ହେଲା, କାମମଞ୍ଜରୀ ନିଜର ପ୍ରେମ ଓ ମୋହର ଅର୍ଥ ତାହାକୁ ସମର୍ପଣ କଲା । ସେ ବିଜୟ ଉନ୍ମାଦରେ ଉନ୍ମତ୍ତ ହେଲା । ମୁଁ ସର୍ବନ ଘୃଣିତ ହେଲି । ଏ ମରଣାନ୍ତକ ଅପମାନ ସହ୍ୟକରି ନ ପାରି ମୁଁ ଏ ବିହାରରେ ଆଶ୍ରୟ ନେଲି । ଜଣେ ବୌଦ୍ଧ ସନ୍ୟାସୀ ମୋତେ ଉପଦେଶ ଦେଲେ ଯେ କେବଳ ସାଧନା ଦ୍ୱାରା ନିର୍ବାଣ ପ୍ରାପ୍ତି ହୋଇଥାଏ । ସୁତରାଂ ସେହି ପଥ ଅନୁସରଣ କରି କ୍ଷୁଧାତୃଷାରେ ମୋତେ ବହୁ ଯାତନା ଭୋଗ କରିବାକୁ ହେଲା । ମୁଁ ବୈଶ୍ୟ ଜାତି ସମ୍ଭୂତ; ମୋହର ପୂର୍ବ ପୁରୁଷଗଣ ସ୍ମୃତିଶ୍ରୁତି ବିହିତ ପଥ ଅନୁସରଣ କରି ଯାଇଛନ୍ତି । ତେଣୁ ଏ ଧର୍ମରେ ଈଶ୍ୱରଙ୍କଠାରେ ଅବିଶ୍ୱାସ ଏବଂ ସ୍ମୃତିଶ୍ରୁତିର ନିନ୍ଦା ଶ୍ରବଣ କରି କେତେକ ଦିବସ ପରେ ମୋହର ଆତ୍ମଗ୍ଳାନି ଜାତହେଲା । ନିଜର ଧର୍ମ ତ୍ୟାଗକରି ଅନ୍ୟଧର୍ମ ଗ୍ରହଣ କରିଥିବାରୁ ମୁଁ ଅନୁତପ୍ତ ହେଲି । ତାହା ଫଳରେ ମୁଁ ବର୍ତ୍ତମାନ ସ୍ୱକୃତ ସକଳପ୍ରକାର ଦୁଷ୍କାର୍ଯ୍ୟ ପାଇଁ ଅନୁତପ୍ତ ହୋଇ ନିର୍ଜନରେ ବସି ଲୋତକ ବିସର୍ଜନ କରୁଅଛି ।"

ବିରୂପକର କରୁଣ କାହାଣୀ ଶ୍ରବଣ କରି ମୋ ହୃଦୟ ବିଗଳିତ ହୋଇ ପଡ଼ିଲା । ମୁଁ କହିଲି, "ମହାଶୟ, ଏ ସ୍ଥାନରେ ଆଉ କିଛିଦିନ ବାସ କରନ୍ତୁ । ଆପଣଙ୍କର ସମସ୍ତ ସମ୍ପତ୍ତି ଅଳ୍ପକାଳ ମଧ୍ୟରେ ଯେପରି ଫେରି ପାଇବେ ମୁଁ ତାହାର ଯତ୍ନ କରୁଛି ।"

ମହର୍ଷି ମରୀଚି ମୋତେ ଯେଉଁ ଗୁରୁଭାର ସମର୍ପଣ କଲେ ତାହା ଦୁଃସାଧ୍ୟ । ନିର୍ଦ୍ଦୟ ଦସ୍ୟୁ ତଥା ଚରିତ୍ରହୀନ ବର୍ବର ବ୍ୟକ୍ତି-ମାନଙ୍କୁ ଶାସନ କରିବା କି ବିଷମ ବ୍ୟାପାର ତାହା ସହଜେ ଅନୁମେୟ । ଯାହା ହେଉ ମୁଁ ପ୍ରଥମେ ଅର୍ଥପତିକୁ ଉପଯୁକ୍ତ ଶାସ୍ତି ଦେବା ନିମିତ୍ତ ସଂକଳ୍ପ କଲି । କାରଣ ମୋହର ସ୍ପଷ୍ଟ ଧାରଣା ହେଲା, ଅର୍ଥପତି ଓ କାମମଞ୍ଜରୀଙ୍କ ମନ୍ତ୍ରଣା ଏବଂ ଷଡ଼୍‌ଯନ୍ତ୍ର ଅନୁଯାୟୀ ଖଳବ୍ୟକ୍ତିମାନଙ୍କ ମଧ୍ୟସ୍ଥତାରେ ଏ ସମସ୍ତ ଘଟି ଅଛି ।

ମୁଁ ଚମ୍ପାନଗରୀ ମଧ୍ୟରେ ପ୍ରବେଶ କରି ପ୍ରଥମେ ସକଳ-ପ୍ରକାର ଖଳ, ଚରିତ୍ରହୀନ, ଦସ୍ୟୁ, ବେଶ୍ୟାସକ୍ତ, ମଦ୍ୟପ ବ୍ୟକ୍ତିଙ୍କ ସହ ସଦ୍‌ଭାବ ସ୍ଥାପନ କରିବାକୁ ଲାଗିଲି । ସେମାନଙ୍କ ସହବାସରେ ଅଳ୍ପଦିନ ମଧ୍ୟରେ ଦ୍ୟୂତକ୍ରୀଡ଼ା ଓ ଦସ୍ୟୁବୃତ୍ତିରେ ମୋହର ଉତ୍ତମ ବ୍ୟୁତ୍ପତ୍ତି ଜନ୍ମିଲା । ମୁଁ ଏ ଉଭୟ ଉପାୟରେ ବହୁ ଅର୍ଥ ସଂଗ୍ରହ କଲି ଏବଂ ସହଚରମାନଙ୍କ ସହାନୁଭୂତି ଓ ଆବଶ୍ୟକ ସମୟରେ ସାହାଯ୍ୟ ପାଇବା ପାଇଁ ଉକ୍ତ ଅର୍ଥକୁ ଉଦାର ଭାବରେ ସେମାନଙ୍କୁ ଦାନକଲି । ମୋହର ନୂତନ ସହଚରମାନଙ୍କ ମଧ୍ୟରେ ବିମର୍ଦ୍ଦି ନାମକ ଏକ ଦ୍ୟୂତକ୍ରୀଡ଼ା ନିପୁଣ ବ୍ୟକ୍ତିଙ୍କ ସହ ମୋହର ଅତି ଅନ୍ତରଙ୍ଗତା ପ୍ରତିଷ୍ଠିତ ହେଲା । ଏକ ଦ୍ୟୂତସଭାରେ ସେ ସର୍ବସ୍ୱାନ୍ତ ହେବା ଅବସ୍ଥାରେ ମୁଁ ତାହାଙ୍କୁ ସାହାଯ୍ୟ କରିବାରୁ ସେ ମୋପ୍ରତି ବିଶେଷ କୃତଜ୍ଞ ହୋଇ ତାହାଙ୍କ ଗୃହରେ ମୋହର ବାସ କରିବା ନିମିତ୍ତ ସକଳ ବ୍ୟବସ୍ଥା କରିଦେଲେ । ତାହାଙ୍କଠାରୁ ନଗରୀର ସମସ୍ତ ସମ୍ବାଦ ମଧ୍ୟ ମୁଁ ସହଜରେ ପାଇ ପାରିଲି । ନଗରୀରେ କିଏ କିପରି ବ୍ୟକ୍ତି, କାହାର କିପରି ବିଭବ ଇତ୍ୟାଦି କୌଣସି କଥା ମୋତେ ଅବିଦିତ ରହିଲା ନାହିଁ ।

ଏକଦା ରାତ୍ରିକାଳରେ ମୁଁ ଏକ କୃପଣ ଧନୀ ଗୃହରେ ଚୋରୀ କରିବା ଉଦ୍ଦେଶ୍ୟରେ ବାହାରିଲି । କୃଷ୍ଣ ବସନରେ ମୋହର ତୈଳଜର୍ଜରିତ ଶରୀରକୁ ଆବୃତ କରି କଟି ଦେଶରେ ଅସି, ହସ୍ତରେ ମୂଷଳ, ଉଦୂଖଳ, ବଂଶୀ, କାଷ୍ଠପୁରୁଷ, ଯୋଗଚୂର୍ଣ୍ଣ, ଯୋଗବର୍ତ୍ତିକା, ରଜ୍ଜୁ ଓ କୃଷ୍ଣବସ୍ତ୍ରାଚ୍ଛାଦିତ ଆଲୋକ ଇତ୍ୟାଦି ଉପକରଣ ଧରି ଘନ ଅନ୍ଧକାର ମଧ୍ୟରେ ଅଗ୍ରସର ହେଲି । ଏ ଅଭିଯାନରେ ମୁଁ ବିଶେଷ କୃତକାର୍ଯ୍ୟ ହେଲି । ସିନ୍ଧକାଟି ଗୃହମଧ୍ୟରେ ପ୍ରବେଶ କରି ଅପରିମିତ ମୂଲ୍ୟବାନ ଧନରତ୍ନ ସହ ଅନାୟାସରେ ମୁଁ ପୁଣି ରାଜପଥକୁ ଫେରି ଆସିଲି ।

ଅତି ସାବଧାନତା ସହକାରେ ରାଜପଥରେ କିଛି ଦୂର ଯାଉଛି—ହଠାତ୍ ଜଣେ ସୁବେଶା ଯୁବତୀ ବିପରୀତ ଦିଗରୁ କ୍ଷିପ୍ର ଗତିରେ ଆସୁଥିବା ଦେଖି ମୁଁ ବିସ୍ମିତ ହୋଇ ପଡ଼ିଲି । ତାହାର ମଣିମୁକ୍ତା ଖଚିତ ଅଳଙ୍କାର ଘନଅନ୍ଧାର ମଧ୍ୟରୁ ଚକ୍ ଚକ୍ ଦେଖା ଯାଉଥିଲା । ସେ ମୋହର ନିକଟବର୍ତ୍ତୀ ହୁଅନ୍ତେ ମୁଁ ତାହାର ପରିଚୟ ଏବଂ ଉଦ୍ଦେଶ୍ୟ ଜିଜ୍ଞାସା କଲି ।

ଯୁବତୀ ମୋହର ଭୟଙ୍କର ରୂପ ଦେଖି ମୋତେ ପ୍ରତାରଣା କରିବାକୁ ସାହସ କଲାନାହିଁ । ସେ ଭୀତ ତ୍ରସ୍ତା ହୋଇ ଅସ୍ପଷ୍ଟ ଭାବରେ କହିଲା, "ମୁଁ ଏ ନଗରର କୁବେର ଦତ୍ତଙ୍କ କନ୍ୟା । ମୋହର ନାମ କୁଳପାଳିକା । ପିତା ମୋହର ବାଲ୍ୟାବସ୍ଥାରେ ଧନମିତ୍ର ନାମକ ବଣିକ ପୁତ୍ରଙ୍କ ସହିତ ମୋହର ବିବାହ ଦେବା ପାଇଁ ବାଗ୍‌ଦାନ କରିଥିଲେ । କିନ୍ତୁ ଦୁର୍ଭାଗ୍ୟ ବଶତଃ ନିଜ ପିତାଙ୍କ ମୃତ୍ୟୁ ପରେ ଧନମିତ୍ର ଅତିରିକ୍ତ ଦାନକରି ନିଃସ୍ୱ ହୋଇ ପଡ଼ିଲେ । ବର୍ତ୍ତମାନ ମୁଁ ବୟଃପ୍ରାପ୍ତ ହେବାରୁ ସେ ମୋହର ପାଣି ପ୍ରାର୍ଥନା

ଓରନ୍ତେ ପିତା ତାହା ପ୍ରତ୍ୟାଖ୍ୟାନ କରି ଅର୍ଥପତି ନାମକ ଜଣେ ଚରିତ୍ରହୀନ ବିଭବଶାଳୀ ଯୁବକ ସହିତ ଆସନ୍ତା କାଲି ମୋହର ବିବାହ ଦେବା ନିମିତ୍ତ ନିଷ୍ପତ୍ତି କରି ଅଛନ୍ତି । ଏ ବିବାହ ପ୍ରଭାତ ହେଲେ ମୋହର ନିଷ୍ପତ୍ତି ଅମଙ୍ଗଳ ଘଟିବ । ସୁତରାଂ ମୁଁ ପିତୃଗୃହ ତ୍ୟାଗ କରି ମୋହର ପ୍ରିୟତମଙ୍କ ସଙ୍କେତ ଅନୁଯାୟୀ ତାହାଙ୍କ ସହିତ ମିଳିତ ହେବାକୁ ଯାଉଅଛି । ଏହାଦ୍ୱାରା ମୁଁ ମୋହର ସତୀତ୍ୱ ରକ୍ଷା ସଙ୍ଗେ ସଙ୍ଗେ ପିତାଙ୍କର ସତ୍ୟ ରକ୍ଷା କରି ପାରିବି, ଏହି ଆଶାରେ ସମାଜକୁ ଭ୍ରୂକ୍ଷେପ ନକରି ଆତ୍ମୀୟମାନଙ୍କୁ ତ୍ୟାଗକରିଛି । ଆପଣ ବୋଧହୁଏ ଜଣେ ଦସ୍ୟୁ । ମୁଁ ପ୍ରାର୍ଥନା କରୁଅଛି, ମୋହର ସମସ୍ତ ଅଳଙ୍କାର ଗ୍ରହଣ କରି, ମୋତେ ମୋ ପଥରେ ଗତିକରିବାକୁ ଦିଅନ୍ତୁ ।"

ଅର୍ଥପତିର ନାମ ଶୁଣି ମୋହର ଚକ୍ଷୁ ବିସ୍ଫାରିତ ହୋଇ ପଡ଼ିଲା । ପ୍ରତିହିଂସା ସାଧନର ସହଜ ଉପାୟ ମୁଁ ଏଠାରେ ପାଇଲି । ସରଳା ଯୁବତୀର ଧୈର୍ଯ୍ୟ ଓ ସାହସରେ ମୁଁ ବିଶେଷ ପ୍ରୀତ ହୋଇ ତାହାକୁ ଆଶ୍ୱାସନା ଦେଇ କହିଲି, "ସତୀ, ଆସ, ମୁଁ ତୁମକୁ ତୁମର ପ୍ରିୟତମଙ୍କ ବାସଭବନକୁ ନେଇ ଯିବି । ତୁମେ ଭୀତା ହୁଅନାହିଁ । ମୋତେ ବିଶ୍ୱାସ କର । ତୁମକୁ ନଗର ତ୍ୟାଗ କରି ପଳାୟନ କରିବାକୁ ହେବନାହିଁ । ଧନମିତ୍ରଙ୍କ ସହିତ ତୁମର ବିବାହ ଦେବା ପାଇଁ ତୁମ ପିତାଙ୍କୁ ସ୍ୱୀକୃତ କରାଇବା ଭାର ମୁଁ ନେଉଅଛି । ମୁଁ ଏହା ସମ୍ପୂର୍ଣ୍ଣ ଗୋପନୀୟ ରଖି ସକଳ ସୁବ୍ୟବସ୍ଥା କରିବି ।" ଏହା କହି ମୁଁ ଦୁଇପାଦ ଅଗ୍ରସର ହୋଇଅଛି ହଠାତ୍ ଦଳେ ଅସ୍ତ୍ରଧାରୀ ନଗରରକ୍ଷୀ ସେ ଦିଗରେ ଆସୁଥିବା ସୂଚନା ପାଇଲି । ସେମାନଙ୍କଠାରୁ ରକ୍ଷା ପାଇବା ପାଇଁ ହଠାତ୍ ଗୋଟିଏ ଉପାୟ କଲି । ମୁଁ ଅତି ଚଞ୍ଚଳ ଭାବରେ ଯୁବତୀଙ୍କୁ କହିଲି, "ଦେଖ, ରକ୍ଷିଗଣ

ଅସୁଅଛନ୍ତି । ଆମେ ଉଭୟେ ଧରା ପଡ଼ିବା । ତୁମେ ଛଳନା କର ଯେ, ମୁଁ ତୁମର ପତି । ମୋତେ ସର୍ପାଘାତ ହୋଇଛି । ମୁଁ ଅଚେତ ହୋଇ ପଡ଼ିଯାଉଛି । ସେମାନେ ନିକଟବର୍ତ୍ତୀ ହେଲେ, ଆମ୍ଭମାନେ ବିଦେଶୀ ବୋଲି କହି ତୁମେ ମନ୍ତ୍ରୌଷଧ ପ୍ରାର୍ଥନା କର ।"

ସଙ୍ଗେ ସଙ୍ଗେ ବିଷବିକାରଗ୍ରସ୍ତ ବ୍ୟକ୍ତି ପରି ମୁଁ ପଡ଼ିଗଲି । ଯୁବତୀ ମୋ ନିକଟରେ ଉପବେଶନ କରି ଅଶ୍ରୁପୂର୍ଣ୍ଣ ନୟନରେ କ୍ରନ୍ଦନ କରିବାକୁ ଲାଗିଲା । ନଗରରକ୍ଷିଗଣ ନିକଟକୁ ଆସନ୍ତେ ସେ ମୋହର ଉପଦେଶ ଅନୁଯାୟୀ ସମସ୍ତ କଥା କହିଗଲା । ରକ୍ଷିଗଣ ଯୁବତୀର ଆକସ୍ମିକ ବିପଦରେ ସମବେଦନା ପ୍ରକାଶ କରିବାକୁ ଲାଗିଲେ । ସେମାନଙ୍କ ମଧ୍ୟରୁ ଜଣେ ବିଷଚିକିତ୍ସା ଜାଣିଥିଲେ । ସେ ମୋହର ଚତୁର୍ଦ୍ଦିଗରେ ମଣ୍ଡଳାକାରରେ ଭ୍ରମଣ କରି ମୁଦ୍ରାସହ ମନ୍ତ୍ର ପାଠ କରିବାକୁ ଲାଗିଲେ । କିନ୍ତୁ କୌଣସି ପ୍ରକାରେ କୃତକାର୍ଯ୍ୟ ହୋଇ ନପାରି କହିଲେ, "କାଳସର୍ପର ଦଂଶନ—ସୁତରାଂ ଅସାଧ୍ୟ । ଦେଖ, ଶରୀର ନିସ୍ତେଜ, ନାଡ଼ିକା ଗତିହୀନ, ଦୃଷ୍ଟି ଶକ୍ତି ଲୋପ, ଦେହର ଉତ୍ତାପ ବିନଷ୍ଟ—ସୁତରାଂ ଅସମ୍ଭବ ଏବଂ କ୍ରନ୍ଦନ ନିରର୍ଥକ । ପ୍ରଭାତରେ ଦାହକ୍ରିୟାର ବ୍ୟବସ୍ଥା କରିବାକୁ ହେବ ।" ରକ୍ଷିଗଣ ସ୍ଥାନ ତ୍ୟାଗକରି ଚାଲିଗଲେ । ସେମାନେ ଏକ ଗଳି ଭିତରେ ପ୍ରବେଶ କରିବାରୁ ମୁଁ ଉଠି ଯୁବତୀଙ୍କ ସହ ଧନମିତ୍ରଙ୍କ ଗୃହ ଅଭିମୁଖରେ ଯାତ୍ରାକଲି । ଧନମିତ୍ର ନିଜ ପ୍ରିୟତମାଙ୍କ ସହିତ ମୋତେ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଡ଼ିଲେ । ମୁଁ ମୋହର ପରିଚୟ ଦେଇ କହିଲି, "ମହାଶୟ, ମୁଁ ଜଣେ ଦସ୍ୟୁ । ତଥାପି ଯୁବତୀଙ୍କରି ସତ୍ ସାହସରେ ଅତ୍ୟନ୍ତ ପ୍ରୀତହୋଇ ଯଥାସାଧ୍ୟ ସାହାଯ୍ୟ କରିବା ପାଇଁ ଅଙ୍ଗୀକାରଠାରୁ ତାହାଙ୍କର ସହଯାତ୍ରୀ ହୋଇଅଛି । ଆପଣ ଏପରି ରମଣୀରତ୍ନକୁ ପତ୍ନୀ ଭାବରେ ପାଇ ନିଜକୁ ନିଶ୍ଚୟ ଗୌରବାନ୍ୱିତ

ମନେ କରିବେ । ଏହି ତାହାଙ୍କର ଅଳଙ୍କାର ପେଟିକା ଗ୍ରହଣ କରନ୍ତୁ ।"

ଧନମିତ୍ର ମୋହର ପରସ୍ପର ବିରୋଧୀ ବେଶଭୂଷା, ଅକୃତ ପ୍ରକୃତି ଏବଂ ବାକ୍ୟାଳାପରେ ଅତ୍ୟଧିକ ବିସ୍ମିତ ହୋଇ ପଡ଼ିଲେ । କିନ୍ତୁ ମୋହର ନିଃସ୍ୱାର୍ଥ ପରୋପକାର ପାଇଁ ତାହାଙ୍କର ହୃଦୟ ମୋଠାରେ କୃତଜ୍ଞତାରେ ପୂର୍ଣ୍ଣ ହୋଇ ପଡ଼ିଲା । ସେ ମୋତେ ଅଶେଷ ଧନ୍ୟବାଦ ଅର୍ପଣ କରିବାକୁ ଲାଗିଲେ ।

ତାହାପରେ ମୁଁ ଧନମିତ୍ରଙ୍କୁ ପଚାରିଲି, "ଆସ୍ତ,'ବର୍ତ୍ତମାନ ଆପଣ କଅଣ କରିବେ ବୋଲି ଭାବୁଛନ୍ତି ?"

ଧନମିତ୍ର କହିଲେ, "ପିତାମାତାଙ୍କ ବିନାନୁମତିରେ ଯୁବତୀଙ୍କୁ ବିବାହକରି ଏ ନଗରୀରେ ଜୀବନ ଧାରଣ କରିବା ଅସମ୍ଭବ । ତେଣୁ ଏହି ରାତିରେ ଏ ଦେଶ ତ୍ୟାଗ କରିବାକୁ ଇଚ୍ଛା କରିଅଛି ।"

ମୁଁ କହିଲି, "ବାସ୍ତବ କଥା, କିନ୍ତୁ ସୁଚତୁର ବ୍ୟକ୍ତି ପକ୍ଷେ ସ୍ୱଦେଶ ଓ ବିଦେଶ ମଧ୍ୟରେ ପାର୍ଥକ୍ୟ ଅତି ଅଳ୍ପ । ସୁକୋମଳାଙ୍ଗୀ ବାଳିକାସହ ରାତ୍ରିକାଳୀନ ଗିରିପଥ ଅତିକ୍ରମ କରି ଦେଶତ୍ୟାଗ କରିବା ଅପେକ୍ଷା, ନିଜ ବୁଦ୍ଧିର ପରିଚୟ ଦେଇ କାର୍ଯ୍ୟ ସାଧନ କରିବା ଶ୍ରେୟସ୍କର । ମୁଁ ଏକ କର୍ମ–ଯୋଜନା ଚିନ୍ତା କରିଅଛି, ଯଦ୍ଦ୍ୱାରା ଯୁବତୀ ନିଜ ପିତାଙ୍କ ଗୃହକୁ ପ୍ରତ୍ୟାବୃତ୍ତ ହେଲେ ମଧ୍ୟ ଅର୍ଥପତିଙ୍କ ସହିତ ତାହାଙ୍କର ବିବାହ ହୋଇ ପାରିବ ନାହିଁ । ଅଥଚ କିନ୍ତୁ ଧନପତିରେ କୁବେରଦତ୍ତ ବାଧ୍ୟହୋଇ ତୁମ ସହିତ ନିଜକନ୍ୟାର ବିବାହ ଦେବେ ।"

ମୋ ପ୍ରସ୍ତାବରେ ସନ୍ଦିଗ୍ଧ ହୋଇ ଧନମିତ୍ର ପଚାରିଲେ—

"ଆମ୍ଭମାନଙ୍କର ପ୍ରତି ଆପଣଙ୍କ ଦୟା ଅସୀମ ଏଥିରେ ସନ୍ଦେହ

ନାହିଁ; କିନ୍ତୁ କାହିଁକି ଯେ ଏ ବ୍ୟାପାରରେ ଆପଣ ନିଜକୁ ଲିପ୍ତ କରୁଛନ୍ତି, ମୁଁ ଅନୁମାନ କରିପାରୁ ନାହିଁ । ଅର୍ଥପତିଙ୍କ ପ୍ରତି ଆପଣଙ୍କର କିଛି ଆକ୍ରୋଶ ଅଛି ନା କେବଳ ସତ୍‌ସାହସର ପରିଚୟ ଦେବା ଆପଣଙ୍କର ଏକମାତ୍ର ଉଦ୍ଦେଶ୍ୟ ?"

ମୁଁ କହିଲି, "ଉଭୟ ! କିନ୍ତୁ ବର୍ତ୍ତମାନ ସମସ୍ତ କଥା ପ୍ରକାଶ୍ୟ ନୁହେ । ଅର୍ଥପତିର କାର୍ଯ୍ୟରେ ବାଧାଦେବା ଏ ମୁହୂର୍ତ୍ତରେ ମୋହର ପ୍ରଧାନ ଲକ୍ଷ୍ୟ । ସମୟ ଅତୀତ ହୋଇଉଛି । ମୋହର ପ୍ରସ୍ତାବ ହେଉଛି, ଆସ ଆମେ ସଙ୍ଗେ ସଙ୍ଗେ କୁବେର ଦତ୍ତଙ୍କ ଗୃହ ଲୁଣ୍ଠନ କରି ଆଣିବା—ଏହା ଫଳରେ କାଲିର ବିବାହ ପ୍ରସ୍ତାବ ସ୍ଥଗିତ ହେବ—ସମୟ ପାଇ ଆମେ ଅନ୍ୟ ବ୍ୟବସ୍ଥା କରିବା ।"

ଧନମିତ୍ର ଏ ପ୍ରସ୍ତାବରେ ସମ୍ମତ ହୁଅନ୍ତେ ଉଭୟେ କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ବହିର୍ଗତ ହେଲୁଁ । ଯୁବତୀଙ୍କଠାରୁ ତାହାଙ୍କ ପିତାଙ୍କ ବାସଭବନର ସମସ୍ତ ବିବରଣ ସଂଗ୍ରହ କରି ଏବଂ ପରେ ତାହାଙ୍କୁ ପିତୃଭବନରେ ଯଥାସ୍ଥାନରେ ଉପସ୍ଥିତ କରାଇ ଆମ୍ଭେମାନେ ଗୃହର ସମସ୍ତ ଧନରତ୍ନ ହସ୍ତଗତ କରିବାକୁ ଲାଗିଲୁ । ଶେଷରେ ଗୃହ ମଧ୍ୟରେ ମୃଣ୍ମୟପାତ୍ର ମାତ୍ର ଅବଶିଷ୍ଟ ରହିଲା । ସମସ୍ତ ସମ୍ପତ୍ତି ଏକ ନିରାପଦ ସ୍ଥାନରେ ଗୋପନରେ ରଖି ଆମ୍ଭେମାନେ ପ୍ରଭାତ ପୂର୍ବରୁ ଫେରି ଆସିଲୁଁ ।

ପରଦିବସ ଦ୍ୱିପ୍ରହର ସମୟରେ ମୁଁ ନଗର ମଧ୍ୟରେ ଭ୍ରମଣ କରି ଚୋରିର ସମ୍ବନ୍ଧ ବହୁ ଜନରବ ଶୁଣି ପାରିଲି । କୁବେରଦତ୍ତ ସର୍ବସ୍ୱାନ୍ତ ହେବା ମାତ୍ରେ ବିବାହୋତ୍ସବ ବିଡ଼ମ୍ବନାରେ ପରିଣତ ହେଲା । ଭାବୀ ଶ୍ୱଶୁରଙ୍କର ବିପଦ ଦେଖି ଅର୍ଥପତି ତାହାଙ୍କ ନିକଟକୁ ଏକ ସହସ୍ର ସ୍ୱର୍ଣ୍ଣ ମୁଦ୍ରା ସାହାଯ୍ୟ ପଠାଇ କୁଳପାଳିକାଙ୍କ

ପରିଣୟ ପ୍ରସ୍ତାବ ଏକ ମାସ କାଳ ସ୍ଥଗିତ ରଖିବାପାଇଁ ସମ୍ବାଦ ପ୍ରେରଣ କଲେ । ଏହା ଫଳରେ ଅର୍ଥପତିର ସର୍ବନାଶ ସାଧନ କରିବା ପାଇଁ ଆମକୁ ପୂର୍ଣ୍ଣ ଏକ ମାସ ସମୟ ମିଳିଲା ।

ବହୁ କଳ୍ପନା ଜଳ୍ପନା ପରେ ମୁଁ ଗୋଟିଏ ଯୋଜନା ପ୍ରସ୍ତୁତକରି ଧନମିତ୍ରଙ୍କୁ ଜଣାଇଲି । ତାହା ହେଉଛି,ଧନମିତ୍ର ଗୋଟିଏ ଚର୍ମନିର୍ମିତ ଥଳୀସହ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଜଣାଇବେ, "ହେ ମହାରାଜ, ଏ ଦାସର ନିବେଦନ ଶ୍ରବଣ କରିବା ହୁଅନ୍ତୁ । ମୋହର ପିତା ବସୁପାଳିତ ଏ ନଗରୀର ସର୍ବଶ୍ରେଷ୍ଠ ବିତ୍ତଶାଳୀ ବଣିକଥିଲେ । ମୋହର ନାମ ଧନମିତ୍ର । ପିତାଙ୍କ ମୃତ୍ୟୁପରେ ବହୁ ଦାନକରି ମୁଁ ନିଃସ୍ୱ ହୋଇ ସର୍ବସାଧାରଣଙ୍କ ଅବଜ୍ଞାର ପାତ୍ର ହୋଇଅଛି । ମୋହର ବିଭବ ଥିବା ସମୟରେ କୁବେରଦତ୍ତ ତାହାଙ୍କର କନ୍ୟା କୁଳପାଳିକାକୁ ମୋ ସହିତ ବିବାହ ଦେବାପାଇଁ ବାଗ୍‌ଦାନ କରିଥିଲେ । କିନ୍ତୁ ଇତି ମଧ୍ୟରେ ସେ ତାହାଙ୍କର ମତ ପରିବର୍ତ୍ତନ କରି ଅର୍ଥପତିଙ୍କ ସହିତ କନ୍ୟାର ବିବାହ ଦେବା ସ୍ଥିର କଲେ । ଏ ଘଟଣା ମୋ ପକ୍ଷରେ ଏପରି ଦୁଃସହ ହୋଇ ପଡ଼ିଲା ଯେ ଆତ୍ମହତ୍ୟା ବ୍ୟତୀତ ଏ ମର୍ମନ୍ତୁଦ ଯନ୍ତ୍ରଣାରୁ ନିଷ୍କୃତି ପାଇବାର ଅନ୍ୟ ଉପାୟ ଦେଖିଲି ନାହିଁ । ଏହି ଦୁଶ୍ଚିନ୍ତାଗ୍ରସ୍ତ ହୋଇ ମୁଁ ଦିନେ ବନ ମଧ୍ୟରେ ଆତ୍ମହତ୍ୟା କରିବା ପାଇଁ ଚେଷ୍ଟିତ ହେଲି ବେଳେ ହଠାତ୍ ଏକ ସନ୍ନ୍ୟାସୀ ଆବିର୍ଭୂତ ହୋଇ ଆତ୍ମହତ୍ୟା ରୂପକ କାପୁରୁଷୋଚିତ କାର୍ଯ୍ୟ ନିମିତ୍ତ ମୋତେ ତିରସ୍କାର କରି କହିଲେ,"ବତ୍ସ, ଆତ୍ମହତ୍ୟାଠାରୁ ଗୁରୁତର ପାପ ଆଉ ନାହିଁ । ଧନ ଉପାର୍ଜନର ବହୁ ଉପାୟ ଅଛି । କିନ୍ତୁ ଛିନ୍ନକଣ୍ଠକୁ ପୁନଃସଂଯୋଜିତ କରି ପ୍ରାଣ ଲାଭ କରିବାର ଗୋଟିଏ ମଧ୍ୟ ଉପାୟ ନାହିଁ । ସୁତରାଂ ଆତ୍ମହତ୍ୟା କରନାହିଁ । ମୁଁ ମନ୍ତ୍ର ସିଦ୍ଧକରି ପ୍ରତିପାଦନ

ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ପ୍ରସବକାରୀ ଏହି ଚର୍ମସ୍ଥଳୀ ନିର୍ମାଣ କରିଅଛି । ଏହାର ଅନୁଗ୍ରହରୁ ମୁଁ କାମରୂପ ପ୍ରଦେଶର ଅଧିବାସୀମାନଙ୍କୁ ପରିତୃପ୍ତ କରି ବହୁକାଳାବଧି ସେଠାରେ ବାସ କରିଅଛି । ବର୍ତ୍ତମାନ ମୋହର ବାର୍ଦ୍ଧକ୍ୟ ଉପସ୍ଥିତ । ତୁମ୍ଭେ ଏ ଥଳୀଟି ଗ୍ରହଣ କରି ସୁଖରେ କାଳଯାପନ କର । କିନ୍ତୁ ତୁମେ ଏହାକୁ ବ୍ୟବହାର କରିବା ପୂର୍ବରୁ ଅନ୍ୟାୟ ଉପାର୍ଜିତ ଯେଉଁ ସମସ୍ତ ଧନ ତୁମେ ଯେଉଁ ବ୍ୟକ୍ତିଠାରୁ ଲାଭ କରିଥିବ ତାହା ସେମାନଙ୍କୁ ପ୍ରତ୍ୟର୍ପଣ କରିବାକୁ ହେବ ଏବଂ ନ୍ୟାୟସଂଗତ ଉପାୟରେ ଲବ୍ଧ ଧନ ଦେବାର୍ପଣ ଏବଂ ବ୍ରାହ୍ମଣମାନଙ୍କୁ ଦାନ କରି ଦେବାକୁ ହେବ । ତାହାପରେ ଏହାକୁ ଏକ ପବିତ୍ରସ୍ଥାନରେ ରଖି ପୂଜା କଲେ ପ୍ରତିଦିନ ପ୍ରଭାତକାଳରେ ଏଥିରୁ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ଲାଭ ହେବ । ଏହା କହି ସନ୍ନ୍ୟାସୀ ମୋ ହସ୍ତରେ ଥଳୀଟି ପ୍ରଦାନ କରି ଏକ ପ୍ରସ୍ତର ଗର୍ତ୍ତ ମଧ୍ୟରେ ପ୍ରବେଶ କରି ଅଦୃଶ୍ୟ ହୋଇଗଲେ । ମହାରାଜାଙ୍କ ଅଜ୍ଞାତରେ ଏପରି ଏକ ଦୈବୀଶକ୍ତିସଂପନ୍ନ ଥଳୀ ବ୍ୟବହାର କରିବା ମୋ ଭଳି ଏକ ପ୍ରଜାପକ୍ଷରେ ସମୀଚୀନ ନୁହେ । ତେଣୁ ମୋହର ନିବେଦନ ଏହିକି, ଏ ସମ୍ବନ୍ଧେ ମହାରାଜ ସମୁଚିତ ଆଦେଶ ପ୍ରଦାନ କଲେ ତଦନୁଯାୟୀ ମୁଁ କାର୍ଯ୍ୟକାରୀ ହେବ ।”

ତାହାପରେ ମୁଁ ଧନମିତ୍ରଙ୍କୁ କହିଲି,—“ଏକଥା ଶୁଣି ରାଜା ନିଶ୍ଚୟ ଅନୁମତି ପ୍ରଦାନ କରିବେ । କାରଣ ସେ ଲୋଭ ପରବଶ ହୋଇ ଥଳୀ ଗ୍ରହଣ କରିବାକୁ ଇଚ୍ଛୁକ ହେଲେ ତାହାଙ୍କୁ ପ୍ରଥମେ ରାଜ୍ୟତ୍ୟାଗ କରିବାକୁ ହେବ ।

ରାଜାଦେଶ ପାଇବା ମାତ୍ରେ ତୁମେ ଏହାର ସୁରକ୍ଷା ନିମିତ୍ତ ଉପଯୁକ୍ତ ପ୍ରହରୀ ପ୍ରାର୍ଥନା କରିବ । ରାଜା ଏଥିରେ ସ୍ୱୀକୃତ

ହେବେ ନିଶ୍ଚୟ । ତଦନନ୍ତରଂ ତୁମେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରି ସକଳ ସମ୍ପତ୍ତି ଦାନ କରିଦେବ ଏବଂ ସନ୍ନ୍ୟାସୀଙ୍କ ଆଦେଶ ଅନୁଯାୟୀ ପୂଜାନୁଷ୍ଠାନ କରିବ ।" ମୋହର ପ୍ରସ୍ତାବରେ ସମ୍ମତ ହୋଇ ଧନମିତ୍ର ଥଳୀସହ ରାଜଦରବାରରେ ଉପସ୍ଥିତ ହେଲେ । ରାଜା ଥଳୀର ମାହାତ୍ମ୍ୟ ଶୁଣି ଅତିଶୟ ଆନନ୍ଦିତ ହୋଇ ତାହା ନିଃଶଙ୍କମନରେ ବ୍ୟବହାର କରିବା ପାଇଁ ଅନୁମତି ପ୍ରଦାନ କରିବା ସଙ୍ଗେ ସଙ୍ଗେ ତାହାର ସୁରକ୍ଷା ନିମନ୍ତେ କେତେକ ପ୍ରହରୀଙ୍କୁ ଆଦେଶ କଲେ । ଧନମିତ୍ର ଗୃହକୁ ପ୍ରତ୍ୟାବର୍ତ୍ତନ କରି ବିଧିପୂର୍ବକ ପୂଜାନୁଷ୍ଠାନ ପରେ ଥଳୀଟିକୁ ଗୋଟିଏ କୋଠରୀରେ ଅତି ଯତ୍ନ ସହକାରେ ରଖିଲେ ଏବଂ ଦ୍ୱାରଦେଶରେ ପ୍ରହରୀଗଣ ଜାଗ୍ରତ ରହିଲେ । ମାତ୍ର ସେମାନଙ୍କର ସାରାରାତି ଉଜାଗର ସତ୍ତ୍ୱେ ପଶ୍ଚାତ୍ ଭାଗରୁ ଗୁପ୍ତ ପଥରେ ମୁଁ କୋଠରୀ ମଧ୍ୟରେ ପ୍ରବେଶ କରି ଚୋରିଲବ୍ଧ ସ୍ୱର୍ଣ୍ଣ ମୁଦ୍ରାଦ୍ୱାରା ଥଳୀ ପୂର୍ଣ୍ଣ କରିବା ବିଶେଷ କଷ୍ଟକର ହେଲନାହିଁ ।

ଅତି ପ୍ରତ୍ୟୁଷରୁ ଧନମିତ୍ର ଥଳୀସହ ଅତି ଉଲ୍ଲାସମନରେ ରାଜପଥକୁ ଆସି ସର୍ବସାଧାରଣଙ୍କୁ ଏ ବିସ୍ମୟକର ବ୍ୟାପାର ପ୍ରଦର୍ଶିତ କଲେ । ନଗରବାସୀ ସ୍ତବ୍ଧ ହୋଇଗଲେ । ଧନମିତ୍ରଙ୍କର ଏ ଅଲୌକିକ ଶକ୍ତି ଦର୍ଶନକରି କୁବେରଦତ୍ତଙ୍କର ବର୍ତ୍ତମାନ ପୂର୍ବ ବାଗ୍‌ଦାନ କଥା ସ୍ମରଣ ହୋଇ ପଡ଼ିଲା ଏବଂ ସେ ଧନମିତ୍ରଙ୍କ ସହିତ ନିଜ କନ୍ୟାର ବିବାହ ଦେବାକୁ ଲାଳାୟିତ ହେଲେ । ସୁତରାଂ ଅର୍ଥପତି କୋଧାନ୍ଧ ହୋଇ କୁବେରଦତ୍ତଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବା ପାଇଁ ଉଦ୍ୟତ ହେଲେ । ଏହି ସୁଯୋଗରେ ମୁଁ ମୋହର ବନ୍ଧୁ ବିମର୍ଦ୍ଦିକଙ୍କୁ ଅର୍ଥପତି ସହିତ ସଖ୍ୟସ୍ଥାପନ କରିବା ପାଇଁ ନିଯୁକ୍ତ କରିଦେଲି । ଖୁବ୍ ଅଳ୍ପସମୟରେ ସେ ଦୁହିଁଙ୍କ ମଧ୍ୟରେ ଅତି ଘନିଷ୍ଠତା ଆସିଗଲା ।

ଇତିମଧ୍ୟରେ ଅନ୍ୟ ଏକ ଗୁରୁତର ଘଟଣା ଘଟିଲା । ଦିନେ କାମମଞ୍ଜରୀର କନିଷ୍ଠା ଭଗିନୀ ରାଗମଞ୍ଜରୀ ଏକ ସଭାରେ ନୃତ୍ୟ କଲାବେଳେ ବନ୍ଧୁ ଧନମିତ୍ରଙ୍କ ସହିତ ମୁଁ ସେଠାରେ ଉପସ୍ଥିତ ଥିଲି । ରାଗମଞ୍ଜରୀ ସଭାରେ ନୃତ୍ୟ ଆରମ୍ଭ କରିବା ମାତ୍ରେ ମୋହର ଅନ୍ତରରେ ଏକ ଅଭିନବ ନୃତ୍ୟର ଆରମ୍ଭ ହେଲା । ନୀଳୋତ୍ପଳ ସଦୃଶ ତାହାର ନୟନ ଯୁଗଳର କଟାକ୍ଷ, ଅଷାଢ଼ ମେଘଖଣ୍ଡରେ ବିଦ୍ୟୁତ୍ ଚମକ ପରି ତାହାର ଅଙ୍ଗଲତାର ଲୀଳାବିଳାସ ଏବଂ ଚମ୍ପକ କଳିକା ତୁଲ୍ୟ ଅଙ୍ଗୁଳି ସଂଚାରର ସାବଲୀଳ ମୁଦ୍ରାପ୍ରକାଶ ମୋହର ପ୍ରତି ରନ୍ଧ୍ରରେ ପଞ୍ଚଶର ବିଦ୍ଧ କରିବାକୁ ଲାଗିଲା । ମୁଁ ମନେ ମନେ ମୋହର ହୃଦୟର ସର୍ବସ୍ୱ ତାହାକୁ ଅର୍ପଣ କରି ପକାଇଲି ।

ନୃତ୍ୟଶେଷରେ ରାଗମଞ୍ଜରୀ ବହୁ ଧନରତ୍ନ ପୁରସ୍କାର ସ୍ୱରୂପ ଲାଭକରି ସଭାତ୍ୟାଗ କଲାବେଳେ ମୋ ପ୍ରତି ଯେଉଁ ଅପାଙ୍ଗ ଦୃଷ୍ଟି ନିକ୍ଷେପ କରିଗଲା ତାହା ନାରୀହୃଦୟର ଅନ୍ତରତମ ଭାବ ପ୍ରକାଶ କରିବା ସଙ୍ଗେ ସଙ୍ଗେ, ମୋହର ପ୍ରାଣକୁ ଅଭିଭୂତ କରିଦେଲା । ମୁଁ ସଭା ତ୍ୟାଗକରି ଆସି ତାହାକୁ ଲାଭକରିବା ପାଇଁ ଉନ୍ମତ୍ତ ହୋଇ ପଡ଼ିଲି ।

କାମଶାସ୍ତ୍ରନିପୁଣ ଧନମିତ୍ର ମୋହର ମାନସିକ ଅବସ୍ଥା ବେଶ୍ ଅନୁମାନ କରି ପାରୁଥିଲେ । ସେ ନିର୍ଜନ ସ୍ଥାନକୁ ଆସିବା ପରେ କହିଲେ, "ବନ୍ଧୁ, ତୁମଭଳି ବ୍ୟକ୍ତି ରାଗମଞ୍ଜରୀ ପ୍ରତି ଆକୃଷ୍ଟ ହେବା ବୋଧହୁଏ ତାହାର ଭାଗ୍ୟର ଲିଖନ । ସେ ବେଶ୍ୟାକନ୍ୟା ହେଲେ ମଧ୍ୟ, ବହୁ ଧନୀବ୍ୟକ୍ତିଙ୍କୁ ପ୍ରତ୍ୟାଖ୍ୟାନ କରି, ଉପଯୁକ୍ତ ଗୁଣୀ ବ୍ୟକ୍ତିର ପାଣିଗ୍ରହଣ କରିବା ନିମିତ୍ତ ବର୍ତ୍ତମାନ ସୁଦ୍ଧା କୁମାରୀବ୍ରତ ଅବଲମ୍ବନ କରିଅଛି । ଯୋଗ୍ୟ ସହିତ ଯୋଗ୍ୟର

ଯୋଜନା ବୋଧହୁଏ ବିଧାତାର ଇଚ୍ଛା । ରାଗ ତାହାର ମନର ଗୋପନ କଥା ନୟନର ଭାଷାରେ ସ୍ପଷ୍ଟ ପ୍ରକାଶ କରି ଦେଇଛୁ ।"

ପର ଦିବସ ମୁଁ ଅନୁସନ୍ଧାନ କରି ବୁଝିଲି ଯେ, ଯେତେ ଶୀଘ୍ର ସମ୍ଭବ ରାଗମଞ୍ଜରୀଙ୍କୁ ବିବାହ ଦେଇଦେବା ତାହାର ପିତା-ମାତାଙ୍କର ଇଚ୍ଛା । କିନ୍ତୁ ଏ ପ୍ରସଙ୍ଗ ଉତ୍ଥାପନ କଲେ ମୋ ଭଳି ଜୀବିକାହୀନ ଅଜ୍ଞାତକୁଳଶୀଳ ବ୍ୟକ୍ତି ପ୍ରତି ସେମାନେ ଆକୃଷ୍ଟ ହେବା ନିମିତ୍ତ କୌଣସି ଅନୁକୂଳ କାରଣ ମୁଁ ଖୋଜି ପାଇଲି ନାହିଁ ।

ମାତ୍ର ରାଗମଞ୍ଜରୀ ପ୍ରତି ମୁଁ କ୍ରମେ ଏପରି ଆସକ୍ତ ହୋଇ ପଡ଼ିଲି ଯେ ତାହାର ଚିନ୍ତା ଛଡ଼ା ମୋ ମନରେ ଆଉ କିଛି ସ୍ଥାନ ପାଇଲା ନାହିଁ । ଶେଷରେ ବହୁଚିନ୍ତା ପରେ ମୁଁ ଏକ ଉପାୟ ସ୍ଥିର କଲି । କାମମଞ୍ଜରୀ ଓ ଅର୍ଥପତିଙ୍କ ମଧ୍ୟରେ ପୂର୍ବ ସ୍ନେହ ସମ୍ପର୍କ ପ୍ରତିଷ୍ଠା କରିବା ଏଥି ନିମିତ୍ତ ସର୍ବ ପ୍ରଥମ ଓ ପ୍ରଧାନ ଆବଶ୍ୟକ ହେଲା । ଏହା ମୋ ପକ୍ଷେ ଦୁରୂହ ବ୍ୟାପାର ହେଲେ ମଧ୍ୟ ବନ୍ଧୁ ବିମର୍ଦ୍ଦିକଙ୍କ ସାହାଯ୍ୟରେ ଅତି ଅକ୍ଲେଶରେ ସାଧିତ ହୋଇ ପାରିଲା । କାରଣ କୁବେରଦତ୍ତଙ୍କ କନ୍ୟାକୁ ହରାଇଥିବା ଯୋଗୁଁ ଅର୍ଥପତି କାମମଞ୍ଜରୀ ପ୍ରତି ଅଳ୍ପ ପ୍ରୟାସରେ ପୁଣି ଆସକ୍ତ ହୋଇ ତାହାକୁ ବିବାହ କରିବା ପାଇଁ ସ୍ୱୀକୃତ ହୋଇ ପଡ଼ିଲେ ।

ମୋହର ଯୋଜନା ଏହିପରି କ୍ରମେ ଦୃଢ଼ତର ହୋଇ ସାରିବା ପରେ ଦିନେ ମୁଁ କାମମଞ୍ଜରୀ ନିକଟକୁ ଏକ ଦୂତୀଦ୍ୱାରା କହି ପଠାଇଲି ଯେ, ମୁଁ ରାଗମଞ୍ଜରୀ ପ୍ରତି ଅତ୍ୟନ୍ତ ଆସକ୍ତ ହୋଇ ପଡ଼ିଛି । ମୁଁ ତାହାକୁ ବିବାହ କରି ଧର୍ମପତ୍ନୀ ଭାବରେ ଗ୍ରହଣ କରିବାକୁ ପ୍ରସ୍ତୁତ । ମୁଁ ଉଚ୍ଚକୁଳ ସମ୍ଭୂତ ଭଦ୍ରସନ୍ତାନ । କେତେକ

ଗୁପ୍ତଚର କାରଣ ବଶତଃ ବର୍ତ୍ତମାନ ଦୁଇ ବର୍ଷ ପାଇଁ ମୋହର ଅଭିଜାତ୍ୟ ପ୍ରକାଶ ନ କରିବା ନିମିତ୍ତ ମୁଁ ପ୍ରତିଜ୍ଞାବଦ୍ଧ । ଏପରି ଅବସ୍ଥାରେ ଯଦି ସେ ମୋ ସହିତ ରାଗମଞ୍ଜରୀର ବିବାହ ଦିଅନ୍ତି ତେବେ ମୁଁ କୌଶଳ କ୍ରମେ ନନ୍ଦିସିଦ୍ଧ ଥଳୀଟି ତାହାଙ୍କୁ ଆଣିଦେବି ।

ଆଶ୍ଚର୍ଯ୍ୟର କଥା, ତାମମଞ୍ଜରୀ ଏ ପ୍ରସ୍ତାବରେ ଅତି ସହଜରେ ସମ୍ମତା ହୋଇଗଲା । ତେଣୁ ମୁଁ ମୋହର ବନ୍ଧୁଙ୍କ ନିକଟରୁ ଥଳୀଟି ଆଣି ଗୋପନରେ କାମମଞ୍ଜରୀଙ୍କୁ ଅର୍ପଣ କରିଦେଲି । ଏଠାରେ କହି ରଖିବା ବାହୁଲ୍ୟ ଯେ,ରାଗମଞ୍ଜରୀ ମୋ ପ୍ରତି ଅତ୍ୟନ୍ତ ଅନୁରକ୍ତା ଥିଲା ସୁତରାଂ ଅନତିବିଳମ୍ବେ ତାହା ସହିତ ମୋହର ବିବାହ ସମ୍ପନ୍ନ ହୋଇଗଲା ।

ଏହାପରେ ମୋହର ଉଭୟ ବନ୍ଧୁ ଧନମିତ୍ର ଓ ବିମର୍ଦ୍ଦିକଙ୍କ ମଧ୍ୟରେ ପୁରବାସୀଗଣଙ୍କ ଗୋଚର ନିମିତ୍ତ ଗୋଟାଏ ଛଳନାମୂଳକ କଳହ ଲଗାଇବା ଆବଶ୍ୟକ ହେଲା । ମୋହର ଉପଦେଶ ଅନୁଯାୟୀ ଉଭୟବନ୍ଧୁ ଅତି ଦକ୍ଷତାର ସହ ସର୍ବସମକ୍ଷରେ ଏହା ସମାଧାନ କରି ପାରିଥିଲେ । ବିମର୍ଦ୍ଦିକ ଅର୍ଥପତିର ମିତ୍ରଭାବରେ ତାହାର ପକ୍ଷଧର ଧନମିତ୍ରଙ୍କୁ ନାନାଭାବରେ ତିରସ୍କାର କରି କହିଲେ, "ରେ କୁଳାଙ୍ଗାର, କୁବେରଦତ୍ତଙ୍କୁ ଧନଦ୍ୱାରା ବଶୀଭୂତ କରି ତୁ ତାହାଙ୍କର କନ୍ୟାକୁ ବିବାହ କରିବା ନିମିତ୍ତ ଚେଷ୍ଟିତ ହେବା ଫଳରେ ମୋହର ବନ୍ଧୁ ଅର୍ଥପତିଙ୍କର ଶତ୍ରୁ ହୋଇଛୁ । ଥଳୀଦ୍ୱାରା ଅନାୟାସ ଲବ୍ଧ ଧନ ତୋହର ଏ ଅହଂକାରର କାରଣ ହୋଇଛି । ଅଚ୍ଛା ଦେଖାଯାଉ ତୋହର ଏ ଗର୍ବ ଅଉ କେତେ ଦିନ ସ୍ଥାୟୀହେବ ।"

ଏ ଘଟଣା ପରେ ମୋହର ସଙ୍କେତ ଅନୁଯାୟୀ ବିମର୍ଦ୍ଦିକ ଉଜ୍ଜୟିନୀ ନଗରୀକୁ ପଳାୟନ କଲେ । ଏଣେ ସଙ୍ଗେ ସଙ୍ଗେ ବନ୍ଧୁ ଧନମିତ୍ର ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଜଣାଇଲେ ଯେ, ତାହାଙ୍କର ମନ୍ତ୍ରସିଦ୍ଧ ମୁଣିଟି ହଠାତ୍ ଅପହୃତ ହୋଇଛି ଏବଂ ଏଥିପାଇଁ ସେ ଅର୍ଥପତିଙ୍କ ବନ୍ଧୁ ବିମର୍ଦ୍ଦିକଙ୍କୁ ସନ୍ଦେହ କରନ୍ତି । ଏହାର କାରଣ ସ୍ୱରୂପ ସେ ପୂର୍ବଦିନର କଳହ ଏବଂ ଅକସ୍ମାତ୍ ବିମର୍ଦ୍ଦିକର ନଗରତ୍ୟାଗ କଥା ଅଭିଯୋଗ ସହିତ ଉପସ୍ଥାପିତ କଲେ । ତେଣୁ ରାଜା ଅର୍ଥପତିଙ୍କୁ ଡକାଇ ବିମର୍ଦ୍ଦିକଙ୍କୁ ଯଥାଶୀଘ୍ର ଦରବାରରେ ଉପସ୍ଥିତ କରାଇବା ପାଇଁ ଆଦେଶ ଦେଲେ ।

ଅର୍ଥପତି ଏ ବିଷମ ପରିସ୍ଥିତିରେ ପଡ଼ି ବିମର୍ଦ୍ଦିକର ବହୁ ଅନୁସନ୍ଧାନ କଲେ । କିନ୍ତୁ ସମସ୍ତ ଚେଷ୍ଟା ବୃଥା ହେଲା । ଫଳତଃ ରାଜା ଅଧିକ କ୍ରୁଦ୍ଧ ହୋଇ ଅର୍ଥପତି ଉଦ୍ଦେଶ୍ୟ ପୂର୍ବକ ବିମର୍ଦ୍ଦିକଙ୍କୁ ଗୁପ୍ତସ୍ଥାନରେ ରଖିଥିବା ଅନୁମାନ କରି ତାହାଙ୍କୁ ବନ୍ଦୀ କଲେ ।

ଏ ଘଟଣାର କିଛି ଦିନ ପରେ କାମମଞ୍ଜରୀ ମନ୍ତ୍ରସିଦ୍ଧ ଥଳୀର ଶକ୍ତି ପରୀକ୍ଷା କରି ଦୈନିକ ଲକ୍ଷ ସଂଖ୍ୟକ ସ୍ୱର୍ଣ୍ଣମୁଦ୍ରା ପାଇବା ପାଇଁ ଉତ୍କଣ୍ଠିତା ହୋଇ ଉଠିଲା । ସୁତରାଂ ଧନମିତ୍ରଙ୍କ ପରି ସେ ମଧ୍ୟ ଥଳୀର ନିୟମ ସକଳ ପାଳନ କରିବାକୁ ଲାଗିଲା । ପ୍ରଥମତଃ ସେ ବନ୍ଧୁ ବିରୂପକଙ୍କଠାରୁ ଅପହୃତ ସମସ୍ତ ଧନରତ୍ନ ତାହାଙ୍କୁ ପ୍ରତ୍ୟର୍ପଣ କଲା । ସମସ୍ତ ସମ୍ପତ୍ତି ପାଇ ବିରୂପକ ବୌଦ୍ଧଭିକ୍ଷୁର ବେଶ ତ୍ୟାଗ କରି ସ୍ୱଧର୍ମ ଅବଲମ୍ବନ କଲେ ।

କାମମଞ୍ଜରୀ ଅତି ଉଦାରଭାବରେ ନିଜର ସକଳ ସମ୍ପତ୍ତି ଦୀନଦରିଦ୍ରମାନଙ୍କୁ ବିତରଣ କରିବାରୁ ଶେଷରେ ଚୁଲ୍ଲୀ ମାତ୍ର ଅବଶିଷ୍ଟ ରହିଲା । ଲୋକେ ତାହାର ଏ ଦାନ ଦେଖି ବିସ୍ମିତ

ହେବାକୁ ଲାଗିଲେ, କିନ୍ତୁ ଏଣେ ଧନମିତ୍ର ରାଜଦରବାରରେ ଜଣାଇ ଦେଲେ ଯେ କାମମଞ୍ଜରୀର ଏ ସର୍ବସ୍ୱ ଦାନ ଯୋଗୁଁ ମନ୍ତ୍ରସିଦ୍ଧ ଥଳୀଟି ବର୍ତ୍ତମାନ ତାହା ନିକଟରେ ଥିବାର ସନ୍ଦେହ ହୁଏ ।

ରାଜା ସଙ୍ଗେ ସଙ୍ଗେ କାମମଞ୍ଜରୀ ଓ ତାହାର ମାତାକୁ ଡକାଇଲେ । ଏତିକି ବେଳେ ମୁଁ ସେମାନଙ୍କୁ କହିଲି, "ତୁମେ ତୁମର ସର୍ବସ୍ୱ ବିତରଣ କରିବା ଫଳରେ ମନ୍ତ୍ରସିଦ୍ଧ ଥଳୀ କଥା ପ୍ରକାଶ ପାଇଛି । ଏ ସମ୍ପର୍କରେ ରାଜା ତୁମ୍ଭମାନଙ୍କୁ ଡକାଇଛନ୍ତି । ଏ ଥଳୀ ମୁଁ ତୁମ୍ଭମାନଙ୍କୁ ଦେଇଥିବା କଥା ଯଦି ତୁମ୍ଭେମାନେ ପ୍ରକାଶ କର ତେବେ ମୋହର ନିଶ୍ଚୟ ପ୍ରାଣଦଣ୍ଡ ଆଦେଶ ହେବ । ତୁମ୍ଭେମାନେ ବର୍ତ୍ତମାନ ନିଃସ୍ୱ ହୋଇଯାଇଛ । ଶେଷରେ ତୁମ୍ଭର ଭଗିନୀ ମଧ୍ୟ ବୈଧବ୍ୟ ଦୁଃଖ ଭୋଗ କରିବ ।"

ଏକଥା ଶୁଣି କାମମଞ୍ଜରୀ ଓ ତାହାର ମାତା ଅତ୍ୟନ୍ତ ବ୍ୟଥିତ ହୋଇ ପଡ଼ିଲେ । ସେମାନେ ଏ ବିପଦରୁ କିପରି ଉଦ୍ଧାର ପାଇବେ ସେଥିପାଇଁ ବହୁ ଚିନ୍ତା କରିଗଲେ । ଶେଷରେ ଅର୍ଥପତି ନାମରେ ଏ ଦୋଷ ଆରୋପ କରିବା ଏକମାତ୍ର ଉପାୟ ଦେଖି ସେମାନେ ରାଜାଙ୍କ ସମକ୍ଷରେ ଉପସ୍ଥିତ ହୋଇ ତାହା ପ୍ରକାଶ କଲେ । ଫଳତଃ ରାଜା ଥଳୀଟି ସେମାନଙ୍କଠାରୁ ନେଇ ଧନମିତ୍ରଙ୍କୁ ଦାନ କରିବା ସଙ୍ଗେ ସଙ୍ଗେ ଅର୍ଥପତି, କାମମଞ୍ଜରୀ ଓ ତାହାର ମାତାକୁ ରାଜ୍ୟରୁ ନିର୍ବାସିତ କରି ଦେଲେ ।

ଧନମିତ୍ର ଥଳୀଟି ପାଇ ଜଣେ ତୀର୍ଥଯାତ୍ରୀଙ୍କୁ ତାହା ଦାନ କରିଦେଲେ । ଶୁଭ ଦିବସରେ କୁବେରଦତ୍ତଙ୍କ କନ୍ୟା କୁଳପାଳିକାଙ୍କ ସହିତ ତାହାଙ୍କର ବିବାହ ସମ୍ପନ୍ନ ହେଲା ।

ବର୍ତ୍ତମାନ ମୁଁ ପୂର୍ଣ୍ଣମନୋରଥ ହୋଇ ରାଗମଞ୍ଜରୀ ସହିତ ଅତି ଆନନ୍ଦରେ କାଳଯାପନ କରିବାକୁ ଲାଗିଲି । ଧନରତ୍ନର ଅଭାବ ମୋହର ନ ଥିଲା । ନଗରର ଲୋଭୀ ବଣିକମାନଙ୍କ ଭଣ୍ଡାର ଲୁଣ୍ଠନ କରି ମୁଁ ମୋହର ଗୃହ ପୂର୍ଣ୍ଣ କରିଥିଲି । ମୋହର ଚୌର୍ଯ୍ୟରେ କେତେକ ବିଭବଶାଳୀ ବ୍ୟକ୍ତି ଭିକ୍ଷାପାତ୍ରସର୍ବସ୍ୱ ହୋଇ ମୋ ଦ୍ୱାରକୁ ଆସିଲେ, ମୁଁ ସେହିମାନଙ୍କ ଧନ ପ୍ରତ୍ୟର୍ପଣ ଦ୍ୱାରା ସେମାନଙ୍କ ସନ୍ତୋଷ ବିଧାନ କରୁଥିଲି ।

ମାନବ ସକଳ କାର୍ଯ୍ୟରେ ଦକ୍ଷତା ଅର୍ଜ୍ଜନ କଲେ ମଧ୍ୟ କର୍ମଫଳକୁ ଅତିକ୍ରମ କରିବା ତାହାର ଶକ୍ତିର ଅତୀତ । ମୁଁ ଋଷି ମରୀଚିଙ୍କ ଆଦେଶ କେତେକାଂଶରେ ପାଳନ କରିଥିବାରୁ ତାହାଙ୍କୁ ସାକ୍ଷାତ୍ କରିବା ଇଚ୍ଛା ହୃଦୟରେ ବଳବତୀ ହୋଇ ଆସିଲା ବେଳେ ହଠାତ୍ ଦିନେ ମୋ ନିଜ ଦୁଷ୍କର୍ମର ଫଳ ମୋତେ ଭୋଗିବାକୁ ହେଲା ।

ଅତ୍ୟନ୍ତ ଲଜ୍ଜା ସହକାରେ ମୁଁ ଏକଥା ପ୍ରକାଶ କରିବାକୁ ବାଧ୍ୟ ହେଉଛି ଯେ, ଏକ ରାତିରେ ଅତିରିକ୍ତ ମଦ୍ୟପାନ ଫଳରେ ମୁଁ ଉନ୍ମତ୍ତ ହୋଇ ପଡ଼ିଲି ଏବଂ ପାଗଳ ଭଳି ଚିତ୍କାର କରି କହିଲି, "ମୁଁ ଏହି ରାତି ମଧ୍ୟରେ ସମସ୍ତ ନଗରୀ ଲୁଣ୍ଠନକରି ମୋହର ଗୃହ ପୂର୍ଣ୍ଣ କରିଦେବି ।" ମୋହର ପ୍ରଳାପ ଶୁଣି ରାଗମଞ୍ଜରୀ ପ୍ରମାଦ ଗଣିବାକୁ ଲାଗିଲା ଏବଂ, ମୁଁ ଖଡ଼୍ଗହସ୍ତରେ ଗୃହରୁ ବହିର୍ଗତ ହେଲାବେଳେ କାକୁତିପୂର୍ଣ୍ଣ ବାକ୍ୟରେ ମୋହର ପଥରୋଧ କରିବାକୁ ଚେଷ୍ଟାକଲା । କିନ୍ତୁ ମତ୍ତହସ୍ତୀର ଗତି କଦଳୀବୃକ୍ଷ ଦ୍ୱାରା ରୁଦ୍ଧହେବା ହାସ୍ୟାସ୍ପଦ ମାତ୍ର । ଏକ ପଦାଘାତରେ ପ୍ରିୟତମାକୁ ଭୂତଳଶାୟୀ କରି ମୁଁ ନଗରୀ ମଧ୍ୟକୁ ଧାବମାନ ହେଲି । ତେବେସୁଦ୍ଧା ରାଗମଞ୍ଜରୀ

ସଙ୍ଗେ ସଙ୍ଗେ ପୁନଶ୍ଚ ଉତ୍ଥିତା ହୋଇ ଧାତ୍ରୀ ଶୃଗାଳିକାକୁ ମୋହର ଅନୁସରଣ କରିବା ପାଇଁ ଆଦେଶ କଲା ।

ମୁଁ କିଛିଦୂର ଅଗ୍ରସର ହେବାପରେ ହଠାତ୍ ଦଳେ ନଗରରକ୍ଷୀ ମୋହର ଅବସ୍ଥା ଲକ୍ଷକରି ମୋତେ ବନ୍ଦୀ କରିବାକୁ ଚେଷ୍ଟା କଲେ । ସୁତରାଂ ଗୋଟାଏ ଖଣ୍ଡଯୁଦ୍ଧର ସୃଷ୍ଟି ହେଲା ଏବଂ ମୁଁ ଦୁଇ ତିନିଜଣ ରକ୍ଷୀଙ୍କୁ ହତ୍ୟାକରି ସାରିବା ପରେ କ୍ଳାନ୍ତହୋଇ ପଡ଼ିଯିବାରୁ ରକ୍ଷିଗଣ ମୋହର ହସ୍ତ ପଦ ଶୃଙ୍ଖଳିତ କରି ପକାଇଲେ । ଏହାଫଳରେ ମୋହର ମତ୍ତତା ଦୂରୀଭୂତ ହୋଇ ଚୈତନ୍ୟୋଦୟ ହେଲା ।

ଏତିକି ବେଳେ ଶୃଗାଳିକା ଆତଙ୍କିତ ହୋଇ ମୋ ନିକଟକୁ ଦୌଡ଼ି ଆସିଲା । ମୁଁ ମୋହର ଅବସ୍ଥା ଓ ପରିସ୍ଥିତି ଲକ୍ଷକରି କର୍ତ୍ତବ୍ୟ ନିର୍ଦ୍ଧାରଣ କରିବାକୁ ଲାଗିଲି । ମୋହର ପାପକର୍ମଦ୍ୱାରା ବର୍ତ୍ତମାନ ସୁକୁମାରୀ ରାଗମଞ୍ଜରୀ ଓ ପରମବନ୍ଧୁ ଧନମିତ୍ର ମଧ୍ୟ ନିହତ ଓ ରାଜାଙ୍କ ଦ୍ୱାରା ଦଣ୍ଡିତ ହେବେ ଏହା ମୋ ମନରେ ବିଶେଷ ଅନୁତାପ ଆଣିଦେଲା । ତେଣୁ ଏ ବିପଦରୁ ନିଜକୁ ଓ ସେମାନଙ୍କୁ ରକ୍ଷାକରିବା ପାଇଁ ଉପାୟ ସ୍ଥିରକରି ଭର୍ତ୍ସନା ପୂର୍ଣ୍ଣ ସ୍ୱରରେ ଶଙ୍କାରହିତ ଶୃଗାଳିକାକୁ କହିଲି, "ଦୂର ହୁଅ ପାପିଷ୍ଠା ! ତୁଂ ପୁଣି ଏଠାରେ ? ତୋହର ଯୋଗୁଁ ଧନମିତ୍ର ମୋହର ବିରୋଧୀ ଏବଂ ମୋହର ବିବାହିତା ପତ୍ନୀ ମୋ ପ୍ରତି ବିମୁଖ ହୋଇଛି । ଶୀଘ୍ର ଏଠାରୁ ଦୂର ହୁଅ ! ମୁଁ ମୋହର ପ୍ରତିଶୋଧ ନେଇ ସାରିଛି । ରାଗମଞ୍ଜରୀର ସୁରକ୍ଷିତ ରତ୍ନରାଜି ଆଉ ଯଥାସ୍ଥାନରେ ନାହିଁ । ବର୍ତ୍ତମାନ ମୁଁ ନିଶ୍ଚିନ୍ତରେ ମରିପାରେ ।"

ଶୃଗାଳିକା ଅତ୍ୟନ୍ତ ଚତୁରୀ । ସେ ମୋହର ଛଳନା ମୂଳକ ପ୍ରଳାପ ବାକ୍ୟରୁ ବୁଝି ପାରିଲା ଯେ ମୁଁ ତାହାକୁ କିଛି କହିବାକୁ ଇଚ୍ଛୁକ । ସେ କ୍ରନ୍ଦନ କରୁ କରୁ ନଗର ରକ୍ଷୀଙ୍କୁ ବିନୀତ ଭାବରେ ଅନୁରୋଧ କରି କହିଲା, "ମହାଶୟ, ପ୍ରକୃତରେ ମୋ କନ୍ୟାର ସମସ୍ତ ରତ୍ନ ଅପହୃତ ହୋଇଛି । ଅନୁମତି ଦେଲେ ମୁଁ ବନ୍ଦୀ ସହିତ ଦୁଇପଦ କଥାବାର୍ତ୍ତା କରି ରତ୍ନ ଗୁଡ଼ିକର ସମ୍ବାଦ ସଂଗ୍ରହ କରିବାର ସୁଯୋଗ ପାଆନ୍ତି ।"

ରମଣୀର ବିକଳ ପ୍ରାର୍ଥନା ରକ୍ଷିମାନଙ୍କର କଠୋର ହୃଦୟକୁ ମଧ୍ୟ ବିଗଳିତ କରିଦେଲା । ସେମାନଙ୍କର ଅନୁମତି ପାଇ ଶୃଗାଳିକା ମୋହର ନିକଟବର୍ତ୍ତୀ ହେବାମାତ୍ରେ ମୁଁ କେତେକ ବୃଥା ପ୍ରଳାପ କରିବା ସଙ୍ଗେ ସଙ୍ଗେ ମୋତେ ଏ ବିପତ୍ତିରୁ ଉଦ୍ଧାର କରିବା ପାଇଁ ସେ କି ଉପାୟ ଅବଲମ୍ବନ କରିବ ମନ୍ତ୍ରଭଳି ତାହାର କାନ-ପାଖରେ କହି ଦେଲି । ସେ ସମ୍ମତି ଜଣାଇ ମୋ ନିକଟରୁ ଗୁଲିଗଲା ଏବଂ ରକ୍ଷିମାନଙ୍କର ଉଦାରତା ପାଇଁ କୃତଜ୍ଞତା ଜଣାଇ ଗୃହ ଅଭିମୁଖରେ ପ୍ରତ୍ୟାବୃତ୍ତ ହେଲା ।

ରକ୍ଷୀ ସେନାପତିଙ୍କ ଆଦେଶରେ ମୁଁ ବନ୍ଦୀ ହେଲି । କାରାଗାରର ଅଧ୍ୟକ୍ଷ ଜଣେ ଯୁବକ, ନାମ କାନ୍ତକ । ସେ ତାହାର ପିତାଙ୍କ ମୃତ୍ୟୁପରେ ଯୌବନର ପ୍ରାରମ୍ଭରେ ପିତୃପଦ ଲାଭକରି ମହା ଅଭିମାନୀ, ରୂପଗର୍ବୀ ଓ ଯୌବନ ମଦମତ୍ତ ହୋଇ ପଡ଼ିଥିଲା । ପରଦିନ ପ୍ରଭାତରେ ସେ ମୋ ସମ୍ମୁଖକୁ ଆସି ମୋତେ ନାନା ପ୍ରକାର ତିରସ୍କାର କରି କହିଲା ଯେ, ଯଦି ମୁଁ ଧନମିତ୍ରର ଚର୍ମଥଳୀ ଓ ନଗର ବାସୀମାନଙ୍କର ଅପହୃତ ସକଳ ସମ୍ପତ୍ତି ପ୍ରତ୍ୟର୍ପଣ ନ କରେ ତେବେ ମୋତେ ଅଷ୍ଟାଦଶ ପ୍ରକାର ଦଣ୍ଡ ଭୋଗକରି ଶେଷରେ ମୃତ୍ୟୁମୁଖରେ ପତିତ ହେବାକୁ ହେବ ।

ମୁଁ ଜାଣେ, ବର୍ନୀପ୍ରତି ଏପରି ବ୍ୟବହାର କରିବାର ଅଧିକାରୀ କ୍ଷମତା ଓ କର୍ତ୍ତବ୍ୟର ବହିର୍ଭୂତ । ତେଣୁ ମୁଁ ତାହାକୁ ଉପଯୁକ୍ତ ପ୍ରତ୍ୟୁତ୍ତର ଦେବାକୁ ପଶ୍ଚାତ୍‌ପଦ ହେଲି ନାହିଁ । କାନ୍ତକ ସେଦିନ ନିରୁତ୍ତର ହୋଇଗଲା ସତ୍ୟ ମାତ୍ର ଏ ମନାନ୍ତର ଆମ ଦୁହିଁଙ୍କ ମଧ୍ୟରେ ଉତ୍ତରୋତ୍ତର ବୃଦ୍ଧି ପାଇବାକୁ ଲାଗିଲା ।

ଦିନେ କାନ୍ତକ ମୋ ପ୍ରତି ଅତିରିକ୍ତ ବିରକ୍ତ ହୋଇ ମୋତେ ପ୍ରହାର କରିବା ନିମିତ୍ତ ଭୃତ୍ୟମାନଙ୍କୁ ଆଦେଶ କଲା । ଏ ଦଣ୍ଡ ଏବଂ ଅପମାନ ମୁଁ ନୀରବରେ ସେ ଦିନ ସହ୍ୟକଲି । କିନ୍ତୁ ଫଳତଃ ମୋ ହୃଦୟ ମଧ୍ୟରେ ପ୍ରତିହିଂସାବହ୍ନି ପ୍ରଜ୍ୱଳିତ ହେଲା । ଏହାର ପ୍ରତିଶୋଧ ନେବାପାଇଁ ମୁଁ ବଦ୍ଧପରିକର ହେଲି ।

ଏ କାରାବାସରେ ମୁଁ ମୋହର ପୂର୍ବ ପରିଚିତ ଅନେକ ବନ୍ଧୁଙ୍କର ଦେଖା ପାଇଲି । ପ୍ରହାରର ବ୍ୟଥା ଉପଶମ ହେବା ପରେ ସେମାନଙ୍କ ସହିତ ଆଳାପ କରି ମୋହର ସମସ୍ତ ଅତି ଆନନ୍ଦରେ ଅତିବାହିତ ହେଲା । ସୁତରାଂ ଏ କାରାବାସକୁ ମୋହର କର୍ମକ୍ଳାନ୍ତ ଜୀବନରେ ଏକ ଆମୋଦପ୍ରଦ ପରିବର୍ତ୍ତନ ଭାବରେ ଗ୍ରହଣ କରିନେଲି । କିଛିଦିନ ମଧ୍ୟରେ କାରାଗାରର ଦ୍ୱାରପାଳ ଓ ରକ୍ଷିମାନଙ୍କ ସହିତ ମଧ୍ୟ ମୋହର ଘନିଷ୍ଠତା ସ୍ଥାପିତ ହେଲା ।

ଖୁବ୍‌କମ୍ ସମୟପାଇଁ ଏ ବନ୍ଦୀ ଜୀବନ ମୋତେ ଉପଭୋଗ କରିବାକୁ ହେବ ବୋଲି ମୁଁ ଆଶା କରିଥିଲି । କାରଣ ଶୃଗାଳିକା ଦ୍ୱାରା ଧନମିତ୍ରଙ୍କ ନିକଟକୁ ମୁଁ କହି ପଠାଇଥିଲି ଯେ ସେ ମୋ ନିମିତ୍ତ ରାଜାଙ୍କ ନିକଟରେ କ୍ଷମା ପ୍ରାର୍ଥନା କରି ମୋହର ମୁକ୍ତିଭିକ୍ଷା କରିବେ । କିନ୍ତୁ କୌଣସି ବନ୍ଦୀ କଦାପି ଅଧିକ ଦିବସ କାରା-

ଗାରରେ ବାସ କରିବା ପାଇଁ ଇଚ୍ଛାକରିବା ଆପଣ ଶୁଣିଛନ୍ତି କି ? ଆପଣ ଶୁଣିଲେ ବିସ୍ମିତ ହେବେ ଯେ ମୁଁ ଏହା କରିଥିଲି ।

ଶୃଗାଳିକା ଥରେ ବନ୍ଦିଶାଳାରେ ମୋ ସହିତ ସାକ୍ଷାତ କରି କେତେକ ଗୁପ୍ତ ସମ୍ବାଦ ଦେବା ପରେ, କାରାବାସ ତ୍ୟାଗ କରିବା ପାଇଁ ମୋହର ଆଉ ଆଗ୍ରହ ହେଲନାହିଁ । ମୋ ପ୍ରତି କାନ୍ତକ ଯେଉଁ ଅତ୍ୟାଚାର କରିଥିଲା ଶୃଗାଳିକା ସେ ସମ୍ବାଦ ପାଇଥିଲା । ସୁତରାଂ ମୁଁ ଯେ ଏହାର ପ୍ରତିଶୋଧ ନେବାକୁ ଇଚ୍ଛା କରୁଥିବି ଏକଥା ସେ ଅନୁମାନ କରିପାରି ଗୋଟିଏ ଆକସ୍ମିକ ଘଟଣାରେ ଏ ଗର୍ବୀ ମୂର୍ଖକୁ ଉପଯୁକ୍ତ ପ୍ରତିଫଳ ଦେବା ପାଇଁ ମନସ୍ଥକରି ଗୋଟିଏ ଚକ୍ରାନ୍ତ କରୁଥାଏ ।

ରାଜକୁମାରୀ ଅମ୍ବାଳିକାଙ୍କ ପରିଚାରିକା ମାଙ୍ଗଳିକାଙ୍କ ସହିତ ଶୃଗାଳିକାର ଅତ୍ୟନ୍ତ ଆତ୍ମୀୟତା ଥିଲା । ତେଣୁ ରାଜକୁମାରୀ ଶୃଗାଳିକାକୁ ବଧ ଆଦର କରୁଥିଲେ ଓ ତାହାଠାରୁ ଗଳ୍ପ ଶୁଣିବାକୁ ସୁଖ ପାଉଥିଲେ । ନଗରୀର ସମସ୍ତ ସମ୍ବାଦ ତାହା ମୁଖରୁହିଁ ରାଜକୁମାରୀଙ୍କ ଶ୍ରୁତିଗୋଚର ହୁଏ । ସମୟ ସମୟରେ ରାଜକୁମାରୀ ଅଟ୍ଟାଳିକା ଉପରେ ଉପବେଶନ କରି ରାଜପଥଗାମୀ ବ୍ୟକ୍ତିମାନଙ୍କ ସମ୍ବନ୍ଧେ ଶୃଗାଳିକାକୁ ବହୁବିଧ ପ୍ରଶ୍ନ ପଚାରନ୍ତି । ରାଜପଥର ଏହି ଅଂଶ ଅଟ୍ଟାଳିକାର ଠିକ୍ ନିମ୍ନଦେଶରେ ଅବସ୍ଥିତ । କାରାଗାର ରକ୍ଷକ କାନ୍ତକ ପ୍ରତିଦିନ ଏହି ପଥଦେଇ ଯାତାୟାତ କରେ ।

ଦିନେ ପ୍ରଭାତ କାଳରେ ଶୃଗାଳିକା ରାଜକୁମାରୀଙ୍କର ବେଣୀ ରଚନା କରିବାକୁ ଯାଇ କେଶଦାମ ମଧ୍ୟରୁ ମଳିନ ପୁଷ୍ପଗୁଚ୍ଛଟିଏ ବାହାର କରି ବାତାୟନ ପଥଦେଇ ରାଜପଥକୁ ନିକ୍ଷେପ କଲା । ଅକସ୍ମାତ ଏତିକି ବେଳେ କାନ୍ତକ ସେ ପଥଦେଇ ଯାଉଥିଲା ।

ଉକ୍ତ ପୁଷ୍ପଗୁଚ୍ଛ ତାହାର ସମ୍ମୁଖରେ ପଡ଼ିବା ମାତ୍ରେ କାନ୍ତକ ଉପରକୁ ଚାହିଁ ଦେଖିଲା ବାତାୟନ ପଥରେ ରାଜକୁମାରୀ-ତାହାଙ୍କ ମୁଖପଦ୍ମରେ ବାଳରବିର କନକକିରଣ ପରି ହାସ୍ୟରେଖା ଫୁଟି ଉଠିଛି । ଅବଶ୍ୟ ସେହି ମୁହୂର୍ତ୍ତରେ ଶୃଗାଳିକାର ଏକ ଚତୁର ବାକ୍ୟରେ ରାଜକୁମାରୀ ହସି ପକାଇ ଥିଲେ; କିନ୍ତୁ ଅସ୍ପଗର୍ବୀ କାନ୍ତକ ଏହାକୁ ତାହାପ୍ରତି ଉଦ୍ଦିଷ୍ଟ ମନେ କଲା ଏବଂ ତନ୍ମଧ୍ୟରେ ରାଜକୁମାରୀଙ୍କର ଅଭିଳାଷ ଓ ଅନୁଗ୍ରହର ସୂଚନା ଗ୍ରହଣ କରି ଆତ୍ମପ୍ରସାଦ ଲାଭ କରିବାକୁ ଲାଗିଲା ।

ଏହା ସହିତ ଆଉ ଗୋଟିଏ କଥା ମଧ୍ୟ ଘଟିଲା । ମୋହର ସ୍ତ୍ରୀ ଶୃଗାଳିକାର ପାଳିତା କନ୍ୟା ଭାବରେ ରାଜକୁମାରୀଙ୍କ ନିକଟରେ ପରିଚିତା ହୋଇ ତାହାଙ୍କର ସ୍ନେହ ଓ ଆଦର ଲାଭ କରିଥିଲା । ସେହି ଦିବସ ସନ୍ଧ୍ୟାରେ ରାଜକୁମାରୀ କେତେକ ରତ୍ନାଳଙ୍କାର ଓ ନିଜ ପ୍ରତିକୃତି ଶୃଗାଳିକା ହସ୍ତରେ ମୋ ସ୍ତ୍ରୀ ନିକଟକୁ ଉପହାର ସ୍ୱରୂପ ପ୍ରେରଣ କଲେ । ଶୃଗାଳିକା ଏ ସବୁ ପାଇବା ମାତ୍ରେ ଏକ ଷଡ଼ଯନ୍ତ୍ରର କଳ୍ପନାକରି ଉକ୍ତ ଉପହାର ସହ କାନ୍ତକ ନିକଟରେ ଉପସ୍ଥିତ ହେଲା । କାନ୍ତକ ରାଜକୁମାରୀଙ୍କ ପ୍ରତିକୃତି ତଥା ମୂଲ୍ୟବାନ୍ ଉପହାର ପାଇ ନିଜକୁ କୃତକୃତ୍ୟ ମନେ କଲା । ସେ ଶୃଗାଳିକାକୁ ଅତିରିକ୍ତ ସମାଦର କରିବା ସଙ୍ଗେ ସଙ୍ଗେ ପ୍ରତିକୃତିଟିକୁ ବାରମ୍ବାର ଚୁମ୍ବନକରି ଉନ୍ମତ୍ତ ହୋଇ ପଡ଼ିବାକୁ ଲାଗିଲା । ସେ ନିଶ୍ଚିତ ଭାବେ ମନେ କଲା ଯେ ରାଜକୁମାରୀ ତାହା ପ୍ରତି ଅନୁରକ୍ତା ହୋଇ ଏ ସମସ୍ତ ଉପହାର ପ୍ରେରଣ କରି ଅଛନ୍ତି । ଶୃଗାଳିକା ମଧ୍ୟ ପୁଷ୍ପଗୁଚ୍ଛ କଥା ସ୍ମରଣକରାଇ ଦେଇ ତାହାର ଏ ବିଶ୍ୱାସକୁ ଅଧିକ ଦୃଢ଼ମୂଳ କରି କହିଲା, "ଯୁବକ, ତୁମର ଅଭାବନୀୟ ଭାଗ୍ୟୋଦୟ ହୋଇଛି । ତୁମର ରୂପ, ପୌରୁଷ

ଓ ବ୍ୟବହାରରେ ରାଜକୁମାରୀ ଅମୃହର ହୋଇ ପଡ଼ିଛନ୍ତି । ସୁତରାଂ ଅଙ୍ଗଦେଶର ରାଜସିଂହାସନ ତୁମର ହସ୍ତଗତ ହେବାକୁ ଯାଉଛି । ରାଜକୁମାରୀ ତୁମପ୍ରତି ଏପରି ଅନୁରକ୍ତା ହୋଇ ପଡ଼ିଛନ୍ତି ଯେ ଏହି ରାତିରେ ତୁମ ସହିତ ଆଳାପ କରିବା ପାଇଁ ଇଚ୍ଛା ପ୍ରକାଶ କରି ମୋତେ ପ୍ରେରଣ କରିଅଛନ୍ତି । ତୁମେ କୌଣସିମତେ ରାଜୋ-ଦ୍ୟାନରେ ପ୍ରବେଶ କଲେ ସେ ପ୍ରାସାଦରୁ ଅବତରଣ କରି ତୁମକୁ ଅଭ୍ୟର୍ଥନା କରିବେ । ଏ ଅବସ୍ଥାରେ ଉଦ୍ୟାନରେ ପ୍ରବେଶ କରିବାହିଁ ଏକମାତ୍ର କଷ୍ଟକର ବ୍ୟାପାର ହୋଇପାରେ । କିନ୍ତୁ ଏଥିପାଇଁ ଆମ୍ଭେମାନେ ଆଗରୁ ଉପାୟ ସ୍ଥିର କରିଅଛୁଁ । ଯେଉଁ ବନ୍ଦୀକୁ ତୁମେ ବନ୍ଦିଶାଳାରେ ବେଶ ପ୍ରହାର କରିଥିଲ ସୁଡ଼ଙ୍ଗ ପଥ ନିର୍ମାଣରେ ସେ ଅତ୍ୟନ୍ତ ଧୁରନ୍ଧର । ତୁମେ ତାହାକୁ ଉଦ୍ୟାନ ପ୍ରାଚୀରରେ ଗୋଟାଏ ସୁଡ଼ଙ୍ଗ ପଥ ନିର୍ମାଣ ନିମିତ୍ତ ନିଯୁକ୍ତ କଲେ ସମସ୍ତ କାର୍ଯ୍ୟ ସହଜସାଧ୍ୟ ହୋଇଯିବ ।"

ଅମ୍ଭେମାନେ, ରାଜକୁମାରୀ ଓ ରାଜ୍ୟଲାଭ ଆଶା କାନ୍ତକକୁ ଅନ୍ଧ କରି ପକାଇଥିଲା । ସେ ଶୃଗାଳିକାର ବୁଦ୍ଧି ଓ ବିଚକ୍ଷଣତାକୁ ଶତ ଧନ୍ୟବାଦ ଦେଇ ଏ ପ୍ରସ୍ତାବରେ ସମ୍ମତ ହେଲା । ତେଣୁ ସେହି ରାତିରେ ଉଭୟେ କାରାଗାରରେ ପ୍ରବେଶ କଲେ । ଶୃଗାଳିକା ପ୍ରଥମେ ମୋହର ମତ ଗ୍ରହଣ କରିବା ପାଇଁ ମୋ କକ୍ଷ ମଧ୍ୟରେ ପ୍ରବେଶ କରି ଏ ଚକ୍ରାନ୍ତର ସୂଚନା ଦେଇ ସାରିବା ପରେ କାନ୍ତକ ସହିତ ମୋ ନିକଟକୁ ଆସିଲା । କାନ୍ତକ ଅମ୍ଭମାନଙ୍କ ସମ୍ମୁଖରେ ପ୍ରତିଜ୍ଞା କରି କହିଲା ଯେ ଏ ଉପକାର ପାଇଁ ସେ ମୋତେ ମୁକ୍ତି ପ୍ରଦାନ କରିବ । ତେଣୁ ମୁଁ ଏଥିରେ ସମ୍ମତ ହେବା ସଙ୍ଗେ ସଙ୍ଗେ କୃତଜ୍ଞତା ପ୍ରକାଶ କରିବାକୁ ଲାଗିଲି ।

କାନ୍ତକର ଆଦେଶରେ ମୋହର ଶୃଙ୍ଖଳା ମୁକ୍ତକର ଦିଆଗଲା ଏବଂ ଏ ଶ୍ରମସାଧ କାର୍ଯ୍ୟ ସାଧନ କରିବା ନିମିତ୍ତ ମୋତେ ପୂର୍ଣ୍ଣ ଗ୍ରାସ ଭୋଜନ ଦିଆଗଲା ।

ଗାଢ଼ ଅନ୍ଧକାର ଭେଦକରି ମୁଁ ଓ କାନ୍ତକ ରାଜୋଦ୍ୟାନର ନିକଟବର୍ତ୍ତୀ ହେଲୁଁ । ରାଜକୁମାରୀଙ୍କ ପ୍ରାସାଦର ଖୁବ୍ ସମୀପବର୍ତ୍ତୀ ସ୍ଥାନରେ ସର୍ପରଜ୍ଜୀ ଯନ୍ତ୍ର ସାହାଯ୍ୟରେ ଅତି ଅଳ୍ପ ସମୟ ମଧ୍ୟରେ ମୁଁ ଗୋଟାଏ ପଥକାଟି ଦେଲି ଏବଂ ପ୍ରଥମେ ତାହା ଭିତର ଦେଇ କଷ୍ଟେମଷ୍ଟେ ଉଦ୍ୟାନ ମଧ୍ୟକୁ ପ୍ରବେଶ କରି କାନ୍ତକକୁ ଅପେକ୍ଷା କଲି । କାନ୍ତକର ଦେହ ମୋ ଅପେକ୍ଷା କୃଶ । ତେଣୁ ତାହାର ମସ୍ତକ ଓ ସ୍କନ୍ଧ ସୁଡ଼ଙ୍ଗ ମଧ୍ୟରୁ ବାହାରିବା ମାତ୍ରେ ସର୍ପରଜ୍ଜୀ ସାହାଯ୍ୟରେ ଏପରି ଏକ ଅଘାତ କଲି ଯେ ସେହି ପ୍ରହାରରେ ସେ ଇହଲୀଳା ସମ୍ବରଣ କଲା । ମୁଁ ତାହାକୁ ସୁଡ଼ଙ୍ଗ ମଧ୍ୟରୁ ଟାଣିଆଣି ତା ହାତରେ ରଜ୍ଜୀଟିକୁ ଧରାଇ ଦେଇ ସେଠାରୁ ପଳାୟନ କଲି ।

ବନ୍ଦିଶାଳାରେ ଶୁଣିଥିଲି ଯେ ଧନମିତ୍ରଙ୍କ ବନ୍ଧୁ ପ୍ରଧାନ-ନଗରରକ୍ଷୀ ସିଂହଘୋଷ ରାଜାଙ୍କର କୁଦୃଷ୍ଟିରେ ପଡ଼ିଥିଲେ । କାନ୍ତକର ମୃତ୍ୟୁ ସୁଯୋଗରେ ମୁଁ ତାହାଙ୍କର କିଛି ଉପକାର କରିବା ମାନସରେ ତାହାଙ୍କର ବାସଭବନରେ ଉପସ୍ଥିତ ହୋଇ କହିଲି, "ବନ୍ଧୁ, କାନ୍ତକର ହତ୍ୟାକୁ ତୁମେ ଅବଲମ୍ବନ କରି ନିଜର ଭାଗ୍ୟ ପରିବର୍ତ୍ତନ କରିପାର । ଯଦି ପ୍ରଭାତରୁ ରାଜାଙ୍କୁ ଜଣାଇଦେବ ଯେ ତୁମେ ଗତ ରାତିରେ ନଗର ଭ୍ରମଣ ସମୟରେ ଗୋଟାଏ ଲୋକ ପ୍ରାଚୀର ଭେଦ କରୁଥିବା ଦେଖି ତାହାର ଅନୁସରଣ କଲି ଏବଂ ପଶ୍ଚାତ୍ ଭାଗରୁ ଆକ୍ରମଣ କରି ହତ୍ୟା କଲି— ତା ହାତରେ ଗୋଟାଏ ସର୍ପରଜ୍ଜୀ ଯନ୍ତ୍ର ଓ ପରିଚ୍ଛଦ ମଧ୍ୟରେ

ରାଜକୁମାରୀଙ୍କ ପ୍ରତିକୃତି ଥିଲା, ତେବେ ରାଜା ସଙ୍ଗେ ସଙ୍ଗେ ତୁମ କଥାର ସତ୍ୟାସତ୍ୟ ପରୀକ୍ଷା କରି ତୁମ ପ୍ରତି ନିଶ୍ଚୟ ପ୍ରୀତ ହେବେ ।"

ସିଂହଘୋଷ ଏଥିରେ ସମ୍ମତ ହୋଇ ମୋହର ଉପଦେଶ ଅନୁଯାୟୀ ଅତି ପ୍ରତ୍ୟୁଷରୁ ରାଜାଙ୍କ ନିକଟରେ ସମସ୍ତ କଥା ବର୍ଣ୍ଣନ କଲେ । ରାଜା ବୁଝି ପାରିଲେ ଯେ କାନ୍ତକ ନିଶ୍ଚୟ ଦସ୍ୟୁଭାବରେ ରାଜକୁମାରୀଙ୍କ ପ୍ରାସାଦରେ ପ୍ରବେଶ କରୁଥିଲା । ତେଣୁ ସେ ସିଂହଘୋଷ ପ୍ରତି ସନ୍ତୁଷ୍ଟ ହୋଇ ଉପଯୁକ୍ତ ପୁରସ୍କାର ପ୍ରଦାନ କଲେ ।

ଏଥି ମଧ୍ୟରେ ଋଷି ମରୀଚିଙ୍କ ସାକ୍ଷାତ ଲାଭ କରି ମୋ କାର୍ଯ୍ୟାବଳୀର ବିବରଣ ଦେବା ନିମିତ୍ତ ମୁଁ ଓ ଧନମିତ୍ର ଅରଣ୍ୟ ମଧ୍ୟରେ ପ୍ରବେଶ କଲୁ । ସମସ୍ତ କଥାଶୁଣି ସେ ମୋ ପ୍ରତି ପ୍ରୀତ ହୋଇ ସ୍ୱୀକାର କଲେ ଯେ ତାହାଙ୍କର ଉଦ୍ଦେଶ୍ୟ ଉପଯୁକ୍ତ ଭାବରେ ପ୍ରତିପାଳିତ ହୋଇଅଛି । ସଙ୍ଗେ ସଙ୍ଗେ ସେ ଆପଣଙ୍କ ତଥ୍ୟ ମଧ୍ୟ ପ୍ରକାଶ କଲେ, ମୁଁ ଯେତେବେଳେ ଶୁଣିଲି ଯେ, ଉଜ୍ଜୟିନୀର ରାଜପ୍ରତିନିଧି ଚଣ୍ଡବର୍ମା ଅଙ୍ଗଦେଶ ଆକ୍ରମଣ କରି ରାଜକୁମାରୀଙ୍କୁ ଅପହରଣ କରିବାକୁ ଆସି ଅଛନ୍ତି ଏବଂ ଆପଣ ତାହାଙ୍କ ସହିତ ଅଛନ୍ତି ସେତେବେଳେ ମୋହର ବିସ୍ମୟର ସୀମା ରହିଲା ନାହିଁ । କାରଣ ମୋହର ବାନ୍ଧବୀ ଭାବରେ ମୋତେ ଅଙ୍ଗରାଜକୁମାରୀଙ୍କ ପକ୍ଷରେ ଯୁଦ୍ଧ କରିବାକୁ ହେବ ଏବଂ ଫଳରେ ଆପଣଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହେବାକୁ ବାଧ୍ୟ ହେବ । କିନ୍ତୁ ଆପଣ ଯେ କାଷ୍ଠ ପିଞ୍ଜରା ମଧ୍ୟରେ ବନ୍ଦୀଭାବରେ ଆବଦ୍ଧ, ଏହା ମୁଁ ଅନୁମାନ କରିବି କିପରି ?

ଯାହାହେଉ, ଆପଣ ଜାଣନ୍ତି ପରେ ଏହା କି ଆକାର ଧାରଣ କଲା । ନଗର ଅଧିକାର ପରେ ସିଂହବର୍ମାଙ୍କ ମିତ୍ର ସୈନ୍ୟଗଣ

ଅତଏବ ଅସି ଯେପରି ତାହାଙ୍କ ପକ୍ଷରେ ଯୋଗ ଦିଅନ୍ତି ତାହାର ବ୍ୟବସ୍ଥା କରିବା ପାଇଁ ମୁଁ ଧନମିତ୍ରଙ୍କୁ ପ୍ରେରଣ କଲି । ଏଣେ ଶୁଣି ପାରିଲି ଯେ ଚଣ୍ଡବର୍ମା ସିଂହବର୍ମାଙ୍କ ମିତ୍ର ସୈନ୍ୟମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ପୂର୍ବରୁ ରାଜକୁମାରୀଙ୍କୁ ଅତର୍କିତ ଭାବରେ ବିବାହ କରିନେବାର ଯୋଗାଡ଼ କରୁଅଛନ୍ତି । ସୁତରାଂ ମୁଁ ଏକ ବ୍ରାହ୍ମଣ ବେଶରେ ବିବାହ ମଣ୍ଡପ ମଧ୍ୟକୁ ପ୍ରବେଶ କଲି । ଯେତେବେଳେ ହୋମାଗ୍ନି ସମ୍ମୁଖରେ ଚଣ୍ଡବର୍ମା ଅମ୍ବାଳିକାଙ୍କ ପାଣିପଲ୍ଲବ ଗ୍ରହଣ କରିବାକୁ ଉଦ୍ୟତ, ଠିକ୍ ସେହି ମୁହୂର୍ତ୍ତରେ ଜଣେ ପ୍ରହରୀ ହସ୍ତରୁ ମୁଁ ଗୋଟାଏ ଖଡ଼୍ଗ ଟାଣିଆଣି ଏକ ପ୍ରହାରରେ ଚଣ୍ଡବର୍ମାର ମସ୍ତକ ତାହାର ସ୍କନ୍ଧରୁ ଛିନ୍ନ କରିଦେଲି । ଏ ଘଟନାରେ ସମବେତ ଜନତା କିଛି ସମୟ ପାଇଁ ତଟସ୍ଥ ଓ ଚକିତ ହୋଇ ପଡ଼ିଲେ ଏବଂ ଏହି ସୁଯୋଗରେ ମୁଁ ଅମ୍ବାଳିକାଙ୍କ ସହିତ ଧନମିତ୍ରଙ୍କ ବାସଭବନ ଉଦ୍ଦେଶ୍ୟରେ ଧାବମାନ ହେଲି ।

ରାଜକୁମାରୀଙ୍କୁ ଏକ ସୁରକ୍ଷିତ ନିରାପଦ ସ୍ଥାନରେ ଉପସ୍ଥିତ କରାଇ ମୁଁ ପୁଣି ରାଜପଥ ମଧ୍ୟକୁ ବହିର୍ଗତ ହେଲି ଏବଂ ମାଳବ ସୈନ୍ୟ ସମୁଦ୍ର ମଧ୍ୟରେ ସିଂହଦ୍ୱାରର ନିକଟବର୍ତ୍ତୀ ହେଉ ହେଉ ନୂତନ ମେଘ ଗର୍ଜନ ଭଳି ଆପଣଙ୍କ ଗମ୍ଭୀର ସ୍ୱର ଶୁଣିବାକୁ ପାଇଲି ।

---

# ( ୧୭ )

## ଉପହାରବର୍ମାଙ୍କ କଥା

ରାଜବାହନ ଓ ତାହାଙ୍କର ବନ୍ଧୁଗଣ ଅପହାରବର୍ମାଙ୍କ ବୃତ୍ତ ଅତି ଆଗ୍ରହ ସହକାରେ ଶୁଣୁଥିଲେ । କଥା ଶେଷରେ ତାହାଙ୍କର ଅଭୂତପୂର୍ବ ବିକ୍ରମ, ଅଦମ୍ୟ ସାହସ, ଅନନ୍ୟସୁଲଭ ପ୍ରତ୍ୟୁତ୍ପନ୍ନ-ମତିତ୍ୱ ଏବଂ ଅତୁଳନୀୟ ଦକ୍ଷତା ଯୋଗୁଁ ଯେ ସେ ଦୁର୍ଦ୍ଧର୍ଷ ପାପାତ୍ମାମାନଙ୍କୁ ଉପଯୁକ୍ତ ଦଣ୍ଡଦେଇ ନିଜର କର୍ତ୍ତବ୍ୟ ସୁସମ୍ପନ୍ନ କରି ପାରିଥିଲେ ଏକଥା ସମସ୍ତେ ଏକ ମୁଖରେ ଘୋଷଣା କରିବାକୁ ଲାଗିଲେ ।

ଏହାପରେ ରାଜବାହନ ସହଚର ଉପହାରବର୍ମାଙ୍କୁ ଉଦ୍ଦେଶ୍ୟ କରି କହିଲେ, "ବୁଦ୍ଧିମାନ ଅପହାରବର୍ମାଙ୍କ ଯମଜଭ୍ରାତା କି ପ୍ରକାର କୌତୂହଳାବହ ଘଟନାବଳୀର ସମ୍ମୁଖୀନ ହୋଇଥିଲେ ତାହା ବର୍ଣ୍ଣନା କରନ୍ତୁ । ଯମଜଭ୍ରାତାମାନଙ୍କ ମଧ୍ୟରେ ବିକ୍ରମ ଓ ବିଚକ୍ଷଣତାର ତାରତମ୍ୟ କ୍ୱଚିତ୍ ପରିଲକ୍ଷିତ ହୋଇଥାଏ । ସୁତରାଂ ତାହାଙ୍କର ବୃତ୍ତ ଯେ ନିଶ୍ଚୟ ବିସ୍ମୟୋତ୍ପାଦକ ହେବ ଏଥିରେ ସନ୍ଦେହ ନାହିଁ ।"

ଉପହାରବର୍ମା ଏହିପରି ଭାବରେ ଅନୁରୁଦ୍ଧ ହୁଅନ୍ତେ ନିଜର କଥା ଆରମ୍ଭକରିବାକୁ ଯାଇ କହିଲେ, "ରାଜକୁମାର, ମୁଁ ବନ୍ଧୁପଥ

ଅତିକ୍ରମ କରି ବିଦେହ ରାଜ୍ୟରେ ଉପସ୍ଥିତ ହେଲି । ଏହାର ରାଜଧାନୀ ମିଥିଳା ଅଭିମୁଖରେ ଯାତ୍ରା କଲାବେଳେ ବନ ମଧ୍ୟରେ ଗୋଟିଏ କାଳୀ ମନ୍ଦିରର ସମ୍ମୁଖୀନ ହୋଇ ମୁଁ ସେଠାରେ କିଛି ସମୟ ବିଶ୍ରାମ କରିବା ଲାଳସାରେ ମନ୍ଦିର ମଧ୍ୟରେ ପ୍ରବେଶ କଲି ।

ମନ୍ଦିର ନିକଟରେ ଜଣେ ବୃଦ୍ଧା ସନ୍ୟାସିନୀ ବାସ କରୁଥିଲେ । ସେ ମୋତେ ଦେଖି ବହୁ ଆଦର ସତ୍କାରରେ ତାହାଙ୍କ ଆଶ୍ରମକୁ ଆମନ୍ତ୍ରଣ କଲେ । ଏତିକି ବେଳେ ମୁଁ ବୋଧକଲି ଯେପରିକି ବୃଦ୍ଧା ମୋହର ଆପାଦମସ୍ତକ ଚକ୍ଷୁ ଚକ୍ଷୁ କରି ନିରୀକ୍ଷଣ କରୁଛନ୍ତି ଏବଂ ମଧ୍ୟେ ମଧ୍ୟେ ଦୃଷ୍ଟି ଫେରାଇ ନେଇ କୌଣସି ଅତୀତ ସ୍ମୃତିର ଯନ୍ତ୍ରଣା ମର୍ମେ ମର୍ମେ ଅନୁଭବ କରି ଅସ୍ଥିର ହୋଇ ଉଠୁଛନ୍ତି । ବ୍ୟଥା ଗୋପନ କରିବା ନିମନ୍ତେ ବହୁ ପ୍ରୟାସ କରି ମଧ୍ୟ ଶେଷରେ ବୃଦ୍ଧାଙ୍କର ଚକ୍ଷୁ ସଜଳ ହୋଇ ଉଠିଲା । ତାହାଙ୍କର ଏ ଭାବ ଦେଖି ମୁଁ ସବିନୟରେ ଏହାର କାରଣ ପଚାରିଲି । ବାଷ୍ପରୁଦ୍ଧ କଣ୍ଠରେ ବୃଦ୍ଧା କହିଲେ—"ହେ ଯୁବକ, ବହୁ ବର୍ଷ ଆଗେ ମୁଁ ଓ ମୋହର କନ୍ୟା ବିଦେହ ରାଜପରିବାରରେ ସେବିକାରୂପେ ନିଯୁକ୍ତ ଥିଲୁଁ । ରାଣୀ ପ୍ରିୟମ୍ବଦାଙ୍କର ଯମଜପୁତ୍ର ଦୁଇଟିଙ୍କର ଲାଳନ ପାଳନ ଭାର ଆମ ଦୁହିଁଙ୍କ ଉପରେ ନ୍ୟସ୍ତଥିଲା । ଏକ ସମୟରେ ରାଜା ପ୍ରହାରବର୍ମା ମଗଧରାଜ ରାଜହଂସଙ୍କ ଦ୍ୱାରା ଏକ ମହୋତ୍ସବରେ ଯୋଗଦାନ କରିବା ପାଇଁ ନିମନ୍ତ୍ରିତ ହୁଅନ୍ତେ ସେ ରାଣୀ ପ୍ରିୟମ୍ବଦା, ଯମଜ ପୁତ୍ର ଓ ସୈନ୍ୟ ସାମନ୍ତଙ୍କ ସହ ମଗଧ ଅଭିମୁଖରେ ଯାତ୍ରା କଲେ । ଦୁର୍ଭାଗ୍ୟର କଥା, ଆମ୍ଭମାନଙ୍କର ସେଠାରେ ଅବସ୍ଥାନ କରିବା ସମୟରେ ମାଳବରାଜା ମାନସାର ମଗଧ ଆକ୍ରମଣ କରି ରାଜହଂସଙ୍କୁ ପରାସ୍ତ କଲେ । ଯୁଦ୍ଧାବସାନରେ ରାଜହଂସଙ୍କର ଅବସ୍ଥା କଣ ହେଲା

ମୁଁ ଜାଣେ ନାହିଁ । କିନ୍ତୁ ରାଜା ପ୍ରହାରବର୍ମା ବହୁ ସମୟ ପାଇଁ ସମ୍ମୁଖ ସମରରେ ଯୋଗଦାନ କରି ଶେଷରେ ଆତ୍ମରକ୍ଷା ଓ ରାଜ୍ୟ ରକ୍ଷାପାଇଁ ଅନୁଚରମାନଙ୍କ ସଙ୍ଗ ପଳାୟନ କରିବାକୁ ବାଧ୍ୟ ହେଲେ । ପଥ ମଧ୍ୟରେ କେତେକ ଅରଣ୍ୟବାସୀ ଆମ୍ଭମାନଙ୍କର ପଥରୋଧ କରିବା ଯୋଗୁଁ ଆମ୍ଭେମାନେ ଇତସ୍ତତଃ ହୋଇ ପଡ଼ିଲୁଁ । ଫଳରେ ମୁଁ ଓ ମୋହର କନ୍ୟା ଶିଶୁ ରାଜକୁମାର ଦୁହିଙ୍କ ସଙ୍ଗ ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ ହୋଇ ପଡିଲୁଁ ଏବଂ ପରେ ସେମାନଙ୍କ ସହ ମିଳିତ ହେବାପାଇଁ ବହୁ ଚେଷ୍ଟା କରି ମଧ୍ୟ ଅତିରିକ୍ତ ଶ୍ରାନ୍ତିବଶତଃ କୌଣସିମତେ କୃତକାର୍ଯ୍ୟ ହୋଇ ପାରିଲୁ ନାହିଁ । ଏହାପରି ଭାବରେ ଆମ୍ଭେ ଦୁହେଁ ଅରଣ୍ୟ ପଥ ଅନୁସରଣ କରି ଗଲାବେଳେ ହଠାତ୍ ଏକ ବ୍ୟାଘ୍ର କୌଣସି ଏକ ଜୀବ ଉପରକୁ ଲମ୍ଫ ଦେବା ଦେଖି ମୁଁ ଭୟରେ ହତଚେତନ ହୋଇ ଶିଶୁସହ ପଡ଼ିଗଲି । କିନ୍ତୁ ସଚେତ ହେବା ପରେ ଦେଖିଲି ଶିଶୁଟି ମୋହର କୋଳରେ ଆଉ ନାହିଁ । ଜଣେ ଗୋପାଳ ମୋତେ ଚୈତନ୍ୟହୀନ ଅବସ୍ଥାରେ ଦେଖି ତାହାର କୁଟୀରକୁ ନେଇ ଆସିଥିଲା ଏବଂ ସସ୍ତ୍ରୀକ ବହୁ ଦିବସାବଧି ସେବା କରି ମୋହର ଜୀବନ ରକ୍ଷା କରିଥିଲା । କିଛିଦିନ ପରେ ମୁଁ ମିଥିଳା ଯାତ୍ରା କରି ଶିଶୁମୃତ୍ୟୁର ଦୁଃସମ୍ବାଦ ରାଜଦମ୍ପତିଙ୍କୁ ଦେବାକୁ କଳ୍ପନା କଲାବେଳେ ହଠାତ୍ ଦିନେ ମୋହର କନ୍ୟା ଜଣେ ଯୁବକ ସହିତ ମୋ ନିକଟରେ ଉପସ୍ଥିତ ହେଲା । କନ୍ୟାଠାରୁ ଶୁଣିଲି ଯୁବକ ଜଣେ ବିଦେହ ଅଧିବାସୀ—ଆମ୍ଭମାନଙ୍କ ଭଳି ରାଜାଙ୍କ ଦଳରୁ ବିଚ୍ଛିନ୍ନ ହୋଇ ପଡ଼ିଥିଲେ । ସେ ମୋହର କନ୍ୟାକୁ ଦସ୍ୟୁ ପ୍ରକୃତିକ ଅରଣ୍ୟବାସୀଙ୍କ କବଳରୁ ବହୁ କଷ୍ଟରେ ରକ୍ଷାକରି ପାରିଥିଲେ ମଧ୍ୟ କନ୍ୟାଦ୍ୱାରା ପାଳିତ ରାଜକୁମାର ସେମାନଙ୍କ ଦ୍ୱାରା ଅପହୃତ ହୋଇଥିଲେ ।

ବର୍ତ୍ତମାନ ମିଥିଳାକୁ ଫେରିଯାଇ ରାଜଦମ୍ପତିଙ୍କ ସମ୍ମୁଖରେ ଏ ମର୍ମନ୍ତୁଦ ଘଟଣା ବର୍ଣ୍ଣନା କରିବା ବ୍ୟତୀତ ଆମ୍ଭମାନଙ୍କର ଅନ୍ୟ କୌଣସି କର୍ତ୍ତବ୍ୟ ନଥିଲା । କିନ୍ତୁ ପଥମଧ୍ୟରେ ଶୁଣିବାକୁ ପାଇଲୁ ଯେ ସ୍ୱୟଂ ରାଜା ନିଜର ଭ୍ରାତୃଷ୍ପୁତ୍ର ବିକଟବର୍ମାଙ୍କ ଦ୍ୱାରା ସିଂହାସନରୁ ବିତାଡ଼ିତ ହୋଇଛନ୍ତି । ବିକଟବର୍ମା ସିଂହାସନ ଅପହରଣ କରି ରାଜା ଓ ରାଣୀଙ୍କୁ ବନ୍ଦୀକରିବା ସଙ୍ଗେ ସଙ୍ଗେ ତାହାଙ୍କର ସମର୍ଥକମାନଙ୍କୁ ଅତି କ୍ରୂରଭାବେ ଦମନ କରିଛନ୍ତି । ଏ କଥା ଶୁଣି ମୋହର ଧୈର୍ଯ୍ୟ ଭାଙ୍ଗି ପଡ଼ିଲା । ରାଜାରାଣୀଙ୍କର ଏ ଦୁଃସମୟରେ ମୁଁ ପୁଣି ଏହି ନିର୍ମମ ସମ୍ବାଦ କିପରି ଭାବରେ ତାହାଙ୍କର କର୍ଣ୍ଣ ଗୋଚର କରାଇବି ସେ କଥା ଭାବି ପାରିଲି ନାହିଁ । ମାତ୍ର ଯାହାହେଉ ଏ ହୃଦୟବିଦାରୀ ସତ୍ୟ ପିତାମାତା ଭାବରେ ସେମାନେ ଅବଶ୍ୟ ଅବଗତ ହେବା ଉଚିତ ମନେ କରି କୌଣସିମତେ ତାହା ବନ୍ଦୀ ରାଜାରାଣୀଙ୍କ ନିକଟକୁ ପ୍ରେରଣ କରିସାରି ସାଂସାରିକ ବିଷୟ ତୃଷ୍ଣା ପରିତ୍ୟାଗ କଲି । ମୁଁ ବର୍ତ୍ତମାନ ଏଠାରେ ଜଗଦମ୍ବାଙ୍କ ପୂଜାର୍ଚ୍ଚନାରେ ନିଜକୁ ନିୟୋଜିତ କରି ଅଛି ଏବଂ ମୋହର କନ୍ୟା ପୁଣି ରାଜପରିବାରରେ ସେବାଶୁଶ୍ରୂଷା କାର୍ଯ୍ୟରେ ନିଯୁକ୍ତ ହୋଇଅଛି । ହେ ଯୁବକ, ମୁଁ ତୁମକୁ ଦେଖିବା ମାତ୍ରେ ହଠାତ୍ ମୋର ପୂର୍ବସ୍ମୃତି ଜାଗରିତ ହୋଇ ଉଠିଲା । ମୋହର ରାଜକୁମାର ଜୀବିତ ଥିଲେ ଅଛି ଠିକ୍ ତୁମର ବୟସରେ ପଦାର୍ପଣ କରି ତୁମରି ଭଳି ରୂପଶ୍ରୀ ବିମଣ୍ଡିତ ହୋଇ ଥାନ୍ତେ । ଏ ସମସ୍ତ କଥା ସ୍ମରଣ କରି ମୋହର ହୃଦୟରେ କୋହ ଜାତ ହେଉଅଛି ।"

ବୃଦ୍ଧାର ଅକୃତ୍ରିମ ବାତ୍ସଲ୍ୟଭାବ ମୋର ହୃଦୟକୁ ଆନ୍ଦୋଳିତ କରି ପକାଇଲା । ତେଣୁ ଅରଣ୍ୟ ମଧ୍ୟରେ ସେ ତାହାଙ୍କର ଏହି କରୁଣ କାହାଣୀ ଜଣେ ବ୍ରାହ୍ମଣଙ୍କ ନିକଟରେ ବର୍ଣ୍ଣନା କରିଥିବା କଥା ତାହାଙ୍କୁ ସ୍ମରଣ କରାଇ ଦେଇ ଆନନ୍ଦ ଗଦ୍‌ଗଦ କଣ୍ଠରେ

କହିଲ, "ଜନୈକ ବ୍ରାହ୍ମଣ ତୁମର ସେହି ପାଳିତ ସନ୍ତାନକୁ ଉଦ୍ଧାର କରି ରାଜହଂସଙ୍କ ହସ୍ତରେ ଅର୍ପଣ କରିଥିଲେ । ମା, ମୁଁ ତୁମର ସେହି ପାଳିତ ସନ୍ତାନ ।"

ଏ କଥା କହିବା ସଙ୍ଗେ ସଙ୍ଗେ ମୁଁ ବୃଦ୍ଧାର ବକ୍ଷରେ ମସ୍ତକ ନ୍ୟସ୍ତକରି ଅନର୍ଗଳ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲି ଏବଂ ସେ ଏପରି ଅତିରିକ୍ତ ଆନନ୍ଦରେ ବିହ୍ୱଳ ହୋଇ ପଡ଼ିଲେ ଯେ ହଠାତ୍ ତାହାଙ୍କର ହୃତ୍‌କ୍ରିୟା ବନ୍ଦହୋଇ ଯିବାର ଉପକ୍ରମ ଦେଖାଗଲା । କିଛି ସମୟ ପରେ ବୃଦ୍ଧା ପ୍ରକୃତିସ୍ଥା ହୁଅନ୍ତେ, ମୁଁ ମୋର ବୃଦ୍ଧ ପିତା ମାତାଙ୍କୁ ଓ ଅପହୃତ ରାଜ୍ୟ ଉଦ୍ଧାର କରିବା ପ୍ରତିଜ୍ଞା ପ୍ରକାଶକଲି ।

ସେ ସମୟକୁ ବିକଟବର୍ମା ଯେ ନିଜ ରାଜ୍ୟରେ ସୁପ୍ରତିଷ୍ଠିତ ହୋଇ ସାରଥିବ ଏବଂ ପ୍ରଜାମାନେ ଏତେ ଦିନ ପରେ କୌଣସି ଅପର ପକ୍ଷକୁ ସମର୍ଥନ କରିବା ଯେ ସମ୍ଭବ ନୁହେଁ ଏଥିରେ ମୋର କୌଣସି ସନ୍ଦେହ ନଥିଲା । ସୁତରାଂ ଧୀରସ୍ଥିର ଭାବରେ ଏକ ଅଭ୍ରାନ୍ତ ଯୋଜନା ପ୍ରସ୍ତୁତ କରି କ୍ରମେ ଅଗ୍ରସର ହେବା ଛଡ଼ା ମୋ ସମ୍ମୁଖରେ ଅନ୍ୟ କୌଣସି ଉପାୟ ନଥିଲା; କାରଣ ଥରେ ଚେଷ୍ଟା କରି ବିଫଳ ମନୋରଥ ହେବା ଅର୍ଥ ନିଜର ଓ ପିତାମାତାଙ୍କର ମୃତ୍ୟୁକୁ ବରଣ କରି ଆଣିବା ।

ଯାହାହେଉ ନାନା କଳ୍ପନାର ବଶବର୍ତ୍ତୀ ହୋଇ ମୁଁ ସେଠାରେ ବୃଦ୍ଧା ସହିତ ବାସକଲି । ଦିବାରାତ୍ରି ବହୁବିଧ ଚିନ୍ତାରେ ମୋହର ସମୟ ଅତିବାହିତ ହେବାକୁ ଲାଗିଲା । ଶେଷରେ ମୁଁ ସିଦ୍ଧାନ୍ତ କଲି ଯେ, ଉଦ୍ଦେଶ୍ୟ ସିଦ୍ଧ କରିବାକୁ ହେଲେ ରାଜପ୍ରାସାଦ ଅନ୍ତର୍ଗତ ବ୍ୟକ୍ତିମାନଙ୍କ ସହିତ ମୋତେ ବନ୍ଧୁତା ସ୍ଥାପନ କରିବାକୁ ହେବ ଏବଂ ବିକଟବର୍ମାଙ୍କର ଅତି ବିଶ୍ୱସ୍ତ ବ୍ୟକ୍ତିଙ୍କ ସାହାଯ୍ୟରେ ଲକ୍ଷ୍ୟ ସାଧନ କରିବାକୁ ହେବ ।

ଏହି ଉଦ୍ଦେଶ୍ୟରେ ଧନେ ନିଜର କନ୍ୟା ପୁଷ୍ପହିକାକୁ ଉଦ୍ଧାର କରିବାପାଇଁ ମୁଁ ବୃଦ୍ଧାକୁ କହିଲି । ପୂର୍ବରକ୍ତ ଅଶ୍ରମକୁ ଅସନ୍ତୋ ମୋତେ ଦେଖି ଓ ମୋହର ପରିଚୟ ପାଇ ସାତିଶୟ ଆନନ୍ଦିତା ହେଲା । ସେ ମୋହର ଉଦ୍ଦେଶ୍ୟ ଅବଗତ ହୋଇ ମୋତେ ସକଳ ପ୍ରକାର ସାହାଯ୍ୟ କରିବା ପାଇଁ ମଧ୍ୟ ସ୍ୱୀକୃତା ହେଲା । ତାହାଠାରୁ ପ୍ରଥମେ ଅନ୍ତଃପୁରର ପରିସ୍ଥିତି ସମ୍ବନ୍ଧେ ଜାଣିବାକୁ ଇଚ୍ଛା ପ୍ରକାଶ-କରି ବୁଝି ପାରିଲି ଯେ ପଟ୍ଟମହିଷୀ କଳ୍ପସୁନ୍ଦରୀ ଓ ରାଜା ବିକଟ-ବର୍ମାଙ୍କ ମଧ୍ୟରେ ଦାମ୍ପତ୍ୟ ବନ୍ଧନ ଆଦୌ ନଥିଲା । କଳ୍ପସୁନ୍ଦରୀ କାମରୂପ ରାଜ୍ୟର କନ୍ୟା । ସେ ଅତ୍ୟନ୍ତ ରୂପସୀ ଥିଲେ । ବାଲ୍ୟାବସ୍ଥାରେ ପ୍ରହାରବର୍ମାଙ୍କ ଯମଜ ସନ୍ତାନ ମଧ୍ୟରୁ ଜଣଙ୍କ ସହିତ ତାହାଙ୍କର ବିବାହ ପ୍ରସ୍ତାବ ହୋଇଥିଲା । କିନ୍ତୁ ସେ ବୟଃପ୍ରାପ୍ତ ହେବା ବେଳକୁ ପ୍ରହାରବର୍ମା ରାଜ୍ୟରୁ ବିତାଡ଼ିତ ହୋଇଥିଲେ ଏବଂ ଉଭୟ ସନ୍ତାନ ନିରୁଦ୍ଦିଷ୍ଟ ହୋଇ ପଡ଼ିଥିଲେ । ସୁତରାଂ କଳ୍ପସୁନ୍ଦରୀଙ୍କ ପିତା ତାହାଙ୍କୁ ବିକଟବର୍ମାଙ୍କ ସହିତ ବିବାହ ଦେଇଥିଲେ ।

କିନ୍ତୁ ଏ ବିବାହ ସମ୍ପୂର୍ଣ୍ଣ ବିଫଳ ହୋଇଥିଲା । କାରଣ ଜନ୍ମତମନା ରାଜକୁମାରୀ ବିକଟବର୍ମାଙ୍କ କଦର୍ଯ୍ୟ ରୂପ, ପଶୁତୁଲ୍ୟ ପ୍ରକୃତି, ନିକୃଷ୍ଟ ସ୍ୱଭାବରେ ଆଦୌ ତୃପ୍ତ ହୋଇ ପାରି ନଥିଲେ । ସେ ବିକଟବର୍ମାଙ୍କ ସମ୍ବନ୍ଧେ ଯେଉଁ ଧାରଣା ପୋଷଣ କଲେ, ତାହା ତାହାଙ୍କୁ ଯଥାଶୀଘ୍ର ଜଣାଇଁ ଦେବାପାଇଁ ମଧ୍ୟ ପଶ୍ଚାତ୍‌ପଦ ହେଲେ ନାହିଁ । ବିକଟବର୍ମା କେବଳ ନିଜ ରୂପର ନିନ୍ଦାଶୁଣି ବିଶେଷ କ୍ଷୁବ୍ଧ ହୋଇଥିଲେ । କାରଣ ଗୁଣର ନିନ୍ଦା ବା ପ୍ରଶଂସା ତାହାଙ୍କ ନିକଟରେ ନିତାନ୍ତ ନିରର୍ଥକ ଥିଲା ।

ରାଜା ଓ ରାଣୀଙ୍କ ପରିଚାରକମାନଙ୍କ ନିକଟରେ କୌଣସି କଥା ଗୁପ୍ତ ରହେ ନାହିଁ । ରାଜଦମ୍ପତିଙ୍କର ପରସ୍ପର ପ୍ରତି ଏ

ମନୋଭାବ କ୍ରମେ ପ୍ରସ୍ଫୁଟିତ ହେବାକୁ ଲାଗିଲା । ବିକଟବର୍ମା ବଡ଼-ରାଣୀଙ୍କ ପ୍ରତି ଅବହେଳା ପ୍ରଦର୍ଶନ କରି ନିଜେ ଅନ୍ୟ ରାଣୀମାନଙ୍କ ସହିତ ଲିପ୍ତ ରହିଲେ । ଫଳରେ କଳ୍ପସୁନ୍ଦରୀ ଅନ୍ତଃପୁର ମଧ୍ୟରେ ଏକ ପ୍ରକାର ନିର୍ବାସିତା ହୋଇ ସକଳ କ୍ଷେତ୍ରରେ ନିଜର ଅଧିକାର ହରାଇ ବସିଲେ ।

ଏହିଠାରେହିଁ ମୁଁ ମୋହର ସୁଯୋଗ ଖୋଜି ପାଇଲି । କଳ୍ପସୁନ୍ଦରୀଙ୍କ ସହଯୋଗୀ ଭାବରେ ଦଣ୍ଡାୟମାନ ହୋଇ ଅନ୍ୟାୟର ପ୍ରତିଶୋଧ ନେବାପାଇଁ ମୁଁ କୃତସଂକଳ୍ପ ହେଲି । ବାଲ୍ୟାବସ୍ଥାରେ ମୁଁ ଯଦି ଅପହୃତ ହୋଇ ନଥାନ୍ତି ତେବେ ନିଶ୍ଚୟ କଳ୍ପସୁନ୍ଦରୀ ମୋହର ପତ୍ନୀ ହୋଇଥାନ୍ତେ । ସୌଭାଗ୍ୟର କଥା ଯେ ବୃଦ୍ଧାର କନ୍ୟା ପୁଷ୍କରିକା ତାହାଙ୍କର ଏକମାତ୍ର ଅନ୍ତରଙ୍ଗ ସହଚରୀ ଥିଲା ।

ମୁଁ ଶୁଣିଲି ଗତ କେତେ ଦିନ ହେଲା କଳ୍ପସୁନ୍ଦରୀଙ୍କ ପ୍ରତି ବିକଟବର୍ମାଙ୍କର ଅତ୍ୟାଚାରର ମାତ୍ରା ବଢ଼ିଥିଲା । ମଦ୍ୟପାନ କରି ସେ ବହୁବାର ରାଣୀଙ୍କୁ ତାଚ୍ଛଲ୍ୟ ଭାବରେ ଭର୍ତ୍ସନା କରିଥିଲେ । ତାହାଙ୍କର ଶେଷ ବିବାହିତା ରାଣୀ ନିତାନ୍ତ ନୀଚକୁଳ ସମ୍ଭୂତା ଓ କ୍ରୂରଚରିତ୍ରା । କଳ୍ପସୁନ୍ଦରୀଙ୍କୁ ନିର୍ଯାତନା ଦେବାରେ ହିଁ ତାହାଙ୍କର ଆନନ୍ଦ । ସୁତରାଂ କୌଣସିମତେ ଏ ଦୁଷ୍ଟା ରମଣୀର ଗର୍ବ ଖର୍ବ କରିପାରିଲେ, ମୁଁ ନିଶ୍ଚୟ କଳ୍ପସୁନ୍ଦରୀଙ୍କୁ ସାହାଯ୍ୟ ଦେଇପାରିବି ଏ ଆଶା ମୋହର ବଦ୍ଧମୂଳ ହେଲା । ନିଜର ସ୍ୱାମୀ ଯେତେ କ୍ରୂର ଏବଂ ହୀନ ହେଉ ନା କାହିଁକି ପତ୍ନୀ କଦାପି ତାହାର ମୃତ୍ୟୁ ଚିନ୍ତା କରି ପାରିବ ନାହିଁ । ତେଣୁ ବିକଟବର୍ମାଙ୍କୁ ମୁଁ କପଟ ଭାବରେ ହତ୍ୟା କରିବାକୁ ଯାଉଛି ତାହା ହଠାତ୍ ପ୍ରକାଶ କଲିନାହିଁ ।

ବିକଟବର୍ମାଙ୍କ ରୂପ ଯେ ଅତ୍ୟନ୍ତ କଦାକାର ଥିଲା ତାହା ଆଗରୁ କହିଛି । ଅଥଚ ବଡ଼ରାଣୀଙ୍କର ଏହି ରୂପ ନିନ୍ଦାହିଁ ତାହାଙ୍କ

ଗତ ବିଶେଷ ଯନ୍ତ୍ରଣା ଦାୟକ ଥିଲା । ନିଷ୍ଫଳ ପ୍ରକୃତ ବିକଟବର୍ମାର ଏହି ଦୁର୍ବଳତାକୁ ଅବଲମ୍ବନ କରି ମୁଁ ମୋହର ପ୍ରତିହିଂସା ପ୍ରଣୋଦିତ ଯୋଜନାର ସୂତ୍ରପାତ କଲି । ନିଜ ପତି ସୁଦର୍ଶନ, ରୂପବାନ୍ ଏବଂ ତଦନୁପାତରେ ଗୁଣବାନ୍ ହେବାପାଇଁ ନାରୀ ନିଜର ସର୍ବସ୍ୱ ତ୍ୟାଗ କରିପାରେ; ତତ୍ ସହିତ ପତିର ଅକୃତ୍ରିମ ପ୍ରେମଲାଭ ନିମିତ୍ତ ମଧ୍ୟ ଅସାଧ୍ୟ ସାଧନ କରିପାରେ—ବିଶେଷତଃ ଯେଉଁଠାରେ ସପତ୍ନୀ ବିବାଦ ବିଦ୍ୟମାନ । ସୁତରାଂ କପଟ ଉପାୟରେ କୁତ୍ସିତରୂପ ଖଳପ୍ରକୃତି ବିକଟବର୍ମାଙ୍କୁ ଅପାତତଃ ରୂପବାନ ସତ୍ସ୍ୱଭାବସମ୍ପନ୍ନ ପତ୍ନୀଅନୁରୂପ ପତିରୂପେ ଓ ସୁଶାସକ ରାଜା ରୂପେ ପରିବର୍ତ୍ତିତ କରି ଦିଆ ଯାଇପାରେ, ସେହି କଥା ମୁଁ ଚିନ୍ତା କରିବାକୁ ଲାଗିଲି । ଏହାର ପ୍ରାଥମିକ ପ୍ରକ୍ରିୟା ନିଜେ କଳ୍ପସୁନ୍ଦରୀଙ୍କୁ କରିବାକୁ ହେବ । ହୁଏତ ଏହା ଅତି କଠିନ ହୋଇପାରେ । ଈର୍ଷିତା, ଅବହେଳିତା ନାରୀ ପ୍ରଥମେ ପ୍ରେମ ସୋହାଗରେ କଠୋର ପ୍ରକୃତିକ ପତିକୁ ଆକୃଷ୍ଟ କରାଇବା ଆବଶ୍ୟକ ହେବ ଏବଂ ପତିର ବିଶେଷ ବିଶ୍ୱାସଭାଜନ ହୋଇ କୌଣସି ବାଜୀକରଣ ଶକ୍ତି ସାହାଯ୍ୟରେ ରୂପ ଓ ଗୁଣ ପରିବର୍ତ୍ତନ ସକାଶେ ସ୍ୱୀକୃତ କରାଇବାକୁ ହେବ ।

ଦୁର୍ବୃତ୍ତ ବ୍ୟକ୍ତିଗଣ ସାଧାରଣତଃ ବିଶେଷ ସନ୍ଦେହୀ । ସେମାନେ କୌଣସି ଅଜ୍ଞାତ ବାଜିକରର ବଶ୍ୟତା ସ୍ୱୀକାର କରିବା ଅସମ୍ଭବ । ତେଣୁ କୌଣସି ଖ୍ୟାତନାମା ବାଜିକର ବା ମାନ୍ତ୍ରିକ ସାହାଯ୍ୟରେ ଏହା ସମ୍ପନ୍ନ କରାଇ ନେବା ମୋତେ ସହଜ ସାଧ୍ୟ ବୋଧହେଲା ନାହିଁ । ବିକଟବର୍ମା ଏପରି ନିଃସହାୟ ମୃତ୍ୟୁ ଅପେକ୍ଷା ନିଜର କୁତ୍ସିତ ରୂପକୁ ବରଂ ଶ୍ରେୟସ୍କର ମନେକରିବ । ତେଣୁ ଏ କ୍ଷେତ୍ରରେ ମୁଁ ନିଜକୁ ସମ୍ପୂର୍ଣ୍ଣ ଗୋପନ ରଖିବାକୁ ହେବ । ମୋହର ପ୍ରକୃତ ଉଦ୍ଦେଶ୍ୟ ଓ କାର୍ଯ୍ୟବିଧି ବୃଦ୍ଧା ଓ ତାହାକୁ

କନ୍ୟା ବ୍ୟତୀତ ଅନ୍ୟ କେହୁ ଜାଣିବେ ନାହିଁ । ରାଣୀଙ୍କ ମନରେ ବିଶ୍ୱାସ ଆଣିବାକୁ ହେବ ଯେ ତାହାଙ୍କଠାରେ ମଧ୍ୟ ସକଳ ବାଜୀକରଣ ଶକ୍ତି ବିଦ୍ୟମାନ । ରାଣୀ ନିଜେ ଏହା ସାଧନ କରୁଥିବାରୁ ବିକଟ-ବର୍ମା କେବଳ ରାଣୀଙ୍କ ସମକ୍ଷରେ ନିଜର ସମସ୍ତ ଗୁପ୍ତ ଚିନ୍ତା ପ୍ରକାଶ କରିବେ ଏବଂ ଅଗ୍ନି ସମ୍ମୁଖରେ ନିଜର ସମସ୍ତ ମନ୍ଦ ସ୍ୱଭାବ ତ୍ୟାଗ କରିବାକୁ ପ୍ରତିଜ୍ଞାବଦ୍ଧ ହେବେ । ଏହାପରେ ରାଣୀ କେବଳ କେତୋଟି ମନ୍ତ୍ରୋଚ୍ଚାରଣ କରିବା ମାତ୍ରେ ସ୍ୱତଃ ସମସ୍ତ ପରିବର୍ତ୍ତନ ଘଟିଯିବ ।

ଏହିପରି କଳ୍ପନା କରି ମୁଁ ମୋହର କର୍ତ୍ତବ୍ୟ ପଥରେ ଅଗ୍ରସର ହେଲି । ଏ କ୍ଷେତ୍ରରେ ମୁଁ ନିଜକୁ ସମ୍ପୂର୍ଣ୍ଣ ଗୋପନ ରଖିବା ବିଶେଷ ଆବଶ୍ୟକ ହେଲା । କାରଣ ସମସ୍ତ କ୍ରିୟା ସୁସମାହିତ ହେବା ପର୍ଯ୍ୟନ୍ତ ରାଣୀ ମୋହର ଏ ଦୁରଭିସନ୍ଧିର ଗନ୍ଧ କୌଣସି ମତେ ଜାଣିବା ଉଚିତ ନୁହେଁ । ପରେ ସେ ହୁଏତ ନିଶ୍ଚୟ ସବୁକଥା ଜାଣିପାରିବେ । ମାତ୍ର ସେତେବେଳକୁ ଅନ୍ୟ ଉପାୟ ନଥିବ ।

ମୋଟ ଉପରେ ପୁଷ୍କରିକାର ସହୃଦୟତା ଓ ସାହାଯ୍ୟ ବିନା ମୁଁ ଏ କାର୍ଯ୍ୟରେ କଦାପି କୃତକାର୍ଯ୍ୟ ହୋଇ ପାରି ନଥାନ୍ତି । ପ୍ରଥମ ଗୁରୁତର କାର୍ଯ୍ୟ ରାଣୀଙ୍କ ମନରେ ବିଶ୍ୱାସ ଜନ୍ମାଇବା । ପତିଙ୍କର ପରିବର୍ତ୍ତନ ନିମନ୍ତେ ମନ୍ତ୍ରଶକ୍ତିର ଆଶ୍ରୟ ନେବାପାଇଁ ପ୍ରବର୍ତ୍ତାଇବା ଓ ତାହାଙ୍କୁ ପରାମର୍ଶ ଦେଇ କୌଶଳରେ ଏଥିପାଇଁ ବିକଟବର୍ମାଙ୍କୁ ସମ୍ମତ କରାଇବା ଭାର ତାହାର ଉପରେ ହିଁ ନିର୍ଭର କଲା । ଏଥି ନିମିତ୍ତ ସେ ବହୁ ଦିବସ ଅପେକ୍ଷା କରି ଏକ ଘଟଣା ବିଶେଷର ଆଶ୍ରୟ ନେବାକୁ ହୋଇଥିଲା । ଦିନେ ନୂଆ ରାଣୀର ଅତି ଦୂର

ବ୍ୟବହାରରେ କଳ୍ପସୁନ୍ଦରୀ ବିଶେଷ ମର୍ମାହତ ହୁଅନ୍ତେ, ପୁଷ୍ପବତୀ ତାହାଙ୍କୁ ଜଣାଇଲା ଯେ ଏଥିର ପ୍ରତିଶୋଧ ନେବାର ଉପଯୁକ୍ତ ବ୍ୟବସ୍ଥା ସେ ଜାଣେ । ପ୍ରତିହିଂସା ସାଧନ ଉଦ୍ଦେଶ୍ୟରେ କଳ୍ପସୁନ୍ଦରୀ ସ୍ୱୀକୃତା ହୁଅନ୍ତେ ପୁଷ୍ପବତୀ କ୍ଷୋଭ ପ୍ରକାଶ କରି କହିଲା ଯେ ତାହାର ଉପାୟ ଅବ୍ୟର୍ଥ ହେଲେ ମଧ୍ୟ ଅତି ଆୟାସସାଧ୍ୟ । ତଥାପି ରାଣୀ ପ୍ରତିଜ୍ଞାକରି କହିଲେ, "ଅପମାନର ପ୍ରତିଶୋଧ ନେବାପାଇଁ ମୁଁ ଆଜି ଅତି ଦୁଃସାଧ୍ୟ କର୍ମର ସମ୍ମୁଖୀନ ହେବାକୁ ପ୍ରସ୍ତୁତ ।"

ପ୍ରତିଶ୍ରୁତି ପାଇ ପୁଷ୍ପବତୀ ରାଣୀଙ୍କ ସମ୍ମୁଖରେ ମୋହର ପ୍ରସ୍ତାବ ପ୍ରକାଶ କଲା । ଘୃଣିତ ପତି ପ୍ରତି ଯେ ପୂର୍ଣ୍ଣ ଆସକ୍ତି ପ୍ରକାଶ କରିବାକୁ ହେବ ଏଥିରେ କଳ୍ପସୁନ୍ଦରୀ ଦୁଃଖୀତା ହେଲେ ମଧ୍ୟ ନୀରବ ରହିଲେ । ପୁଷ୍ପବତୀ ରାଣୀଙ୍କୁ ବୁଝାଇବାକୁ ଯାଇ କହିଲା, "ମୋହର ମା ସନ୍ନ୍ୟାସିନୀ ଭାବରେ ନିର୍ଜନ ସ୍ଥାନରେ ବାସକରନ୍ତି । ଜଣେ ତାନ୍ତ୍ରିକରଠାରୁ ସେ ଏକ ମନ୍ତ୍ର ଗ୍ରହଣ କରିଛନ୍ତି, ଯାହାଦ୍ୱାରା ବିଶ୍ୱାସର ସହିତ ଜପକଲେ ଅତି ହୀନଚରିତ୍ର କଦାକାର ବ୍ୟକ୍ତି ମଧ୍ୟ ସତ୍‌ସ୍ୱଭାବଯୁକ୍ତ ଓ ସୁଶ୍ରୀ ସମ୍ପନ୍ନ ହୁଏ । କିନ୍ତୁ ଯାହା ପ୍ରତି ଏ ମନ୍ତ୍ର ପ୍ରୟୋଗ କରାଯାଏ ସେ ଏପରି ପରିବର୍ତ୍ତନ ଅଖଣ୍ଡ ବିଶ୍ୱାସର ସହିତ ସମ୍ପୂର୍ଣ୍ଣ ଇଚ୍ଛା କରିବାକୁ ହେବ । ଏହା ହିଁ ସାଧନାର ଅସାଧ୍ୟତମ କାର୍ଯ୍ୟ ।"

ଏ ବିଚିତ୍ର କଥାଶୁଣି କିଛି ସମୟ ନୀରବ ରହିବା ପରେ ରାଣୀ ଉଚ୍ଛୃଙ୍ଖଳିତ ଭାବେ କହି ଉଠିଲେ, "ସଖି ପୁଷ୍ପବତୀ," ଏହା ଯେତେ ଅସାଧ୍ୟ ହେଉ ନା କାହିଁକି ମୁଁ ସାଧନ କରିବି ନିଶ୍ଚୟ । ଦୟାକରି ତୁମ୍ଭ ମାଙ୍କ ନିକଟକୁ ମୋତେ ନେଇ ଯାଅ । ମୁଁ ଏ ମନ୍ତ୍ର ତଥା ଆନୁସଙ୍ଗିକ ବିଧାନମାନ ଯଥାଶୀଘ୍ର ଶିକ୍ଷାକରି ଆସିବି ।"

ରାଣୀ ଭାଲୀମନ୍ଦରଙ୍କୁ ଗୋପନରେ ହତ୍ୟା କରିବା ନିମିତ୍ତ ସମୟ ଠିକ୍ କରିଥିଲେ । ଏଣେ ମୁଁ ବୃଦ୍ଧାକୁ କେତେକ ମନ୍ତ୍ର ଶିକ୍ଷା ଦେଲି ଏବଂ ବିଧିବିଧାନ ସମ୍ବନ୍ଧେ ସେ ରାଣୀଙ୍କୁ କି ଉପଦେଶ ଦେବ ତାହା ଉଭୟେ ସ୍ଥିର କଲୁ ।

ପ୍ରସ୍ତରିକା ସହିତ ରାଣୀ ବିଜେ କଲେ । ମନ୍ଦିରର ଏପରି ଗୋଟିଏ ସ୍ଥାନରେ ମୁଁ ଲୁଚି ରହିଲି ଯେପରିକି ସମସ୍ତ ଆଳାପ ଶୁଣିବା ସଙ୍ଗେ ସଙ୍ଗେ ଆବଶ୍ୟକ ହେଲେ ବୃଦ୍ଧା କାନରେ ପଦେ ଅଧେ ସାମୟିକ ସୂଚନା ଦେଇ ପାରିବି । କଳ୍ପସୁନ୍ଦରୀଙ୍କୁ ଦେଖିବାକୁ ପାଇ ମୋହର ପ୍ରାଣରେ ଭାବର ଆବେଗ ଉଚ୍ଛ୍ୱସିତ ହେଲା । ମୋହର ଜୀବନ ସାଧାରଣ ଭାବେ ଗତ କରିଥିଲେ ସେ ମୋହର ସହଧର୍ମିଣୀ ହୋଇ ଥାନ୍ତେ । ତାହାଙ୍କର ଯୌବନ ଢଳ ଢଳ ଅନନ୍ୟ ରୂପଶ୍ରୀ ଦେଖି ମୋହର ହୃଦୟ ଆକୃଷ୍ଟ ହେଲା ।

ବହୁ ସମୟାବଧି ଆଳାପ ଚାଲିଲା । ରାଣୀ ମନ୍ତ୍ରସହିତ ଯେଉଁ ବିଧିରେ ତାହା କରିବାକୁ ହେବ ସେ ସମସ୍ତ ଶିକ୍ଷାକଲେ । ଏଥି-ପାଇଁ ଏହି ବିଶେଷ ବିଧି ରହିଲା କି ରୂପ ଓ ସ୍ୱଭାବର ସମ୍ପୂର୍ଣ୍ଣ ପରିବର୍ତ୍ତନ ପାଇଁ ବିକଟବର୍ମା ନିଜର ଇଚ୍ଛା ଜଣାଇବେ ଏବଂ ତୋମାଗ୍ନି ସମ୍ମୁଖରେ ନିଜର ସକଳ ଗୁପ୍ତଚିନ୍ତା ଓ କଳ୍ପନା ଅକୁଣ୍ଠିତ ଚିତ୍ତରେ ପ୍ରକାଶ କରିବେ । ସେ ସମ୍ବନ୍ଧେ ଅବଶ୍ୟ ମନ୍ତ୍ରୀ-ମାନଙ୍କର ପରାମର୍ଶ ନେବେ ଏବଂ ସେମାନେ ଏଥିରେ ସ୍ୱୀକୃତ ହେଲେ ସର୍ବସାଧାରଣଙ୍କୁ ଏକ ଶୁଭ ଦିବସରେ ଭୂରି ଭୋଜନ ପ୍ରଦାନ କରି ଘୋଷଣା କରିବେ ଯେ ବାଜିକରଣ ଶକ୍ତି ସାହାଯ୍ୟରେ ରାଜା ନିଜର ରୂପ ଓ ଚରିତ୍ରରେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହେବାକୁ ଯାଉଛନ୍ତି ।

ଏହାମଧ୍ୟ ସ୍ଥିରକରାଗଲା ଯେ ଉଦ୍ୟାନର ମଧ୍ୟ ଭାଗରେ ଏକ ଯଜ୍ଞଶାଳା ନିର୍ମିତ ହେବ । ତନ୍ମଧ୍ୟରେ ଏକ ଅତି ଗଭୀର ଓ ପ୍ରଶସ୍ତ ଯଜ୍ଞକୁଣ୍ଡ ନିର୍ମିତ ହେବ । ଏହାର ପାର୍ଶ୍ୱରେ ବହୁ ପରିମାଣରେ ଚନ୍ଦନକାଠ ଏବଂ ଉପଯୁକ୍ତ ପରିମାଣ କର୍ପୂର, ଅନ୍ୟାନ୍ୟ ସୁଗନ୍ଧ ଦ୍ରବ୍ୟ ଓ ବହୁ ମୂଲ୍ୟବାନ ରାଜପରିଚ୍ଛଦ ରଖାଯିବ । ଯଜ୍ଞଶାଳା ମଧ୍ୟକୁ ରାଜା ଓ ରାଣୀଙ୍କ ବ୍ୟତୀତ ସର୍ବସାଧାରଣଙ୍କ ପ୍ରବେଶ ନିଷେଧ କରାଯିବ ।

ଅତାପ ଶେଖରର କଳ୍ପସୁନ୍ଦରୀ ସ୍ୱପ୍ନାସାଦକୁ ପ୍ରତ୍ୟାବର୍ତ୍ତନ କଲା ପରେ ଏ ଯୋଜନାର ଫଳାଫଳ ସମ୍ବନ୍ଧେ ମୁଁ ଉତ୍କଣ୍ଠାର ସହିତ ଦିନ ଯାପନ କରିବାକୁ ଲାଗିଲି । ଦିନପରେ ଦିନ ଅତୀତ ହେବାକୁ ଲାଗିଲା । ପୁଷ୍କରିକାଠାରୁ କୌଣସି ସମ୍ବାଦ ନପାଇ ମୁଁ ନିତାନ୍ତ ଚିନ୍ତିତ ହୋଇ ପଡ଼ିଲି । ଯାହାହେଉ ଶେଷରେ ତାହାର ଅକ୍ଳାନ୍ତଚେଷ୍ଟା ଓ ନିଷ୍ଠିତ ଫଳଲାଭ ସମ୍ବନ୍ଧ ବାରମ୍ବାର ପ୍ରବର୍ତ୍ତିନା ଫଳରେ କଳ୍ପସୁନ୍ଦରୀ ଭୟ ଓ ସନ୍ଦେହ ଦୂରକରି ବିକଟବର୍ମାଙ୍କୁ ଏ ପ୍ରସ୍ତାବରେ ସ୍ୱୀକୃତ କରାଇ ପାରିଲେ ।

କିଛିଦିନ ପରେ ବିକଟବର୍ମା ନିଜର ଉଦ୍ଦେଶ୍ୟ ରାଜ୍ୟରେ ଘୋଷଣାକଲେ । ଏହା ଫଳରେ ଅବଶ୍ୟ ରାଜ୍ୟ ସାରା ବିସ୍ମୟ ପ୍ରକାଶିତ ହେଲା । କିନ୍ତୁ ଅମାତ୍ୟଗଣ ଏହା ଅନୁମୋଦନ କରି ନେବା ଯୋଗୁଁ ସାଧାରଣଙ୍କର ମଧ୍ୟ ଆସ୍ଥା ପ୍ରତିଷ୍ଠିତ ହେଲା । ନୂଆ ରାଣୀଙ୍କ ବ୍ୟତୀତ ଅନ୍ୟ ସମସ୍ତ ପଞ୍ଚଦିବସର ଭୂରିଭୋଜନ ଅପେକ୍ଷାରେ ଉଦ୍‌ଗ୍ରୀବ ହୋଇ ରହିଲେ ।

ଯୋଜନା ଅନୁଯାୟୀ ସମସ୍ତ କ୍ରିୟା କଳାପ ଅଗ୍ରସର କରିବାକୁ ଲାଗିଲା । ପ୍ରାସାଦୋଦ୍ୟାନରେ ସ୍ଥାନ ନିର୍ବାଚିତ ହୋଇ

ଏକ ବିଶାଳ ଯଜ୍ଞଶାଳା ନିର୍ମିତ ହେଲା । ଉପଯୁକ୍ତ ସମୟରେ ମୁଁ ମନ୍ତ୍ରବଳ ଦ୍ୱାରା ପରିଖା ପାରହୋଇ ବନ୍ଧୁ ସାହାଯ୍ୟରେ ଉଦ୍ୟାନ ପ୍ରାଚୀର ଅତିକ୍ରମ କଲି ଏବଂ ଏକ ଘନ ବୃକ୍ଷଶାଖାରେ ଆଶ୍ରୟ ନେଇ ସମସ୍ତ କ୍ରିୟାକଳାପ ଅବଲୋକନ କରିବାକୁ ଲାଗିଲି ।

ନିର୍ଦ୍ଦିଷ୍ଟ ଦିବସରେ ଶୁଭ ମୂହୂର୍ତ୍ତରେ ଏକାକିନୀ ରାଣୀ ଯଜ୍ଞଶାଳାରେ ପ୍ରବେଶ କଲେ । ସେ ସ୍ୱହସ୍ତରେ ଯଜ୍ଞକୁଣ୍ଡରେ ଅଗ୍ନି ସଂଯୋଗ କରି ଚତୁର୍ଦ୍ଦିଗରେ ପୁଷ୍ପ ଓ ସୁଗନ୍ଧ ଦ୍ରବ୍ୟ ବୃଷ୍ଟି କଲେ । ଏହାର ବହୁ ସମୟ ପୂର୍ବରୁ ମୁଁ ଚନ୍ଦନକାଷ୍ଠ ମଧ୍ୟରେ ଲୁକ୍କାୟିତ ରହିଥିଲି । ସମସ୍ତ ପ୍ରାରମ୍ଭିକ କ୍ରିୟା ସମାପ୍ତ ହୁଅନ୍ତେ ରାଣୀ ଗୋଟିଏ ରୌପ୍ୟ ଘଣ୍ଟି ବଜାଇଲେ । ବିକଟବର୍ମାଙ୍କ ପ୍ରବେଶ ପାଇଁ ଏହା ସଙ୍କେତ ରୂପେ ନିର୍ଦ୍ଦିଷ୍ଟ କରି ଯାଇଥିଲା ।

ଯଜ୍ଞଶାଳାର ବାହାରେ ବିକଟବର୍ମା ରତ୍ନାସନରେ ଉପବେଶନ କରିଥିଲେ । ମନ୍ତ୍ରୀ, ସଭାସଦ୍, ଅନ୍ୟାନ୍ୟ ରାଣୀ ଓ ପରିଚାରିକା ଗଣ ଅର୍ଦ୍ଧବୃତ୍ତାକାରରେ ସମବେତ ହୋଇଥିଲେ । ସଙ୍କେତ ପାଇ ବିକଟବର୍ମା ଯଜ୍ଞଶାଳା ମଧ୍ୟରେ ପ୍ରବେଶ କଲେ । ସେ ପ୍ରଥମେ ସନ୍ଦିଗ୍ଧ ଭାବରେ ଚତୁର୍ଦ୍ଦିଗ ନିରୀକ୍ଷଣ କରି ହୋମାଗ୍ନି ନିକଟକୁ ଅଗ୍ରସର ହେଲେ । ସଙ୍ଗେ ସଙ୍ଗେ କଳ୍ପସୁନ୍ଦରୀ ତାହାଙ୍କ ସମ୍ମୁଖକୁ ଯାଇ ଦୀପାବଳୀ ହସ୍ତରେ ବନ୍ଦାପନା କରି ମୃଦୁ ମଧୁର ସ୍ୱରରେ ମନ୍ତ୍ରପାଠ କରିବାକୁ ଲାଗିଲେ । ଏହାପରେ ସ୍ତ୍ରୀୟ ପରିବର୍ତ୍ତନ ପାଇଁ ରୀକାନ୍ତଙ୍କ ଇଚ୍ଛା ଏବଂ ହୃଦୟର ଗୋପନ ଚିନ୍ତା ସକଳ ପ୍ରକାଶ କରିବା ନିମିତ୍ତ ସେ ସ୍ୱାମୀଙ୍କୁ ଅନୁରୋଧ କଲେ ।

ବିକଟବର୍ମା କୁଣ୍ଠା ସହକାରେ ପରିବର୍ତ୍ତନ ପାଇଁ ଇଚ୍ଛା ପ୍ରକାଶ କରିସାରି କହିଲେ, "ହେ ପ୍ରିୟତମେ, ମୋହର ଗୁପ୍ତଚିନ୍ତା

ମଧ୍ୟରେ ପ୍ରଥମ ଓ ପ୍ରଧାନ ହେଉଛି ମୋହର ପିତୃବ୍ୟ ପ୍ରହାର-ବର୍ମାଙ୍କୁ ବିଷ ପ୍ରୟୋଗ କରିବା । ମୋହର ଗୁପ୍ତଚରଗଣ ଅଯତ୍ନ କରି ତାହାଙ୍କୁ ବିଷମିଶ୍ରିତ ଖାଦ୍ୟ ଦେବାପାଇଁ ଆଦିଷ୍ଟ ହୋଇଛନ୍ତି । ସେ ରୋଗଶଯ୍ୟାରେ ମୃତ୍ୟୁମୁଖରେ ପତିତ ହେଲେ ବୋଲି ପ୍ରଚାର କରାଯିବା ନିମିତ୍ତ ବ୍ୟବସ୍ଥା ହୋଇ ସାରିଛି । ଦ୍ୱିତୀୟ ଗୋପନ କଥା ହେଉଛି ମୋହର କନିଷ୍ଠ ଭ୍ରାତା ବିଶୋକ ବର୍ମାଙ୍କୁ ମୁଁ ଘୃଣାକରେ ଏବଂ ହତ୍ୟାକରିବାକୁ ଇଚ୍ଛାକରେ । ତାହାଙ୍କୁ ଆଦେଶ କରିଛି ଯେ ସେ ପନ୍ଦରପୁର ବିଦ୍ରୋହ ଦମନ କରିବା ପାଇଁ କେତେକ ସୈନ୍ୟ ସହ ଯାତ୍ରା କରିବ । ସେ ସେଠାରୁ ପ୍ରତ୍ୟାବର୍ତ୍ତନ କରି ନ ପାରିବା ଭଳି ମୁଁ ଆୟୋଜନ କରିଛି । ମୋହର ତୃତୀୟ ଚିନ୍ତା ହେଉଛି ଯବନ ବଣିକ ଗଣଙ୍କଠାରୁ ଅତି ମୂଲ୍ୟବାନ ହୀରକ ହାରଟି ଅତ୍ମସାତ୍ କରିବା । ସେ ତାହା ବିକ୍ରୟ କରିବା ନିମିତ୍ତ ମୋ ନିକଟକୁ ଆଣିଥିଲା । ଅତି ଅଳ୍ପ ମୂଲ୍ୟରେ ତାହା ହସ୍ତଗତ କରିବା ନିମିତ୍ତ ମୁଁ ମୋହର ବିଶ୍ୱସ୍ତ ବଣିକ ସ୍ୱାର୍ଥବାନ ଓ ଜଣେ ପାଞ୍ଚାଲ ସ୍ୱର୍ଣ୍ଣକାରକୁ ନିଯୁକ୍ତ କରିଛି । ମୋହର ଶେଷ ଗୁପ୍ତକଥା ହେଉଛି, ସେନାପତି ଶତାହଳକୁ ବିଶାଳ ସେନାଙ୍କ ସହ କୁନ୍ତଦେଶକୁ ପ୍ରେରଣ କରି ରାଜା ଅନନ୍ତଶୀରଙ୍କୁ ତାହାଙ୍କ ରାଜ୍ୟର ଅନ୍ତର୍ବିବାଦରେ ସାହାଯ୍ୟ କରିବା ବାହାନାରେ ହତ୍ୟାକରି କୁନ୍ତରାଜ୍ୟକୁ ମୋହର ଅଧୀନସ୍ଥ କରିବା । ହେ ହୃଦୟେଶ୍ୱର, ଏ ଚାରିଗୋଟି ଅତି ଗୋପନ କଥା ମୋହର ହୃଦୟ ପେଟିକା ମଧ୍ୟରେ ସୁରକ୍ଷିତ ଥିଲା ।”

ରାଣୀ ଗୁପ୍ତ ଆଦେଶମାନ ଶୁଣି ବ୍ୟସ୍ତ ହୋଇପଡ଼ିଲେ ମଧ୍ୟ ଦମ୍ଭଧରି କହିଲେ, “ପ୍ରାଣେଶ୍ୱର, କିଛିକ୍ଷଣ ପରେ ତୁମର ହୃଦୟ ନିଶ୍ଚୟ ପରିବର୍ତ୍ତିତ ହୋଇଯିବ ଏବଂ ତୁମେ ଅବଶ୍ୟ ଏ ହୀନ

ଅଦେଶମାନ ପ୍ରତ୍ୟାହାର କରନେବ । ବର୍ତ୍ତମାନ ମୋ ନିକଟରେ ବସି ମନ୍ତ୍ର ଶ୍ରବଣକର ।"

ଏହି ସନ୍ଧିକ୍ଷଣରୁ ମୋହର କର୍ତ୍ତବ୍ୟ ଆରମ୍ଭ ହେଲା । ମୁଁ ଲୁକ୍କାୟିତ ସ୍ଥାନରୁ ଏକ କ୍ଷୁଦ୍ର ପିଚକାରୀ ସାହାଯ୍ୟରେ ଏକପ୍ରକାର ସମ୍ମୋହନ ଚୂର୍ଣ୍ଣ ଉଡ଼ାଇବାକୁ ଲାଗିଲି । ତାହାର ପ୍ରଭାବରେ ରାଣୀ କ୍ରମେ କ୍ରମେ ତନ୍ଦ୍ରାକ୍ରାନ୍ତ ହୋଇ ପଡ଼ିବାରୁ ତାହାଙ୍କ ସ୍ୱର ଅସ୍ପଷ୍ଟ ହୋଇପଡ଼ିଲା ଏବଂ କିଛି କ୍ଷଣ ପରେ ସେ ସମ୍ପୂର୍ଣ୍ଣ ନିଦ୍ରା-ଭିଭୂତା ହୋଇ ଢଳିପଡ଼ିଲେ । ଏ ସମସ୍ତ ମନ୍ତ୍ର ଶକ୍ତିର ପ୍ରଭାବ ଭାବି ରାଜା କୌଣସି ପ୍ରକାର ବିବ୍ରତ ହେଲେ ନାହିଁ । ପର ମୁହୂର୍ତ୍ତରେ ସେ ମଧ୍ୟ ସୁସୁପ୍ତିର କୋଡ଼ରେ ଆଶ୍ରୟ ନେଲେ । ଏହି ମୁହୂର୍ତ୍ତରେ ମୁଁ ହଠାତ୍ ମୋହର ଗୁପ୍ତ ସ୍ଥାନରୁ ଲମ୍ଫଦେଇ ଲୌହ ମୁଷ୍ଟିରେ ରାଜାଙ୍କର ଗଳାକୁ ଚିପିଧରିଲି । ସଙ୍ଗେ ସଙ୍ଗେ ତାହାଙ୍କର ପ୍ରାଣବାୟୁ ଉଡ଼ିଗଲା । ତେଣୁ ସଜୋରରେ ମୃତଦେହକୁ ହୁତାଶନ ମଧ୍ୟକୁ ନିକ୍ଷେପକରି କେତେକ ଭାଣ୍ଡ ଘୃତ, କର୍ପୂର, ଧୂପ ଓ ଚନ୍ଦନକାଷ୍ଠସହ ଆହୁତି ପ୍ରଦାନ କଲି । ଅଳ୍ପ ସମୟ ମଧ୍ୟରେ ଦୁରାତ୍ମାର ପାପଶରୀର ଭସ୍ମୀଭୂତ ହୋଇଗଲା ।

ଶତ୍ରୁର ଉଚ୍ଛେଦ ସାଧନ କରିସାରି ମୁଁ ମହାର୍ଘ ରାଜ ପରିଚ୍ଛଦରେ ବିଭୂଷିତ ହୋଇ ରାଣୀଙ୍କ ନିକଟରେ ବସି ଶୁଶ୍ରୂଷା କରିବାକୁ ଲାଗିଲି । କିଛି କ୍ଷଣପରେ ସେ ଚକ୍ଷୁରୁନ୍ମୀଳନ କରି ମୋତେ ଚାହିଁବା ମାତ୍ରେ ମୁଖ ମଣ୍ଡଳ ବିସ୍ମୟବିସ୍ଫାରିତ ହୋଇ ପଡ଼ିଲା । ବିକଟବର୍ମା ସ୍ଥାନରେ ଏକ ସୁଦର୍ଶନ ତରୁଣ ଦେଖି ତାହାଙ୍କ ମୁଖରୁ ପ୍ରଥମ ବାକ୍ୟ ଫୁଟି ଉଠିଲା, "ଧନ୍ୟ ଦେବତାଗଣ ଧନ୍ୟ ! ପ୍ରାଣେଶ୍ୱରଙ୍କର ଅଭୂତପୂର୍ବ ପରିବର୍ତ୍ତନରେ ମୋହର ଦୁଃଖ-

ନିଶାର ଅବସାନ ହୋଇଛି । ସ୍ୱାମୀଙ୍କର କଦାଚାରରୂପ ଅନ୍ଧ ମୋହର ଦୃଷ୍ଟି ପଥାରୂଢ଼ ହେବ ନାହିଁ । ମୋହର କି ସୌଭାଗ୍ୟ ! କି ଆନନ୍ଦ !"

ପ୍ରାଣପୂର୍ଣ୍ଣ ଉଲ୍ଲାସସହକାରେ ରାଣୀ ମୋହର ହାତଧରି ସଙ୍ଗେ ସଙ୍ଗେ ସଭାସଦମାନଙ୍କ ସମ୍ମୁଖରେ ଆସି ଦଣ୍ଡାୟମାନା ହେଲେ । ମୋତେ ଦେଖିବାକୁ ପାଇ ଜନତା ମଧ୍ୟରେ ହର୍ଷ ବିସ୍ମୟର ତରଙ୍ଗ ଖେଳିଗଲା । ସମବେତ ପ୍ରଜାବର୍ଗ ନିର୍ବାକ, ନିସ୍ତବ୍ଧ । ମୁଁ ମଧ୍ୟ ନୀରବ; କିନ୍ତୁ ସହାସ ବଦନରେ ସମସ୍ତଙ୍କ କଲ୍ୟାଣ କାମନା କଲାଭଳି ଭଙ୍ଗୀ ପ୍ରକାଶକରି ଦଣ୍ଡାୟମାନ ହେଲି । ସଭା ଭଙ୍ଗ ହେଲା । ଏ ଅଭୂତପୂର୍ବ ଘଟଣା ବିଦ୍ୟୁତ୍‌ବେଗରେ ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇଗଲା । ସର୍ବସ୍ତ ପ୍ରଜାବର୍ଗ ଆନନ୍ଦ କୋଳାହଳ କରିବାକୁ ଲାଗିଲେ । ସେ ରାତ୍ରିସାରା ନଗରର ଦ୍ୱାରେ ଦ୍ୱାରେ ଆଲୋକମାଳା ପ୍ରଜ୍ଜ୍ୱଳିତ ହେଲା । ପୁରବାସୀଗଣ ନୃତ୍ୟ ଗୀତରେ ଉନ୍ମତ୍ତ ହେଲେ ।

କିନ୍ତୁ ପୁରବାସୀଙ୍କର ଏ ଆନନ୍ଦୋତ୍ସବ କେବଳ ଏ ବିଶେଷ ଘଟଣା ସମ୍ପର୍କରେ ନୁହେ ? ଆମ୍ଭ ଦୁହିଙ୍କର ବିବାହ ସମ୍ପର୍କରେ ମଧ୍ୟ । କାରଣ ମୁଁ ରାଣୀଙ୍କୁ ବୁଝାଇ ଦେଲି ଯେ ଏଥର ସର୍ବତୋ-ଭାବେ ପରିବର୍ତ୍ତିତ ପରେ ମୁଁ ତାହାଙ୍କର ସ୍ୱାମୀ ହେଲେ ମଧ୍ୟ ସମ୍ପୂର୍ଣ୍ଣ ନୂତନ ବ୍ୟକ୍ତିରେ ପରିଣତ ହୋଇ ଯାଇଛି । ସୁତରାଂ ପୁନଃ ପାଣିଗ୍ରହଣ ନିତାନ୍ତ ଆବଶ୍ୟକ । ରାଣୀ ଏଥିରେ ସ୍ୱୀକୃତା ହେଲେ । ସେହି ସନ୍ଧ୍ୟାରେ ପ୍ରାସାଦର ବିବାହ ମଣ୍ଡପରେ ସଭାସଦ୍, ସାମନ୍ତ ଓ ପ୍ରଧାନମାନଙ୍କ ସମ୍ମୁଖରେ ଆମ୍ଭ ଦୁହିଁଙ୍କର ଶୁଭବିବାହ ସମ୍ପନ୍ନ ହେଲା । ଏହିପରି ଭାବରେ ମୁଁ ମୋହର ପତ୍ନୀଙ୍କୁ ଲାଭକଲି ।

ପରଦିନ ଅତି ପ୍ରତ୍ୟୁଷରୁ ମୁଁ ରାଜପରିଚ୍ଛଦରେ ବିଭୂଷିତ ହୋଇ ଦରବାର କକ୍ଷରେ ସିଂହାସନାରୋହଣ କଲି । ସମବେତ ମନ୍ତ୍ରୀ ଓ ସାମନ୍ତମାନଙ୍କୁ ସମ୍ବୋଧନ କରି କହିଲି, "ଭଦ୍ରମହୋଦୟ ବୃନ୍ଦ, ପରମେଶ୍ୱରଙ୍କ ଅଶେଷ ଦୟାରୁ ମୁଁ ମୋହର ଶାରୀରିକ ଓ ଚରିତ୍ରିକ ପରିବର୍ତ୍ତନ ଲାଭ କରିଅଛି । ବର୍ତ୍ତମାନ ମୋହର ପୂଜ୍ୟପାଦ ପିତୃବ୍ୟ ପ୍ରହାରବର୍ମା ଓ ମାତୃସମା ରାଣୀ ପ୍ରିୟମ୍ବଦା ଦେବୀଙ୍କୁ ଏହି କକ୍ଷମଧ୍ୟକୁ ଆନୟନ କର । ବହୁକାଳ ହେଲା ମୁଁ ଅତି ଅନ୍ୟାୟ ଭାବରେ ତାହାଙ୍କୁ ସିଂହାସନ ଚ୍ୟୁତ କରି ରଖିଛି । ନ୍ୟାୟତଃ ଏ ରାଜ୍ୟ ତାହାଙ୍କର । ମୁଁ ବର୍ତ୍ତମାନ ତାହା ପ୍ରତ୍ୟର୍ପଣ କରିବି । ସେ ସ୍ୱେଚ୍ଛାରେ ମୋତେ ତାହାଙ୍କର ଯେଉଁ କର୍ମରେ ନିଯୁକ୍ତ କରିବେ ମୁଁ ସେଥିରେ ନିଯୁକ୍ତ ହେବି ।"

ଏହାପରେ ମୁଁ ମୋହର କନିଷ୍ଠଭ୍ରାତା ବିଶୋକବର୍ମାଙ୍କୁ ଆହ୍ୱାନ କରି କହିଲି, "ଭାଇ, ଚନ୍ଦ୍ରପୁର ବିଦ୍ରୋହ ଦମନ କରିବା ପାଇଁ ତୁମେ ବର୍ତ୍ତମାନ ଯାତ୍ରା କରିବା ଅନାବଶ୍ୟକ । ସେଠାର ଅଧିବାସୀଗଣ ଦୁର୍ଭିକ୍ଷ ପୀଡ଼ିତ । ସେମାନଙ୍କୁ ବର୍ତ୍ତମାନ ଦଣ୍ଡଦେବା ସମୀଚୀନ ନୁହେଁ; ବରଂ ସେଠାକୁ କିଛି ଶସ୍ୟ ପ୍ରେରଣ କରି ସେମାନଙ୍କ ମନରେ ଶାନ୍ତି ଆନୟନ କରିବା ଉଚିତ । ତେଣୁ ତୁମେ ଶସ୍ୟ ସଂଗ୍ରହ କରି ସେଠାକୁ ପ୍ରେରଣ କରିବା ଭାର ଗ୍ରହଣକର ।

ତାପରେ ବିଶ୍ୱସ୍ତ ମଧ୍ୟସ୍ଥ ବଣିକ ଓ ପାଞ୍ଚାଳ ସ୍ୱର୍ଣ୍ଣକାରଙ୍କୁ ଆହ୍ୱାନ କରି କହିଲି ଯେ, ଯବନ ବଣିକର ହୀରକ ହାରର ଉପଯୁକ୍ତ ମୂଲ୍ୟ ସେମାନେ ତାହାକୁ ଦେଇ ଦିଅନ୍ତୁ ।

ସର୍ବଶେଷରେ ସେନାପତି ଶତହଳୀଙ୍କୁ ଡାକି କହିଲି, "ସେନାପତେ, କୁନ୍ତଳଦେଶ ଗଣ୍ଡଗୋଳରେ ଆମେ ହସ୍ତକ୍ଷେପ

କରିବା ଉଚିତ ନୁହେଁ । ଅନନ୍ତଶୀରଙ୍କର ଏକମାତ୍ର ଦୋଷ ହେଉଛି ରାଜ୍ୟଚ୍ୟୁତ ପ୍ରହାରବର୍ମାଙ୍କ ପ୍ରତି ଅନୁରକ୍ତି ପ୍ରକାଶ । ଅତେ ପ୍ରହାର-ବର୍ମାଙ୍କ ପ୍ରତି ଯେତେବେଳେ ଅମର ମତ ପରିବର୍ତ୍ତନ କରି ଦେଇଛୁ, ଅନନ୍ତଶୀରଙ୍କୁ ଶତ୍ରୁ ଦୃଷ୍ଟିରେ ବ୍ୟବହାର କରିବାରେ ଅଉ କୌଣସି ଯୁକ୍ତି ନାହିଁ । ବିଶେଷତଃ ପିତୃବ୍ୟ ନିଜେ ସିଂହାସନରେ ଅଧିରୂଢ଼ ହେଉଥିବାରୁ ସେ ଏଣିକି ସେ ସମ୍ବନ୍ଧେ ନୀତି ନିର୍ଣ୍ଣୟ କରିବେ ।”

ବନ୍ଧୁଗଣ ମୋହର ଘୋଷଣା ଶ୍ରବଣକରି ସମବେତ ଜନତା ହୃଦୟରେ ସନ୍ଦେହର ଛାୟାପାତ ସୁଦ୍ଧା ହେଲା ନାହିଁ ଯେ ମୁଁ ବିକଟବର୍ମା ନୁହେଁ । ସେମାନଙ୍କ ଶାସକର ଯେ ଏପରି ଅଭାବନୀୟ ପରିବର୍ତ୍ତନ ହେଲା ଏଥିପାଇଁ ସକଳମୁଖରେ ଆନନ୍ଦ ଧ୍ୱନି ସହିତ ମୋ ରୂପ ଓ ଗୁଣର ପ୍ରଶଂସା ଉଚ୍ଛୁଳି ଉଠିଲା ।

ମୋହର ପିତା ମାତାଙ୍କୁ ମୋ ସମ୍ମୁଖକୁ ଅଣାଗଲା । ସେମାନଙ୍କର ମୁକ୍ତି ସେମାନେ ଅଉ ଜୀବଦ୍ଦଶାରେ କଳ୍ପନା କରି ନଥିଲେ । ସୁତରାଂ ଅତ୍ୟାଚାରୀ ଶାସକର ସ୍ୱଭାବରେ ପରିବର୍ତ୍ତନ ଓ ସେମାନଙ୍କର ମୁକ୍ତି ସମ୍ବାଦ ଉଭୟଙ୍କୁ ସମାନ ଭାବରେ ବିସ୍ମୟାଭିଭୂତ କରିଥିଲା ।

କିନ୍ତୁ ସେ ଯାହାହେଉ, ପିତାମାତାଙ୍କୁ ଦର୍ଶନକରି ମୋହର ହୃଦୟର ଭାବ ଅସମ୍ଭାଳ ହୋଇ ପଡ଼ିଲା । ମୁଁ ଯେତେବେଳେ ବିକଟବର୍ମା ଭାବରେ ସେମାନଙ୍କୁ ରାଜପ୍ରାସାଦରେ ଅଭ୍ୟର୍ଥନା କରିବାକୁ ଗଲି ସେତେବେଳେ ବାସ୍ତବ କଥାକୁ ପ୍ରକାଶ କରି-ଦେବା ନିମିତ୍ତ ମୋହର ପ୍ରାଣ ଉଦ୍‌ବେଳିତ ହୋଇ ଉଠିଲା କିନ୍ତୁ ଆତ୍ମପ୍ରକାଶ ପାଇଁ ତଦବଧି ଉପଯୁକ୍ତ ସମୟ ହୋଇନାହିଁ ଭାବି ବହୁକଷ୍ଟରେ ଆତ୍ମସଂଯମ କଲି ।

ପିତା ଉପଯୁକ୍ତ ଭାବରେ ପୁଣି ସିଂହାସନରେ ଅଧିଷ୍ଠିତ ହେଲେ । ରାଜ୍ୟରେ ପୂର୍ବ ଶାନ୍ତି ଓ ସୌଭାଗ୍ୟ ଫେରିଆସିଲା । କଳ୍ପସୁନ୍ଦରୀ ସପତ୍ନୀମାନଙ୍କ ନିର୍ଯାତନାରୁ ରକ୍ଷାପାଇ ମୋ ପ୍ରତି ଏପରି ପ୍ରେମାସକ୍ତ ହୋଇପଡ଼ିଲେ ଯେ ପ୍ରହାରବର୍ମୀ ରାଜା ହେବା ଫଳରେ ନିଜେ ରାଜରାଣୀର ଅଧିକାର ହରାଇ ମଧ୍ୟ ନିଜକୁ ଅଧିକ ସୁଖୀ ଓ ସୌଭାଗ୍ୟବତୀ ମନେକଲେ ।

କେତେକ ସପ୍ତାହ ପରେ ମୁଁ ବୋଧ କଲି ଯେ ବର୍ତ୍ତମାନ ସତ୍ୟକଥା ପ୍ରକାଶକଲେ କଳ୍ପସୁନ୍ଦରୀ ତାହା ଅମ୍ଳାନବଦନରେ ସହ୍ୟ କରିଯିବେ । ତେଣୁ ଦିନେ ଉପଯୁକ୍ତ ସମୟରେ ସମସ୍ତ ସତ୍ୟକଥା—ତାହାଙ୍କୁ ଲଭ କରିବାପାଇଁ ମୁଁ ଯେଉଁସବୁ ଦୁଃସାଧ୍ୟ କର୍ମ ସମ୍ପାଦନ କଲି, ତାହା ବର୍ଣ୍ଣନା କରି ରାଜା ପ୍ରହାରବର୍ମୀ ଓ ରାଣୀଙ୍କ ସହିତ ମୋହର ସମ୍ପର୍କ ପ୍ରକାଶକଲି । ସେ ପ୍ରଥମେ ବିଶେଷ ଅସ୍ଥିର ଏବଂ ସନ୍ଦିଗ୍ଧ ହୋଇ ପଡ଼ିଲେ ମଧ୍ୟ କିଛି ସମୟପରେ ସମସ୍ତ କଥାର ସ୍ପଷ୍ଟ ଧାରଣା କରି ମୋହର କୋଳକୁ ଆଉଜି ପଡ଼ି କହିଲେ, 'ପ୍ରାଣେଶ୍ୱର, ମୁଁ ଆପଣଙ୍କର ପୂର୍ବଜନ୍ମର କନ୍ୟା । ତେଣୁ ତାହା କିଏ ଅନ୍ୟଥା କରିପାରେ । ସମସ୍ତ ପୂର୍ବକଥା ସ୍ୱପ୍ନ ପରି ଅତୀତ ହୋଇଛି—ତାହା ଅତୀତ ଗର୍ଭରେ ହିଁ ଲୀନ ହେଉ ।"

ଏହାର କିଛିଦିନ ପରେ ମୁଁ ରାଜା ଓ ରାଣୀଙ୍କ ପାଦତଳେ ପଡ଼ି ସମସ୍ତ ରହସ୍ୟ ପ୍ରକାଶକଲି । ତାହାଙ୍କର ଉଭୟ ସନ୍ତାନ ନିରାପଦରେ ଥିବାଶୁଣି ପରସ୍ପରଙ୍କ ଅଶେଷ କରୁଣା ନିମିତ୍ତ ଉଭୟେ ସଜଳ ନୟନରେ ମଙ୍ଗଳମୟଙ୍କ ଉଦ୍ଦେଶ୍ୟରେ ମସ୍ତକ ଅବନତ କଲେ ।

ପ୍ରଜାସାଧାରଣଙ୍କ ମନରେ କୌଣସି ପ୍ରକାର ସନ୍ଦେହ ପ୍ରତି ଅବକାଶ ନଦେବାପାଇଁ ମୋହର ପିତା ମୋତେ ପୋଷ୍ୟପୁତ୍ର

ଭାବରେ ଗ୍ରହଣ କରିନେଲେ ଏବଂ ପରଦିବସ ମୁଁ ଯୁବରାଜ ଭାବରେ ଅଭିଷିକ୍ତ ହେଲି ।

ଏହି ଅବସରରେ ମୋହର ପିତା ସମ୍ବାଦ ପାଇଲେ ଯେ ଚଣ୍ଡବର୍ମା ଚମ୍ପାନଗରୀ ଆକ୍ରମଣ କରିଛନ୍ତି ଏବଂ ସେହି କାରଣରୁ ସିଂହବର୍ମା ସାହାଯ୍ୟ ପ୍ରାର୍ଥନା କରିଛନ୍ତି ।

ପରଦିବସ ଆମ୍ଭେମାନେ ସସୈନ୍ୟ ଚମ୍ପା ଅଭିମୁଖରେ ଯାତ୍ରାକଲୁଁ । କିନ୍ତୁ ନଗରୀର ପ୍ରବେଶଦ୍ୱାରରେ ପହଞ୍ଚିବା ପୂର୍ବରୁ ଆମ୍ଭେମାନେ ଚଣ୍ଡବର୍ମାଙ୍କ ମୃତ୍ୟୁ ସଂବାଦ ପାଇଲୁଁ । ତାହାପରେ ଆପଣମାନଙ୍କ ସାକ୍ଷାତ ପାଇ, ହେ ଯୁବରାଜ ଓ ସଖାଗଣ, ମୋହର ହୃଦୟ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଉଠିଲା ।"

---

## ( ୧୨ )

# ଅର୍ଥପାଳଙ୍କ କଥା

ଉପହାରବର୍ମାଙ୍କ କଥା ଶେଷରେ ରାଜବାହନ କହିଲେ, "ବନ୍ଧୁ ଉପହାର, ମାନବପ୍ରକୃତି ପର୍ଯ୍ୟାଲୋଚନା କରି ତାହାକୁ ଉଦ୍ଦେଶ୍ୟ ଅନୁଯାୟୀ କୃତିତ୍ୱ ସହକାରେ ବିନିଯୋଗ କରିବାରେ ତୁମେ ତୁମର ସହୋଦରଙ୍କୁ ଟପି ଯାଇଅଛ । ଗୋପନ ଷଡ଼୍‌ଯନ୍ତ୍ର ଓ କୌଶଳ ପୂର୍ଣ୍ଣ ଯୋଜନା ରଚନା କରିବାରେ ଖୁବ୍‌କମ୍ ବ୍ୟକ୍ତି ତୁମର ସମକକ୍ଷ ହୋଇ ପାରନ୍ତି । ମୁଁ ଏବଂ ସଖାଗଣ ତୁମର ଅଳାପରେ ପରିତୃପ୍ତ ହେବା ସଙ୍ଗେ ସଙ୍ଗେ ତୁମର ଗୌରବ ବିମଣ୍ଡିତ ସାହସିକ କ୍ରିୟାକଳାପ ପାଇଁ ଅନ୍ତରର ସମ୍ଭାଷଣ ଜ୍ଞାପନ କରୁଅଛୁ । ବର୍ତ୍ତମାନ, ହେ ବନ୍ଧୁଗଣ, ଅସ ସଖା ଅର୍ଥପାଳଙ୍କ କଥା ଶ୍ରବଣ କରିବା ।"

ଅର୍ଥପାଳ କହିଲେ, "ଯୁବରାଜ, ଆପଣଙ୍କର ଅନ୍ୱେଷଣରେ ମୁଁ ବହୁଦେଶ ଭ୍ରମଣ କରି ଶେଷରେ ପବିତ୍ର କାଶୀକ୍ଷେତ୍ରରେ ଉପସ୍ଥିତ ହେଲି । ଗଙ୍ଗା ନଦୀରେ ସ୍ନାନ ଏବଂ ମୁକ୍ତେଶ୍ୱରଦେବଙ୍କ ଅର୍ଚ୍ଚନା କରସାରିବା ପରେ ନଗରୀର ଦକ୍ଷିଣ ଦ୍ୱାରଦେଇ ବହିର୍ଗତ ହେଲି । ପଥମଧ୍ୟରେ ପ୍ରାକୃତିକ ଶୋଭା ଦର୍ଶନ କରି ଅଗ୍ରସର ହେଉଥିବା ବେଳେ ପଥପାର୍ଶ୍ୱରେ ଜଣେ ବଳିଷ୍ଠ ଯୁବକ ଅତି ବ୍ୟାକୁଳଭାବରେ

କ୍ରନ୍ଦନ କରୁଥିବାର ଦେଖିଲି । ଏ ଘଟଣାରେ ମୁଁ ବିଶେଷ ବିସ୍ମିତ ହୋଇ ଯୁବକ ନିକଟକୁ ଯାଇ ତାହାର କ୍ରନ୍ଦନର କାରଣ ପଚାରିଲି ।”

ଯୁବକ କହିଲା, “ମହାଶୟ, ଆପଣ ନିଶ୍ଚୟ ଜଣେ ନବାଗତ ହୋଇଥିବେ; ନଚେତ୍ ଆପଣ ମୋତେ ଚିହ୍ନି ପାରିଥାନ୍ତେ ଯେ ମୁଁ ପୂର୍ଣ୍ଣଭଦ୍ର । ଏ ଦେଶର ଶାସକ ସିଂହ ଘୋଷଙ୍କର ଭଗିନୀପତି କାମପାଳଙ୍କର ମୁଁ ଅନ୍ତରଙ୍ଗ ବନ୍ଧୁ । ହାୟ, ମିଥ୍ୟା ରାଜଦ୍ରୋହ ଅପରାଧରେ ଆଜି ତାହାଙ୍କର ପ୍ରାଣଦଣ୍ଡ ହେବ । ତାହାଙ୍କୁ ରକ୍ଷା କରିବା ପାଇଁ ମୁଁ ଅସମର୍ଥ ।

ମୁଁ ଉତ୍ତର କଲି, “କିନ୍ତୁ ଆପଣ କ୍ରନ୍ଦନରତ ହୋଇ ବନ୍ଧୁଙ୍କୁ ପ୍ରାଣଦଣ୍ଡରୁ ରକ୍ଷାକରିପାରିବାର କି କୌଣସି ସମ୍ଭାବନା ଅଛି ? କ୍ରନ୍ଦନ କରି ଲାଭ କଅଣ ? କାମପାଳଙ୍କ ସମ୍ବନ୍ଧେ ଆପଣ ଅଉ ବିଶେଷ କିଛି ଜାଣିଥିଲେ କହନ୍ତୁ । ସମ୍ଭବହେଲେ କୌଣସି ବନ୍ଧୁ ସାହାଯ୍ୟରେ ରାଜାଙ୍କ ନିକଟରେ ତାହାଙ୍କର ଜୀବନଭିକ୍ଷା କରିବା ।”

“ମହାଶୟ, ରାଜଦରବାରର ବନ୍ଧୁଗଣ କେବଳ ସମ୍ପଦର ସାଥି । ରାଜା ସିଂହଘୋଷ ଅପ୍ରାପ୍ତ ବୟସ୍କ ଥିବା ସମୟରେ କାମପାଳ ଏ ରାଜ୍ୟରେ କଠୋର ନ୍ୟାୟ ପରାୟଣ ରାଜପ୍ରତିନିଧି ଥିଲେ । ତେଣୁ ପାରିଷଦମାନଙ୍କ ମଧ୍ୟରେ ତାହାଙ୍କର ଏପରି କୌଣସି ବନ୍ଧୁ ନାହାନ୍ତି ଯେ ବର୍ତ୍ତମାନ ତାହାଙ୍କ ପକ୍ଷ ସମର୍ଥନ କରିବାକୁ ଅଗ୍ରସର ହୋଇ ନିଜ ଜୀବନକୁ ବିପଦାପନ୍ନ କରିବ । ଅହା କି ନ୍ୟାୟପରାୟଣ ଥିଲେ ସେ । ରାଜହଂସଙ୍କ ମନ୍ତ୍ରୀ ଧର୍ମପାଳଙ୍କ ପୁତ୍ର ବ୍ୟତୀତ ଏପରି ଅନ୍ୟାୟ ବିଚାର ଅନ୍ୟ କାହାରିଠାରୁ ଆଶାକରିବା ବୃଥା ସିନା !

"ଏଁ, କଣ କହୁଛ ? ରାଜହଂସଙ୍କ ମନ୍ତ୍ରୀ ଧର୍ମପାଳଙ୍କ ପୁତ୍ର—କାମପାଳ—ମୋହର ପିତା ।। ଯୁବକ, ମୋ ପିତାଙ୍କ ଉଦ୍ଧାର କରିବାରେ ମୋତେ ସାହାଯ୍ୟ କର !"

"କାମପାଳ ତୁମର ପିତା ? ତୁମ୍ଭେ ତାହାଙ୍କର ପୁତ୍ର ? ତେବେ ତୁମେ ଅଜ୍ଞପାଏ କେଉଁଠାରେ ଥିଲ ? କିନ୍ତୁ ଏ ସବୁ ପ୍ରଶ୍ନର ଏ ସମୟ ନୁହେ । ତୁମ ପିତାଙ୍କର ବିଚକ୍ଷଣତାର ଶତାଂଶରୁ ଏକ ଅଂଶ ଯଦି ତୁମଠାରେ ଥାଏ ତେବେ ତୁମେ ଜୀବନରେ ନିଶ୍ଚୟ ଯଶସ୍ବୀ ହୋଇ ପାରିବ । ଅଚ୍ଛା, ବର୍ତ୍ତମାନ ତୁମେ କିଛି ଉପାୟ କରିପାରିବ ନାହିଁ ?"

"ନିଶ୍ଚୟ ! ରାଜହଂସଙ୍କ ପୁତ୍ର ରାଜବାହନଙ୍କ ସହିତ ଅକସ୍ମିକ ବିପଦର ପ୍ରତିକାର ପାଇଁ ମୁଁ ଯଥେଷ୍ଟ ଉପାୟ ଶିକ୍ଷା କରିଛି । ସେହି-ଠାରେ ମୁଁ ଅଜ୍ଞପାଏଁ ଥିଲି । ମୋହର ଜୀବନର କାହାଣୀ ପରେ କହିବି— ବର୍ତ୍ତମାନ ପାଇଁ ଏତିକି କହିଲେ ଯଥେଷ୍ଟ ହେବ ଯେ ଏ ମଧ୍ୟରେ ଭେଳବିଦ୍ୟା ଓ ଚକ୍ଷୁବନ୍ଧନରେ ମୁଁ ଚୂଡ଼ାନ୍ତ କୃତିତ୍ୱ ଲାଭ କରିଅଛି । ତା ଛଡ଼ା ମୁଁ ପକ୍ଷୀମାନଙ୍କର ଭାଷା ବୁଝିପାରେ ଏବଂ ବିଷଧର ସର୍ପମାନଙ୍କୁ ମଧ୍ୟ ବଶୀଭୂତ କରିପାରେ । ଏହି ଦେଖ, ନିକଟରେ ଗୋଟାଏ ବିଷଧର ସର୍ପ ଗ୍ରୁଲିଯାଉଛି ଏହାର ଦଂଶନ ମାରାତ୍ମକ ହେଲେ ମଧ୍ୟ, କେତେକ ମୂଳମୂଳିକା ସାହାଯ୍ୟରେ ଚିକିତ୍ସା କଲେ ଅଳ୍ପସମୟ ମଧ୍ୟରେ ପୁନର୍ଜୀବନ ଲାଭହୁଏ । ଅଚ୍ଛା, ପ୍ରାଣଦଣ୍ଡ କେଉଁଠାରେ ଦିଆଯିବ ?"

"ସମ୍ମୁଖସ୍ଥ ସାନ୍ଦ୍ର ବୃକ୍ଷତାଳରେ ଦୋଷୀ ବ୍ୟକ୍ତିର ଫାଶୀଦଣ୍ଡ ହୁଏ । ଏଇ ଦେଖ, ଦୂରରେ ରାଜକର୍ମଚାରୀମାନଙ୍କ ସହିତ ବହୁଲୋକ ଆଗମନ କରୁଅଛନ୍ତି ।"

"ତେବେ ଚଞ୍ଚଳ ଉଠ। ଶୁଣ, ମୁଁ ସର୍ପଟାକୁ ମୋହର ପିତାଙ୍କ ଉପରକୁ ନିକ୍ଷେପ କରିବି। ସର୍ପଦଂଶନ ଫଳରେ ସେ ହତଚେତନ ହୋଇ ପଡ଼ିବେ। ତୁମେ ମୋହର ମାତାଙ୍କ ସହ ରାଜାଙ୍କ ନିକଟକୁ ଯାଇ ମୃତ ଦେହଟିକୁ ତାହାଙ୍କୁ ଫେରାଇ ଦେବାପାଇଁ ପ୍ରାର୍ଥନା କରିବ। ତୁମ ନିଜ ଉଦ୍ୟାନର ଅନ୍ତରାଳରେ ଶଯ୍ୟା ପ୍ରସ୍ତୁତ କର। ମୁଁ ପରେ ଆସି ଅନ୍ୟ ସମସ୍ତ ବ୍ୟବସ୍ଥା କରିବି।"

ପୂର୍ଣ୍ଣଭଦ୍ର ସମ୍ମତ ଜଣାଇ ଅତି ବ୍ୟଗ୍ରଭାବରେ ପ୍ରସ୍ଥାନକଲେ। ମୁଁ ସାବଧାନତା ସହକାରେ ସର୍ପଟିକୁ ବନ୍ଧନ କଲି ଏବଂ ତାହାପରେ ବୃକ୍ଷ ଉପରକୁ ଆରୋହଣ କରି ଏକ ଶାଖାରେ ଲୁକ୍କାୟିତ ହୋଇ ରହିଲି।

କିଛି ସମୟ ମଧ୍ୟରେ ମୋହର ପିତାଙ୍କ ହସ୍ତପଦ ଶୃଙ୍ଖଳିତ କରି କେତେକ ପ୍ରହରୀ ଓ ବହୁ ଦର୍ଶକ ବୃକ୍ଷମୂଳକୁ ଆସିଲେ। ସେମାନେ ଆସି ଠିକ୍ ମୋହର ନିମ୍ନଦେଶରେ ଠିଆହେଲେ। ମୁଁ ପିତାଙ୍କୁ ଏପରି ହୀନ ଓ ଅସହାୟ ଅବସ୍ଥାରେ ଜୀବନରେ ଏବଂ ପ୍ରଥମେ ଦେଖିବାକୁ ପାଇଲି। ଯାହାହେଉ, ଏ ଅବସ୍ଥାରେ ମଧ୍ୟ ମୋହର ପିତା ମସ୍ତକ ଅବନତ ନକରି ନିର୍ଭୀକ ଭାବେ ଦଣ୍ଡାୟମାନ ହୋଇଥିବା ଦେଖି ମୋହର ପ୍ରାଣ ଆନନ୍ଦରେ ପୂରିଗଲା ଏବଂ ବିଶ୍ୱାସ ହେଲା ଯେ ସେ ନିଶ୍ଚୟ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ। ଏତିକିବେଳେ ପ୍ରଧାନ ରାଜକର୍ମଚାରୀ ପିତାଙ୍କ ବିରୁଦ୍ଧରେ ଉପସ୍ଥାପିତ ଅଭି-ଯୋଗମାନ ଗୋଟିକ ପରେ ଗୋଟିଏ ପାଠ କଲେ। ଶେଷରେ ସେ ନୃପତିଙ୍କ ଦଣ୍ଡାଦେଶ ପ୍ରକାଶ କରନ୍ତେ ଜନତା ମଧ୍ୟରେ ଏକ ଭୀଷଣ ଚାଞ୍ଚଲ୍ୟ ଖେଳିଗଲା। ଆମଦେଶରେ ବ୍ୟବସ୍ଥା ଥିଲା

ଯେ ପ୍ରଥମେ ତପ୍ତଲୌହ ଶଳାକା ଦ୍ୱାରା ତାହାଙ୍କୁ ଅନ୍ଧ କରାଯାଇ ପରେ ଫାଶୀ ବିଧାନ କରାଯିବ ।

କେତେକ ଅନୁଚାରୀ ବୃକ୍ଷର ଅପରପାର୍ଶ୍ୱରେ ଲୌହ ଶଳାକା ଉତ୍ତପ୍ତ କରୁଥିଲେ । ଦଣ୍ଡାଦେଶ ଶୁଣି ମୋହର ହୃତ୍‌ପିଣ୍ଡ ଚଞ୍ଚଳିତ ହେବାକୁ ଲାଗିଲା । ଏପରି ଅବସ୍ଥାରେ ଲକ୍ଷ ଠିକ୍ କରି ସର୍ପଟିକୁ ନିକ୍ଷେପ କରିପାରିବି କି ? କିନ୍ତୁ ଚେଷ୍ଟା କରିବାକୁ ହେବ । ସର୍ପଟିକୁ ମଣ୍ଡଳାକାରରେ ସଜୋରରେ ଘୁରାଇ ଧରି ଲକ୍ଷ ଠିକ୍ କଲି ଏବଂ ମଙ୍ଗଳମୟଙ୍କ ନାମ ସ୍ମରଣ କରି ନିକ୍ଷେପ କଲି । ସର୍ପଟି ଯାଇ ଠିକ୍ ଗୋଟିଏ ମୁକୁଟ ଭଳି ମୋହର ପିତାଙ୍କ ମସ୍ତକ ଉପରେ ପଡ଼ିଲା ଏବଂ ଅଘାତ ପାଇ ଫୁତ୍କାର ସହକାରେ ତାହାଙ୍କ କପାଳରେ ଦଂଶନ କଲା । ପର ମୁହୂର୍ତ୍ତରେ ଦେଖିଲି, ପିତା ଶୃଙ୍ଖଳିତ ହସ୍ତ-ଦୁଇଟିକୁ ଉପରକୁ ଟେକି ଚିତ୍କାର କରି ଆପାଦ ମସ୍ତକ କମ୍ପିତ ହେବା ସଙ୍ଗେ ସଙ୍ଗେ ହତଚେତନ ହୋଇ ଭୂମି ଉପରେ ପଡ଼ିଗଲେ । ସର୍ପଟି ଭୀତତ୍ରସ୍ତ ଜନତା ମଧ୍ୟରେ ପଶି ପଳାଇବାକୁ ଲାଗିଲା । ଚତୁର୍ଦ୍ଦିଗରୁ ଚିତ୍କାର ଉଠିଲା ଯେ ଏହା ବିଧାତାର ଦଣ୍ଡ । ତେଣୁ ତାହାଙ୍କର ଦୋଷ ସମ୍ବନ୍ଧେ ଆଉ କୌଣସି ସନ୍ଦେହ ରହିଲା ନାହିଁ ।

ଏ ମଧ୍ୟରେ ପୂର୍ଣ୍ଣଭଦ୍ର ମୋ ମାତାଙ୍କ ସହିତ ରାଜାଙ୍କ ନିକଟରେ ଉପସ୍ଥିତ ହୋଇଥିଲେ । ମା ଅତି ବିକଳସ୍ୱରରେ କ୍ରନ୍ଦନକରି ରାଜାଙ୍କୁ ନିବେଦନ କଲେ ଯେ ମୃତ ପତିଙ୍କର ଶବ ତାହାଙ୍କୁ ଫେରାଇଦେଲେ ବିଧାନ ଅନୁଯାୟୀ ସେ ସତ୍କାର କରିବେ । ଅସହାୟା ନାରୀର ବିକଳ ମିନତି ରାଜହୃଦୟ ସ୍ପର୍ଶ କଲା । ରାଜା ଆଦେଶ କଲେ ଯେ ପ୍ରାଣଦଣ୍ଡ ଦିଆଯିବା ପରେ କାମପାଳଙ୍କ ମୃତ ଦେହ

ତାହାଙ୍କ ସ୍ତ୍ରୀଙ୍କୁ ଅର୍ପଣ କର ଦଅଯିବ । ଏ ଆଦେଶ ତତ୍‌କ୍ଷଣାତ୍ ବଧଭୂମିକୁ ପ୍ରେରିତ ହେଲା ।

ଏଣେ ବଧଭୂମିରେ ପରସ୍ଥିତିର ଏମନ୍ତ ଆକସ୍ମିକ ପରିବର୍ତ୍ତନ ଯୋଗୁଁ କି ପନ୍ଥା ଅବଲମ୍ବନ କରିବାକୁ ହେବ ତାହା କର୍ମଚାରୀମାନଙ୍କ ମଧ୍ୟରେ ଆଲୋଚିତ ହେଉଥିବ । ସେମାନେ ଶେଷରେ ମୃତ ଦେହ ଉପରେ ଆଦିଷ୍ଟ ଦଣ୍ଡ ଦଅଯିବା ଉଚିତ କି ନୁହେଁ ଜାଣିବା ପାଇଁ ରାଜାଙ୍କ ନିକଟକୁ ଦୂତ ପ୍ରେରଣ କଲେ । ମୁଁ ଅବଶ୍ୟ ଏକଥା ଆଗରୁ କଳ୍ପନା କରିପାରି ନଥିଲି । ତେଣୁ ମୋହର ସକଳ ଚେଷ୍ଟା ଯେ ଏଠାରେ ପଣ୍ଡ ହେବାକୁ ଯାଉଛି ଏହା ଭାବି ଅସ୍ଥିର ହୋଇ ପଡ଼ିଲି । ସୁତରାଂ କୌଣସି ପ୍ରକାର ଚକ୍ରାନ୍ତ ବା କୌଶଳ ଦ୍ୱାରା ମୁଁ ଏ ପରସ୍ଥିତିକୁ ପରିବର୍ତ୍ତିତ କରିପାରିବି କି ନା ଚିନ୍ତାକଲା ବେଳେ ହଠାତ୍ ମୋହର ମା ପୂର୍ଣ୍ଣଭଦ୍ରଙ୍କ ସହିତ ଆସି ଉପସ୍ଥିତ ହେଲେ । ଅବଗୁଣ୍ଠିତ ମସ୍ତକରେ ଆର୍ତ୍ତବିଳାପ କରୁ କରୁ ସେ ପିତାଙ୍କ ଶରୀର ଉପରେ ଯାଇପଡ଼ିଲେ । ଏଣେ ପୂର୍ଣ୍ଣଭଦ୍ର ସଂକ୍ଷେପରେ ରାଜାଙ୍କ ସହିତ ତାହାଙ୍କର ସାକ୍ଷାତ୍ ଓ ରାଜାଙ୍କ ଆଦେଶ ସମ୍ବନ୍ଧେ ଜଣାଉଥିଲା ବେଳେ ରାଜଦୂତ ଆସି ଉପସ୍ଥିତ ହେଲା । ତେଣୁ କର୍ମଚାରୀ ଗଣ ଆତତାୟୀ ଓ ଜନତାସହ ମୃତଦେହ ନିକଟରୁ ଅନ୍ତର ହୋଇ ନଗର ଅଭିମୁଖରେ ପ୍ରତ୍ୟାବର୍ତ୍ତନ କଲେ । ମୃତଦେହ ନିକଟରେ ମୋହର ମାତା ଏବଂ ପୂର୍ଣ୍ଣଭଦ୍ର କେବଳ ରହିଲେ । କହିବା ବାହୁଲ୍ୟ ଯେ ରାଜାଙ୍କ ସହିତ ସାକ୍ଷାତ ପୂର୍ବରୁ ପୂର୍ଣ୍ଣଭଦ୍ର ମୋହର ଆଗମନ ଓ ପ୍ରଚେଷ୍ଟା ସମ୍ବନ୍ଧେ ମାତାଙ୍କୁ ସମସ୍ତ କଥା କହିଥିଲେ । ତେଣୁ ତାହାଙ୍କର ସମସ୍ତ କ୍ରନ୍ଦନ କେବଳ ଅଭିନୟ ମୂଳକ ଥିଲା ।

ମୁଁ ବୃକ୍ଷଶାଖାରୁ ଅବତରଣ କରି ମାଙ୍କ ପାଦତଳେ ପ୍ରଣାମ କରିବା ମାତ୍ରେ ସେ ମୋତେ କୋଳକରି ଆନନ୍ଦାଶ୍ରୁ ବର୍ଷଣ କରିବା ସଙ୍ଗେ ସଙ୍ଗେ ଯଥାଶୀଘ୍ର ପିତାଙ୍କୁ ସଚେତ କରାଇବା ନିମିତ୍ତ ବ୍ୟାକୁଳ ହୋଇ ପଡ଼ିଲେ । ମୁଁ ତାହାଙ୍କୁ ଧୈର୍ଯ୍ୟ ଧରିବା ସକାଶେ ଅନୁରୋଧ କଲି ଏବଂ ପୂର୍ଣ୍ଣଭଦ୍ରଙ୍କୁ ବିଶ୍ୱସ୍ତ ଭୃତ୍ୟମାନଙ୍କ ସାହାଯ୍ୟରେ ମୃତପ୍ରାୟ ପିତାଙ୍କୁ ଗୃହକୁ ନେବାପାଇଁ ଉପଦେଶ ଦେଇ ସର୍ପଗଦ ଅନ୍ୱେଷଣରେ ବାହାରିଲି ।

ଏଥି ମଧ୍ୟରେ ପ୍ରସ୍ତାବ ଅନୁଯାୟୀ ପୂର୍ଣ୍ଣଭଦ୍ର ତାହାଙ୍କର କର୍ତ୍ତବ୍ୟ କରିଥିଲେ । ତାହାଙ୍କ ଉଦ୍ୟାନରେ ଲୋକଚକ୍ଷୁର ଅନ୍ତରାଳରେ ଶଯ୍ୟା ପ୍ରସ୍ତୁତ ହୋଇଥିଲା । ଅଳ୍ପକ୍ଷଣ ମଧ୍ୟରେ ଇପ୍ସିତ ମୂଳ ମୂଳିକା ଲାଭକରି ମୁଁ ଫେରି ଆସିଲି । ସାମାନ୍ୟ ଚେଷ୍ଟା ପରେ ପିତା ଚେତନା ପାଇ ବିସ୍ମୟାଭିଭୂତ ଭାବରେ ଉପବେଶନ କଲେ । ଆମ୍ଭମାନଙ୍କର ପୁନର୍ମିଳନ ଅଭୂତପୂର୍ବ ଆନନ୍ଦ ପ୍ରଦାନ କଲା —ସବୁରି ଚକ୍ଷୁ ଆନନ୍ଦାଶ୍ରୁରେ ପ୍ଲାବିତ ହୋଇଗଲା । ତେଣେ ଶବଦାହ ଚିତା ସମସ୍ତ ଅନୁଷଙ୍ଗିକ ପ୍ରକ୍ରିୟା ସହ ଜଳିଉଠିଲା, ବେଳକୁ ଆମ୍ଭେମାନେ ଏକ ନିଭୃତ କକ୍ଷରେ ବସି ମଧୁର ଆଳାପରେ ନିମଜ୍ଜିତ ହେଲୁଁ ।

ଯାହାହେଉ, ଏହାପରେ ପିତାଙ୍କର ମୃତ୍ୟୁ ଓ ମାତାଙ୍କର ବୈଧବ୍ୟର ଛଳନା ଉଚ୍ଛେଦନ ଯାଏଁ କରି ଭବିଷ୍ୟତ୍ କର୍ମପନ୍ଥା ଠିକ୍ କରିବାକୁ ଲାଗିଲୁ । ଅକୃତଜ୍ଞ ରାଜାକୁ ସିଂହାସନଚ୍ୟୁତ କରି ରାଜଭଗିନୀ ତଥା ମୋହର ମାତାଙ୍କୁ ରାଜ୍ୟାଧିକାର ଦେଇ ପିତାଙ୍କ ସାହାଯ୍ୟରେ ତାହାର ପରିଚାଳନାର ବ୍ୟବସ୍ଥା କରିବାହିଁ ହେଲା ଆମ୍ଭମାନଙ୍କର ଲକ୍ଷ୍ୟ ।

ସେଦିନ ରାତରେ ପିତାଙ୍କୁ ତାହାଙ୍କର ପରିଖା ପରିବେଷ୍ଟିତ ଦୁର୍ଗ ମଧ୍ୟକୁ ନେଇଗଲେ । ତନ୍ମଧ୍ୟରେ ଏକ କୋଠରୀରେ ସେ ଲୁକାୟିତ ହୋଇ ରହିଲେ । ଏକଥା ତାହାଙ୍କ ବିଶ୍ୱସ୍ତ ଗୁପ୍ତଚର-ମାନଙ୍କ ଭିତରୁ କେତେକ ଲୋକ ଜାଣି ପାରିଥିଲେ ।

ଏ ମଧ୍ୟରେ ପୂର୍ଣ୍ଣଭଦ୍ର ଏବଂ ମୁଁ ପିତାଙ୍କର ପୁରାତନ ବନ୍ଧୁ-ମାନଙ୍କ ସହ ଆଲୋଚନା କରି ଏକ ଶକ୍ତିଶାଳୀ ଦଳ ଗଠନ କରିବାକୁ ଲାଗିଲୁଁ । ମୋହର ପିତାଙ୍କ ପ୍ରାସାଦ ରାଜପ୍ରାସାଦର ପାର୍ଶ୍ୱରେ ଅବସ୍ଥିତ । ସୁତରାଂ ଏଠାରୁ ରାଜପ୍ରାସାଦ ମଧ୍ୟକୁ ଭୂଗର୍ଭରେ ଏକ ସୁଡ଼ଙ୍ଗ ନିର୍ମାଣ କରି ଆକସ୍ମିକ ଭାବରେ ରାଜାଙ୍କୁ ଆକ୍ରମଣ କରି ବନ୍ଦୀକରିବା ନିମନ୍ତେ ମୁଁ ପ୍ରସ୍ତାବ କଲି । ଏଥିରେ ଅତି କୁଣ୍ଠା ସହକାରେ ପିତା ସମ୍ମତ ଦେଲେ ।

ପିତାଙ୍କର ବିଶ୍ୱସ୍ତ ଅନୁଚରମାନଙ୍କ ସାହାଯ୍ୟରେ ସୁଡ଼ଙ୍ଗ ପଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । କିନ୍ତୁ ବଡ଼ ବିଚିତ୍ର କଥାଯେ ସୁଡ଼ଙ୍ଗର ଅର୍ଦ୍ଧପଥ ଖନିତ ହେବାପରେ ଆମ୍ଭେମାନେ ଏକ ସୁପ୍ରଶସ୍ତ, ଅଲଙ୍କୃତ, ସୁସଜ୍ଜିତ କୋଠରୀ ଦେଖିବାକୁ ପାଇଲୁଁ । ଭୂଗର୍ଭରେ ଏହା ଏକ କ୍ଷୁଦ୍ର ପ୍ରାସାଦ ।

ମୋହର ସହଚରମାନଙ୍କୁ ସେଇଠାରେ ରଖି ମୁଁ ପ୍ରାସାଦ ମଧ୍ୟକୁ ଅଗ୍ରସର ହେଲି । କିଛିଦୂର ଗମନ କରି ମୁଁ କେତେଜଣ ସୁନ୍ଦରୀ ତରୁଣୀଙ୍କ ସମ୍ମୁଖୀନ ହେଲି । ତାରକା ପୁଞ୍ଜ ମଧ୍ୟରେ ଚନ୍ଦ୍ର ଭଳି ଏ ତରୁଣୀମାନଙ୍କ ମଧ୍ୟରେ ଜଣେ ଅତି ରୂପସୀ ଯୁବତୀ ଥିଲେ । ମୁଁ ତାହାଙ୍କର ସୌନ୍ଦର୍ଯ୍ୟରେ ଆତ୍ମହରା ହେଲେ ମଧ୍ୟ ସେ ମାନବୀ କି ଅପ୍ସରୀ ନିରୂପଣ କରି ପାରିଲି ନାହିଁ । ସେ ଏକ ସ୍ୱର୍ଣ୍ଣ ପ୍ରତିମା ଭଳି ପ୍ରତୀତ ହେଉଥିଲେ ଏବଂ ସେ ମୋ ଆଡ଼କୁ ଅଗ୍ରସର

ହେଉଥିବେଳେ ତାହାଙ୍କ ଅଙ୍ଗରୁ ଅନେକ ରେଖା ଉଦ୍ଭୂତ ହୋଇ ପଡ଼ୁଥିଲା । ସେ ମୋତେ ଦେଖିବା କ୍ଷଣି ସ୍ଥିର ବିଦ୍ୟୁତ୍‌ ଭଳି ବିସ୍ମୟସ୍ତ-ମାନା ହୋଇ ରହିଲେ । ଜଣେ ପ୍ରୌଢ଼ା ସ୍ତ୍ରୀ ମୋ ନିକଟକୁ ଆସି ମୋହର ପଦତଳେ ପଡ଼ି ଏ ଯୁବତୀମାନଙ୍କୁ ରକ୍ଷା କରିବା ପାଇଁ ପ୍ରାର୍ଥନା କଲେ । ବସ୍ତୁତଃ ସେ ଭାବିଥିଲେ ଯେ ମୁଁ ସେମାନଙ୍କର ଉପକାର କରିବା ପାଇଁ ଈଶ୍ୱର ପ୍ରେରିତ । କିନ୍ତୁ ମୁଁ ତାହାଙ୍କୁ ଆଶ୍ୱାସନା ଦେଇ କହିଲି ଯେ ମୁଁ ଜଣେ ମାନବ—କାମପାଳ ଓ ତାହାଙ୍କ ସ୍ତ୍ରୀ କାନ୍ତିମତୀଙ୍କର ବହୁ ପୂର୍ବରୁ ନିରୁଦ୍ଦିଷ୍ଟ ଏକମାତ୍ର ସନ୍ତାନ । ସଙ୍ଗେ ସଙ୍ଗେ ମୁଁ ମଧ୍ୟ ଜାଣିବାକୁ ଇଚ୍ଛା କଲି ସେ ଯୁବତୀଗଣ ମାନବୀ ନା ପୁରାଣ ବର୍ଣ୍ଣିତ ପାତାଳ ପୁରୀର କନ୍ୟା ।

ପ୍ରୌଢ଼ା ଉତ୍ତର କଲା, "ଯୁବରାଜ, ତୁମର ମାତାମହ ଚଣ୍ଡ-ସିଂହଙ୍କର ତିନିଗୋଟି ସନ୍ତାନ ଥିଲେ—ତୁମର ମାତା କାନ୍ତିମତୀ, ଚଣ୍ଡଘୋଷ ଏବଂ ସିଂହଘୋଷ । ଚଣ୍ଡଘୋଷଙ୍କ ଅକାଳମୃତ୍ୟୁ ପରେ ସିଂହଘୋଷ ସିଂହାସନ ଅଧିରୋହଣ କରି ବର୍ତ୍ତମାନ ରାଜା ହୋଇଛନ୍ତି । ଏହି ରୂପସୀ ଯୁବତୀ ଚଣ୍ଡଘୋଷଙ୍କ କନ୍ୟା—ପିତାଙ୍କ ମୃତ୍ୟୁପରେ ଜନ୍ମଗ୍ରହଣ କରିଥିଲେ । ଏ କନ୍ୟାର ଜନ୍ମ କାଳରେ ଚଣ୍ଡସିଂହ ଏହାକୁ ମୋ ହାତରେ ସମର୍ପଣ କରି କହିଲେ, "ମୁଁ ଏହି ପୌତ୍ରୀ ମଣିକର୍ଣ୍ଣିକାକୁ ମାଳବରାଜ ମାନସାରଙ୍କ ପୁତ୍ରଙ୍କ ସହିତ ବିବାହ ଦେବା ନିମିତ୍ତ ମନସ୍ଥ କରିଅଛି । କିନ୍ତୁ କାଳେ ମୋହର କନ୍ୟା କାନ୍ତିମତୀ ସ୍ୱଇଚ୍ଛାରେ କାମପାଳଙ୍କୁ ପତିରୂପେ ବରଣ କଲାପରି ଏ ମଧ୍ୟ ମୋ ଇଚ୍ଛାବିରୁଦ୍ଧ କାର୍ଯ୍ୟ କରିବ, ଏଥିପାଇଁ ଏହାକୁ ତୁମର ତତ୍ତ୍ୱାବଧାନରେ ଦେଇଅଛି । ମାନସାରଙ୍କ ମୋହର ବାଗ୍‌ଦାନ ଯେପରି ଭଙ୍ଗ ନହୁଏ ସେଥିପାଇଁ ତୁମେ ଯତ୍ନ ନେବ ।"

ଏହା କହି ସେ ମୋତେ ଭୂଗର୍ଭ ପ୍ରାସାଦକୁ ପ୍ରେରଣ କଲେ । ଏହା ଦୀର୍ଘ ତେର ବର୍ଷ ତଳର କଥା । ସେହି ଦିନଠାରୁ ସେ ଥରେ ସୁଦ୍ଧା ଆମ୍ଭମାନଙ୍କୁ ଦେଖିବାକୁ ଆସି ନାହାନ୍ତି । ବୋଧ ହୁଏ ତାହାଙ୍କ ସହିତ ଏ ଘଟଣା ବିସ୍ମୃତ ଗର୍ଭରେ ବିଲୟ ଲଭିଛି । ମୁଁ ଏକଥା କେବେ ହେଲେ ସିଂହଘୋଷଙ୍କୁ ଜଣାଇ ନାହିଁ । କାରଣ ଉଭୟ ଭ୍ରାତାଙ୍କ ମଧ୍ୟରେ ଚିର ବୈରଭାବ ପ୍ରତିଷ୍ଠିତ ଥିଲା । ଆମ୍ଭେମାନେ ଏଠାରେ ଅସୂର୍ଯ୍ୟଂପଶ୍ୟା ଅବସ୍ଥାରେ ଥିଲେ ମଧ୍ୟ ଏ ଆବାସ ବେଶ୍ ଆମୋଦପ୍ରଦ ହୋଇଛି । ଆମ୍ଭମାନଙ୍କର ଯଥେଷ୍ଟ ଖାଦ୍ୟ ସାମଗ୍ରୀ ଅଛି ଏବଂ ଗୋପନ ଭାବରେ ଯାହା କିଛି ଆବଶ୍ୟକୀୟ ବସ୍ତୁ ପାଇପାରୁଛୁ । ରାଜାରାଣୀ ଶତ୍ରୁ କବଳରୁ ଆତ୍ମରକ୍ଷା କରିବା ପାଇଁ ଏହି ଗୁପ୍ତ ପ୍ରାସାଦ ପ୍ରଥମେ ନିର୍ମିତ ହୋଇ ଥିଲେ ମଧ୍ୟ ଏହା ରାଜକୁମାରୀଙ୍କ ପକ୍ଷେ ବନ୍ଦିଶାଳାରେ ପରିଣତ ହୋଇଛି । ସୁତରାଂ ହେ ରାଜକୁମାର, ମୋହର ବିନୀତ ଅନୁରୋଧ, ତୁମେ କୌଣସି ମତେ ତୁମର ଏ ଭଗିନୀକୁ ଏଠାରୁ ଉଦ୍ଧାର କରି କର୍ମମୟ ମୁକ୍ତ ସଂସାରକୁ ନେଇ ଯାଅନ୍ତୁ ।

ମଣିକର୍ଣ୍ଣିକାଙ୍କର ଉଦ୍ଧାର ପାଇଁ ମୋତେ କୌଣସି ଅତିରିକ୍ତ ଶ୍ରମ ସ୍ୱୀକାର କରିବାର ଆବଶ୍ୟକତା ନଥିଲା । ମୁଁ ପ୍ରୌଢ଼ାକୁ ନିକଟକୁ ଡାକି ମୋହର ସେଠାକୁ ଆଗମନର ଉଦ୍ଦେଶ୍ୟ ବର୍ଣ୍ଣନା କଲି । ସେ ମଧ୍ୟ ମୋତେ ସକଳ ପ୍ରକାର ସାହାଯ୍ୟ ଦେବା-ପାଇଁ ପ୍ରତିଶ୍ରୁତ ଦେଲା । ବାସ୍ତବିକ୍ ତାହା ଯୋଗୁଁ ମୋହର ବହୁମୂଲ୍ୟ ସମୟ ଓ ଶକ୍ତି ରକ୍ଷା ହେଲା । କାରଣ ଏ ସ୍ଥାନରୁ ଯେଉଁ ଗୁପ୍ତପଥ ଠିକ୍ ରାଜାଙ୍କ ଶୟନକକ୍ଷ ମଧ୍ୟକୁ ଯାଇଥିଲା ତାହାର ସମସ୍ତ କୌଶଳ ତାହାକୁ ହିଁ ଅବଗତ ଥିଲା । ତେଣୁ ବୃଦ୍ଧାର ସାହାଯ୍ୟରେ ମୁଁ ଅଳ୍ପକ୍ଷଣ ମଧ୍ୟରେ ରାଜାଙ୍କ ଶୟନକକ୍ଷର

ଗୁପ୍ତଦ୍ୱାର ନିକଟରେ ଆସି ଉପସ୍ଥିତ ହେଲି । ଦ୍ୱାରର ଏକ ରନ୍ଧ୍ରମଧ୍ୟରେ ନିରୀକ୍ଷଣ କରି ଦେଖିଲି,ମୋହର ଶତ୍ରୁ ଦୁଗ୍ଧଫେନ-ନିଭ କୋମଳ ଶଯ୍ୟା ଉପରେ ସୁପ୍ତ ।

ଉପଯୁକ୍ତ କୌଶଳ ପ୍ରୟୋଗପୂର୍ବକ ଏ ଗୁପ୍ତଦ୍ୱାର ଉନ୍ମୁକ୍ତ କରି ମୁଁ କକ୍ଷ ମଧ୍ୟରେ ନୀରବରେ ପ୍ରବେଶକଲି ଏବଂ ତତ୍‌କ୍ଷଣାତ୍ ଏକ ହସ୍ତରେ ରାଜାର ମୁଖ ରୋଧକରି ଦେଇ ଅନ୍ୟ ହସ୍ତରେ ଶଯ୍ୟାର ବସ୍ତ୍ର ସକଳ ମଧ୍ୟରେ ତାହାକୁ ଗୁଡ଼ାଇ ଏପରି ଏକ ପିଣ୍ଡୁଳାରେ ପରିଣତ କରିଦେଲି ଯେପରି କୌଣସି ମତେ ତାହାର ବାକ୍‌ସ୍ଫୂର୍ତ୍ତି ହୋଇ ପାରିବ ନାହିଁ । ତାହାପରେ ଉକ୍ତ ପ୍ରୌଢ଼ା ସ୍ତ୍ରୀର ସାହାଯ୍ୟରେ ବସ୍ତ୍ର ପିଣ୍ଡୁଳାଟିକୁ ଧରି ଗୁପ୍ତ ପଥଦେଇ ପିତାଙ୍କ ପ୍ରାସାଦ ଅଭିମୁଖରେ ଗତିକଲି ।

ଗଳଦ୍‌ଘର୍ମ ଅବସ୍ଥାରେ ମୋହର ଭାର ପିତାଙ୍କ ପଦତଳେ-ରଖି କହିଲି, "ପିତା, ଏହି ସେହି କ୍ରୂର ରାଜା । ବର୍ତ୍ତମାନ ଏହାକୁ ନେଇ କଅଣ କରିବା ଉଚିତ ଆଦେଶ କରନ୍ତୁ ।"

ପିତା ଅତି ସ୍ତମ୍ଭିତ ହୋଇ କହିଲେ, "ଏତେ ଚଞ୍ଚଳ ଏହା କପରି ସମ୍ଭବ ହେଲା ? ମୁଁ ଭାବିଥିଲି ତୁମେମାନେ ଅର୍ଦ୍ଧ ପଥ ପୁଦ୍ଧା ଅଗ୍ରସର ହୋଇ ପାରି ନଥିବ ।"

ମୁଁ ଉତ୍ତର କଲି, "ଏହା ସହିତ ଅଜ ଏକ ବିଚିତ୍ର ଘଟଣା ସମ୍ପୃକ୍ତ, ଯାହାଫଳରେ ଏ ଅସମ୍ଭବ ସମ୍ଭବ ହୋଇ ପାରିଛି । ଅଗ୍ରେନ୍ତୁ ପ୍ରଥମେ ତାହା ଆପଣଙ୍କୁ ଦେଖାଇ ଦେବି ।"

ପିତାଙ୍କ ସହ ସୁଡ଼ଙ୍ଗ ପଥଦେଇ ମୁଁ ଭୂଗର୍ଭ ପ୍ରାସାଦରେ ପ୍ରବେଶ କଲି । ସେ ମଧ୍ୟ ଏ ପ୍ରାସାଦ କନ୍ୟା ମଣିକର୍ଣ୍ଣିକାଙ୍କ ସମ୍ମୁଖେ

ସମ୍ପୂର୍ଣ୍ଣ ଅଜ୍ଞ ଥିଲେ । ମଣିକର୍ଣ୍ଣିକା ମୋହର ପିତାଙ୍କୁ ଦେଖି ଓ ପରିଚୟ ପାଇ ଲଜ୍ଜାବନମ୍ର ବଦନରେ ତାହାଙ୍କର ପଦ ବନ୍ଦନା କଲେ । ପିତା କୁମାରୀଙ୍କର ମସ୍ତକରେ ଆଶୀର୍ବାଦ ବର୍ଷଣ କରି ମୋତେ କହିଲେ, "ଏ ଘଟଣା ପରେ ଆମେ ଆମର ଯୋଜନାର ପରିବର୍ତ୍ତନ କରିବାକୁ ହେବ । ତୁମେ ମଣିକର୍ଣ୍ଣିକାର ପାଣିଗ୍ରହଣ କରି ଏ ରାଜ୍ୟର ଶାସନ ଭାର ଗ୍ରହଣ କରିବା ଉଚିତ । ମୁଁ ତୁମର ମନ୍ତ୍ରୀ ସ୍ୱରୂପ ତୁମକୁ ସୁଶାସନ ଶିକ୍ଷାଦେଇ ଉପଯୁକ୍ତ ଶାସକରେ ପରିଣତ କରିବି । ଏହାହିଁ ହେବା ଯୁକ୍ତିଯୁକ୍ତ ।"

ମୁଁ ଉତ୍ତର କଲି, "ପିତା ପ୍ରଥମ ପ୍ରସ୍ତାବରେ ମୁଁ ସ୍ୱୀକୃତ, କିନ୍ତୁ ଦ୍ୱିତୀୟଟିରେ ନୁହେଁ । ଆମର ପୂର୍ବପ୍ରସ୍ତାବ ଅନୁଯାୟୀ ମୋର ଅନୁମତି ସହ ଆପଣ ଶାସନ ଦଣ୍ଡ ଗ୍ରହଣ କରନ୍ତୁ ।"

"ମୋହର ଅନୁମତି ହିଁ ଏ ରାଜ୍ୟ ଶାସନ କରିବ—ତୁମର ମାଧ୍ୟମରେ । ମୁଁ ବର୍ତ୍ତମାନ ବୃଦ୍ଧ, ତୁମେ ଯୁବକ, ଶକ୍ତିବନ୍ତ ଓ ସୁଶିକ୍ଷିତ । ତେଣୁ ଏ ଅବସ୍ଥାରେ ପିତାଙ୍କର ଇଚ୍ଛା ପୂରଣ କରି କର୍ତ୍ତବ୍ୟନିଷ୍ଠ ହୁଅ ।"

ଶେଷରେ ପିତାଙ୍କ ଇଚ୍ଛା ହିଁ କାର୍ଯ୍ୟକାରୀ ହେଲା । ମୁଁ ରାଜକୁମାରୀ 'ମଣିକର୍ଣ୍ଣିକାଙ୍କୁ ବିବାହ କଲି ଏବଂ ଚଣ୍ଡସିଂହଙ୍କ ଜ୍ୟେଷ୍ଠ ପୌତ୍ରୀଙ୍କର ପତିଭାବରେ ସିଂହାସନ ଆରୋହଣ କଲି । ସ୍ୱର୍ଗତ ରାଜାଙ୍କର ନିକଟସ୍ଥ ପ୍ରତିନିଧି ଭାବରେ ମଧ୍ୟ ସିଂହାସନ-ପାଇଁ ମୋହର ଦାବୀ ଦ୍ୱିଗୁଣିତ ହୋଇ ମନ୍ତ୍ରୀ ଓ ସାମନ୍ତମାନଙ୍କର ମନୋମୁଗ୍ଧ ହେଲା । ସିଂହଘୋଷ ଅତି ଦୁର୍ବଳ ରାଜାଥିଲେ ଏବଂ ତାହାଙ୍କ ଶାସନ ଫଳରେ ରାଜ୍ୟର ଅବନତି ଘଟିବା ଅବଶ୍ୟ

ହୋଇଥିଲା । ତେଣୁ ତାହାଙ୍କ ରାଜବନ୍ଦୀ ଭାବରେ ରଖିବାରେ ପ୍ରଜା ସାଧାରଣଙ୍କର କୌଣସି ଆପତ୍ତି ହେଲନାହିଁ ।

ଏ ଘଟନାର କିଛୁଦିନ ପରେ ମୁଁ ସିଂହବର୍ମାଙ୍କୁ ସାହାଯ୍ୟ କରିବା ନିମିତ୍ତ ଏଠାକୁ ଆସି ଆପଣଙ୍କୁ ଏବଂ ଅନ୍ୟ ବନ୍ଧୁମାନଙ୍କୁ ଦେଖିବାକୁ ପାଇଲି । ଏହାହିଁ ମୋହର ପରମ ଆନନ୍ଦର କଥା ।

---

( ୧୮ )

# ବ୍ରମତଙ୍କ କଥା

ଅର୍ଥପାଳଙ୍କ କଥା ଶ୍ରବଣ କରିସାରି ରାଜବାହନ କହିଲେ, "ହାୟ ରାଜକୁମାରୀ ମଣିକର୍ଣ୍ଣିକାଙ୍କ କ ଅବସାଦମୟ ଶୈଶବ ଜୀବନ କଟାଇବାକୁ ହୋଇଥିଲା ! ପ୍ରକୃତିଦତ୍ତ ମନୋରମ ସୌର ରଶ୍ମି ସମ୍ଭୋଗ, ହରିତାୟମାନ ବୃକ୍ଷଲତା ସକଳର ନୟନାଭିରାମ ଶୋଭା ଦର୍ଶନ ଓ କର୍ଣ୍ଣରସାୟନ ବିହଙ୍ଗକାକଳୀ ଶ୍ରବଣରୁ ଅଜାନ୍ତ ବଞ୍ଚିତ ହୋଇ ରହିବା କ ଅଭିପ୍ରେ ଜୀବନ ତାହା ଅନୁଭବୀ ମାନ ପ୍ରକାଶ କରିପାରେ । ଯାହା ହେଉ ଆନନ୍ଦର କଥା, ସେ ଅଜ ଏ ସମସ୍ତ ନୈସର୍ଗିକ ସୁଖର ଅଧିକାରୀ ହୋଇ ପାରିଛନ୍ତି ।"ଅପହାରବର୍ମା କହିଲେ, "ଅର୍ଥପାଳଙ୍କର ସୌଭାଗ୍ୟ ଯେ ଉପଯୁକ୍ତ ସମୟରେ ସେ ଅପାତତଃ ବିଷଯୁକ୍ତ ସର୍ପଟିକୁ ଦେଖିବାକୁ ପାଇଥିଲେ । ଏହା ମଙ୍ଗଳମୟଙ୍କ ବିଶେଷ ଅନୁକମ୍ପା ବୋଲିବାକୁ ହେବ । ନଚେତ୍ ପିତାଙ୍କର ଜୀବନରକ୍ଷା ତାହାଙ୍କ ପକ୍ଷେ ସମ୍ଭବ ହୋଇନଥାନ୍ତା ।"

"ବାସ୍ତବିକ୍" ଯୁବରାଜ କହିଲେ, "ଅମ୍ଭେମାନେ ପ୍ରତ୍ୟେକ ଏହିପରି ଭାବରେ ବିଧାତାଙ୍କ ଅନୁଗ୍ରହରୁ ନାନା ବିପଦଆପଦ ଅତିକ୍ରମ କରି ଏଠାରେ ସମବେତ ହୋଇ ପାରିଅଛୁଁ । ଅଚ୍ଛା, ବର୍ତ୍ତମାନ ଆସ ବନ୍ଧୁ ବ୍ରମତଙ୍କ କଥା ଶ୍ରବଣ କରିବା ।"

ଭ୍ରମତି କହିଲେ, "ବନ୍ଧୁବର୍ଗ, ମୁଁ ରାଜକୁମାରଙ୍କର ଅନ୍ୱେଷଣରେ ବାହାରି ବିନ୍ଧ୍ୟାଚଳର ଉପତ୍ୟକା ସକଳ ଭ୍ରମଣ କରିବାକୁ ଲାଗିଲି । ଏହିପରି ଭାବରେ ଅଗ୍ରସର ହୋଇ ହୋଇ ଘନ ଅରଣ୍ୟ ମଧ୍ୟରେ ପ୍ରବେଶ କରି ଏକ ବଟବୃକ୍ଷତଳେ ଆଶ୍ରୟ ନେଲି । କ୍ରମେ ତନ୍ଦ୍ରା ଆକର୍ଷଣ କରନ୍ତେ ନିଦ୍ରାବସ୍ଥାରେ ମୋହର ନିରାପଦତା ଓ ସୁସୁପ୍ତି ନିମିତ୍ତ ବନଦେବୀଙ୍କୁ ପ୍ରାର୍ଥନା କରି ସେହିଠାରେ ଶୟନ କଲି ।

ଅନନ୍ତର କଥା, ମୁଁ ସେଠାରେ ବେଶ୍ ଶାନ୍ତିରେ ଶୟନ କରି ଏକ ବିଚିତ୍ର ସ୍ୱପ୍ନ ଦେଖିଲି । ସ୍ୱପ୍ନରେ ମୋତେ ବୋଧ ହେଲା ମୁଁ ଯେପରିକି ଶ୍ରାବସ୍ତି ନଗରୀକୁ ଚାଲି ଯାଇଛି । ସେଠାରେ ଶିବରାତ୍ରି ଉପଲକ୍ଷେ ଏକ ବିରାଟ ଉତ୍ସବ କରୁଛି ସମସ୍ତ ପୂର୍ବରୁ ସାଙ୍ଗ ହୋଇଥିବାରୁ କର୍ମକ୍ଳାନ୍ତ ସମସ୍ତ ନଗର ବାସୀ ସୁସୁପ୍ତ ଥିଲେ । ସାରା ନଗର ଯେପରି କି ଏକ ମୃତ ନଗରୀରେ ପରିଣତ ହୋଇଥିଲା । ସଙ୍ଗେ ସଙ୍ଗେ ମୋତେ ବୋଧ ହେଲା ମୁଁ ଯେପରି କି ଦୃଷ୍ଟିର ଅଗୋଚର ଏକ ବାୟୁବୀୟ ଜୀବରେ ପରିଣତ ହୋଇ ନିରୁଦ୍ୱେଗ ଭାବରେ ନଗରର ଇତଃସ୍ତତଃ ଭ୍ରମଣ କରୁଅଛି । ସ୍ୱପ୍ନରେ ଅତି ଅସମ୍ଭବ କଥା ମଧ୍ୟ ସତ୍ୟ ପ୍ରତୀତ ହୁଏ । ସୁତରାଂ କୌଣସି କଥା ମୋତେ ବିଚିତ୍ର ବୋଧ ହେଲା ନାହିଁ । କିଛିକ୍ଷଣପରେ ମୁଁ ଜାଣି ପାରିଲି ଯେ ରାଜପ୍ରାସାଦ ମଧ୍ୟରେ ମୁଁ ଅବାଧ ଗତି କରୁଛି । ରାଜଦରବାର ଓ ପଥପାର୍ଶ୍ୱର ସୂକ୍ଷ୍ମ କାରୁକାର୍ଯ୍ୟମାନ ଦେଖି ମୁଁ ମନେ ମନେ ପ୍ରଶଂସା କରିବାକୁ ଲାଗିଲି । ପ୍ରାସାଦର ପ୍ରହରୀମାନଙ୍କୁ ଦେଖି ମଧ୍ୟ ମୋ ମନରେ କୌଣସି ଭୀତି ସଞ୍ଚାର ହେଲନାହିଁ; କାରଣ ମୁଁ ଜାଣେ ଯେ ମୁଁ ସେମାନଙ୍କ ଦୃଷ୍ଟିର ଅଗୋଚର । ଏହିପରି ଭାବରେ ମୁଁ ଅନ୍ତଃପୁରରେ

ପ୍ରବେଶକଲି ରାଣୀଙ୍କ ଶୟନାଗାରର ନିକଟବର୍ତ୍ତୀ ହେଲି । ସେଠାରେ ଦେଖିଲି ଏକ ସୁସଜ୍ଜିତ କକ୍ଷମଧ୍ୟରେ ଗଜଦନ୍ତ ପଲଙ୍କ ଉପରେ ଜଣେ ଅତି ରୂପସୀ ତରୁଣୀ ଶାୟିତା । ଭାବିଲି ସେ ନିଶ୍ଚୟ ରାଜକୁମାରୀ ହେବେ । ମୁଁ ସେତେବେଳେ ମନେ ମନେ ପ୍ରତିଜ୍ଞା କଲି ଯେ, ମୁଁ ନିଃସ୍ୱ ଯାଯାବର ହେଲେ ମଧ୍ୟ ଏ ସୁକୁମାରୀଙ୍କର ମନୋହରଣ କରି ନିଶ୍ଚୟ ମୋହର ହୃଦୟେଶ୍ୱରୀ କରିବି । ଏହା ଠିକ୍ କରି ମୁଁ ତାହାଙ୍କର ନିକଟବର୍ତ୍ତୀ ହୋଇ କମଳକୋମଳ ଓଷ୍ଠାଧରରେ ଚୁମ୍ବନ ଦେବାକୁ ଗଲାବେଳେ ହଠାତ୍ ମୋହର ନିଦ୍ରା ଭଙ୍ଗ ହେଲା ।

ଏ ସମସ୍ତ କେବଳ ସ୍ୱପ୍ନ—ନିପଟ ଅବାସ୍ତବ ସ୍ୱପ୍ନ । କିନ୍ତୁ ମୁଁ ବାସ୍ତବ ଅବସ୍ଥାକୁ ଫେରି ଆସି ମଧ୍ୟ ତାହିଁକି କେଜାଣି ମୋହର ସ୍ୱପ୍ନର ପ୍ରତିଜ୍ଞାକୁ ସ୍ମରଣକରି ତାହାକୁ ସଫଳ କରିବା ପାଇଁ କୃତନିଶ୍ଚୟ ହେଲି ଏବଂ ସେହି ଉଦ୍ଦେଶ୍ୟରେ ଶ୍ରାବସ୍ତି ନଗରୀ ଅଭିମୁଖରେ ଯାତ୍ରା କଲି ।

ମୋ ଲକ୍ଷ୍ୟ ସ୍ଥଳର ଅଳ୍ପଦୂରରେ ଗୋଟିଏ ଗ୍ରାମ ମଧ୍ୟରେ କୁକ୍କୁଟ ଯୁଦ୍ଧର ଆୟୋଜନ ହେଉଥିଲା । ମୁଁ ସେଠାରେ ଦର୍ଶକ-ମାନଙ୍କ ସହିତ ଯୋଗ ଦେଲି । କିନ୍ତୁ ମୁଁ କୁକ୍କୁଟ ଦୁଇଟିକୁ ଦେଖି ହାସ୍ୟ ସମ୍ବରଣ ନ କରି ରହି ପାରିଲି ନାହିଁ । କାରଣ ସେଥି ମଧ୍ୟରୁ ଗୋଟାଏ ଅତି ଉଚ୍ଚ ଏବଂ ହୃଷ୍ଟପୁଷ୍ଟ, ଅପରଟି ଅତି କ୍ଷୁଦ୍ର ଓ ଦୁର୍ବଳ । କୌଣସିଠାରେ ଏପରି ଯୁଦ୍ଧ ସମ୍ଭବ ହୁଏ ନାହିଁ—ତେଣୁ ଏପରି ବିବାଦ ଦେଖିବା ପାଇଁ ଅପେକ୍ଷା କରିବା ସମୟର ଅପବ୍ୟୟ ଛଡ଼ା ଆଉ କିଛି ନୁହେ । ମୁଁ ଯାହା ଭାବିଲି ତାହା ବୁଝାଇ କରି କହି ଦେବାକୁ ଚେଷ୍ଟା କଲାବେଳେ ହଠାତ୍ ମୋହର ନିକଟବର୍ତ୍ତୀ ଜଣେ ବ୍ରାହ୍ମଣ ମୋତେ ଟାଣି ଆଣି ତାହାଙ୍କର

ବିଜୟରେ ବାଧା ନଦେଇ ନୀରବ ରହିବା ନିମିତ୍ତ ଅନୁରୋଧ କଲେ । ସେ କହିଲେ, ସେ ଜାଣନ୍ତି, ତାହାଙ୍କ କୁକ୍କୁଟ ନିଶ୍ଚୟ ଜୟଲାଭ କରିବ । କିନ୍ତୁ ତାହାଙ୍କର ପ୍ରତିଦ୍ୱନ୍ଦୀ ତାହାଙ୍କପ୍ରତି ଓ ତାହାଙ୍କ କୁକ୍କୁଟ ପ୍ରତି ତାଚ୍ଛଲ୍ୟ ପ୍ରକାଶ କରି କହୁଛି ଯେ ଅନ୍ୟ କୌଣସି ଯେତେ ଦୁର୍ବଳ କୁକ୍କୁଟ ହେଉନା କାହିଁକି ବ୍ରାହ୍ମଣର କୁକ୍କୁଟକୁ ନିଶ୍ଚୟ ପରାସ୍ତ କରିବ । ତେଣୁ ସେ ତାହାଙ୍କ ପ୍ରତିଦ୍ୱନ୍ଦୀକୁ ଏକ ଶିକ୍ଷା ଦେବାକୁ ବସିଛନ୍ତି । ଦୁର୍ଭାଗ୍ୟ ବଶତଃ ଅଦ୍ୟାବଧି କୌଣସି ଯୁଦ୍ଧରେ ସେ ବିଜୟ ଲାଭ କରି ନଥିଲେ ମଧ୍ୟ ଏହି ଥରକ ଏହା ସୁନିଶ୍ଚିତ । ଏହି କାରଣରୁ ମୁଁ ନୀରବ ହେବାପାଇଁ ସେ ମୋତେ ଅନୁନୟ କଲେ ।

ମୁଁ ନୀରବ ରହିଲି ଏବଂ ନିକଟରେ ଉପବେଶନ କରି ବ୍ରାହ୍ମଣଙ୍କଠାରୁ ଖଣ୍ଡିଏ ତାମ୍ବୁଳ ଗ୍ରହଣ କରି ଚର୍ବଣ କରିବାକୁ ଲାଗିଲି । ଯୁଦ୍ଧ ଅତିଶୀଘ୍ର ସମାପ୍ତ ହେଲା ଓ ବ୍ରାହ୍ମଣଙ୍କର କୁକ୍କୁଟ ବିଜୟୀ ବୋଲି ଘୋଷିତ ହେଲା । ବ୍ରାହ୍ମଣ ଗର୍ବୋତ୍ଫୁଲ୍ଲ ପ୍ରାଣରେ କୁକ୍କୁଟ ସହ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତିନ କଲାବେଳେ ମୋତେ ତାହାଙ୍କର ଅନୁସରଣ କରିବାକୁ ନିର୍ଦ୍ଦେଶ ଦେଲେ । କିଛି ଦିନ ଲାଗି ମୁଁ ତାହାଙ୍କ ଦ୍ୱାରା ଅତି ଆଦରରେ ଅଭ୍ୟର୍ଥିତ ହେଲି । ବ୍ରାହ୍ମଣ ମୋଠାରେ ବିଶେଷ ପ୍ରୀତ ହୋଇ ମୋହର ସବିଶେଷ ପରିଚୟ ପାଇବାକୁ ଇଚ୍ଛା ପ୍ରକାଶ କଲେ । ମୁଁ ପରିଚୟ ସହିତ ଅବଶ୍ୟ ମୋହର ସ୍ୱପ୍ନକଥା ତାହାଙ୍କୁ କହିଲି ନାହିଁ । ମାତ୍ର ଯେତେବେଳେ ବିଦାୟ ନେବାକୁ ବାହାରିଲି ସେତେବେଳେ ମୁଁ ତାହାଙ୍କୁ ଘନିଷ୍ଠ ବନ୍ଧୁ ଭାବରେ ସ୍ମରଣ କରିବା ନିମିତ୍ତ ଓ ଆବଶ୍ୟକ ସମୟରେ ତାହାଙ୍କର ସାହଚର୍ଯ୍ୟ ଲୋଡ଼ିବା ନିମିତ୍ତ ସେ ମୋତେ

ଅନୁରୋଧ କଲେ । ମୁଁ ତାହାଙ୍କୁ ଗୋଟିଏ ରତ୍ନ ମୁଦ୍ରିକା ବନ୍ଧୁତ୍ୱର ଚିହ୍ନ ସ୍ୱରୂପ ଦେଇ ସେ ସ୍ଥାନ ପରିତ୍ୟାଗ କଲି ।

ମୁଁ ଶ୍ରାବସ୍ତି ନଗରରେ ପଦାର୍ପଣ କଲାବେଳକୁ ମଧ୍ୟାହ୍ନ ରବିର କିରଣ ଅତି ପ୍ରଖର ହୋଇ ଉଠିଥିଲା । ସୁତରାଂ ଗୋଟିଏ ନାଗରିକ ଉଦ୍ୟାନ ମଧ୍ୟରେ ପ୍ରବେଶ କରି ବିଶ୍ରାମ ନେଇ ନେଇ ନିଦ୍ରାଭିଭୂତ ହୋଇ ପଡ଼ିଲି ।

କିଛି ସମୟ ପରେ ମୋହର ନିଦ୍ରାଭଙ୍ଗ ହୁଅନ୍ତେ ମୁଁ ଦେଖିଲି ଜଣେ ଯୁବକ ନିକଟରେ ଉପବେଶନ କରି ମୋତେ ଏକାଗ୍ର ନେତ୍ରରେ ଲକ୍ଷ କରୁଅଛି । ମୁଁ ତାହାଙ୍କୁ ଏପରି ଲକ୍ଷ କରିବାର ଉଦ୍ଦେଶ୍ୟ ପଚାରିବାରୁ ସେ କହିଲେ, "ଆପଣ ଅପରିଚିତ, ସୁତରାଂ ମୋତେ କ୍ଷମା କରନ୍ତୁ । ଆପଣଙ୍କଠାରେ ମୁଁ ଏକ ଅଭିନବ ସାଦୃଶ୍ୟ ଲକ୍ଷ କରି ପାରିଅଛି । କିଛିଦିନ ହେଲା ମୋହର ଭଗିନୀ ଗୋଟିଏ ବ୍ୟକ୍ତିର ପ୍ରତିକୃତି ଆଣିଅଛି । ତାହାର ମୁଖଛବି ସହିତ ଆପଣଙ୍କର ସାଦୃଶ୍ୟ ଅତି ଅଧିକ । ଆପଣ ମୋ ସହିତ ଆସି ପ୍ରତିକୃତିଟି ଦେଖି ଯାଇ ପାରନ୍ତି । ଆପଣଙ୍କୁ ଦେଖି ମୋହର ଭଗିନୀ ନିଶ୍ଚୟ ଆନନ୍ଦିତା ହେବ ।"

ମୋହର ଅନ୍ୟ କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନଥିବାରୁ ଯୁବକଙ୍କ ସହିତ ମୁଁ ତାହାଙ୍କର ବାସଭବନକୁ ଗମନ କଲି । ତାହା ଏକ ରାଜପ୍ରାସାଦ ତୁଲ୍ୟ ଅଟ୍ଟାଳିକା । ମୁଁ ସମ୍ପୂର୍ଣ୍ଣ ଅପରିଚିତ ହେଲେ ମଧ୍ୟ ସେ ମୋତେ ଅତିଥି ଭାବରେ ସମ୍ବର୍ଦ୍ଧନା କଲେ । ସୁଖକର ସ୍ନାନ ଓ ରୁଚିକର ଆହାର ପରେ ସେ ମୋତେ ତାହାଙ୍କର ଭଗିନୀଙ୍କ କକ୍ଷ ମଧ୍ୟକୁ ନେଇଗଲେ ।

ରବନ୍ଧୁଙ୍କର ଭଗିନୀ ଯୁବତୀ । ସେତେବେଳେ ସେ ଏକ ପଟ୍ଟବସ୍ତ୍ର ଉପରେ ପୁଷ୍ପଚିତ୍ର ରଚନା କରୁଥିଲେ । ଜାଣିପାରିଲି ସେତେବେଳ ଯାଏଁ ଭାଇ ଭଉଣୀଙ୍କ ମଧ୍ୟରେ ମୋ ସମ୍ବନ୍ଧେ କୌଣସି କଥୋପକଥନ ହୋଇ ନଥିଲା—କାରଣ ଯୁବତୀ ମୋତେ ଦେଖିବା ମାତ୍ରେ ଅସନ ତ୍ୟାଗକରି ଠିକ୍ ତାହାଙ୍କ ଭାଇଙ୍କ ଭଳି ମୋ ଉପରେ ସବିସ୍ମୟ ଦୃଷ୍ଟିପାତ କଲେ ଏବଂ ଭାଇ ମୋ ଅଡ଼କୁ ଅଙ୍ଗୁଳି ଦେଖାଇ ଭଉଣୀଙ୍କୁ କହିଲେ, "ଭଉଣୀ, ବଡ଼ ଅଶ୍ଚର୍ଯ୍ୟର କଥା ଯେ ତୁମେ ରାଜପ୍ରାସାଦରୁ ଅଣିଥିବା ଛବି ଭଳି ଅବିକଳ ଏ ଭଦ୍ର ଲୋକଙ୍କୁ ମୁଁ ଅକସ୍ମାତ୍ ଦେଖି ପାଇଛି । ଏହାଙ୍କଠାରୁ ନିକଟତର ସାମଞ୍ଜସ୍ୟ ଅଉ ସମ୍ଭବ ହୋଇ ପାରେ କି ?" "ହଁ" ଭଉଣୀ ଉତ୍ତର କଲେ, "ବାସ୍ତବିକ୍ ଅସାଧାରଣ ସାମଞ୍ଜସ୍ୟ । ମୁଁ ଏ ସମ୍ବାଦ ରାଜକୁମାରୀଙ୍କୁ ଅତଶୀଘ୍ର ଜଣାଇବି ।"

ଏହି କଥାବାର୍ତ୍ତାରୁ ମୁଁ ବୁଝି ନେଲି ଯେ ଏ ଯୁବତୀ ରାଜକୁମାରୀଙ୍କର ଜଣେ ଅନ୍ତରଙ୍ଗ ସହଚରୀ ଏବଂ ରାଜକୁମାରୀ ବୋଧହୁଏ ମୋହର ସ୍ୱପ୍ନର ପ୍ରେୟସୀ । ତାହାପରେ ତାହାଙ୍କର ଭାଇ କହିଥିବା ପ୍ରତିକୃତିଟି ଅଣି ଯୁବତୀ ମୋତେ ଦେଖାଇଲେ । ମୁଁ ସେ ଛବିକୁ ଏବଂ ଦର୍ପଣରେ ମୋହର ପ୍ରତିବିମ୍ବକୁ ଦେଖିଲି । ବାସ୍ତବରେ ସାଦୃଶ୍ୟ ଅତି ପ୍ରବଳ । ମୁଁ ଯୁବତୀଙ୍କ ପ୍ରତି ନୀରବ ଦୃକ୍‌ପାତ କରି ଏ ବିଚିତ୍ର ସାମଞ୍ଜସ୍ୟର ରହସ୍ୟ ପ୍ରକାଶ କରିବା ନିମିତ୍ତ ମୂକ ନିବେଦନ କଲି ।

ଦୃଷ୍ଟିର ଭାବ ବୋଧକରି ଯୁବତୀ କହିଲେ, "ହେ ଅପରିଚିତ, ଏ ପ୍ରତିକୃତି ମୋହର ଅନ୍ତରଙ୍ଗ ବାନ୍ଧବୀ ଚିତ୍ରକଳା-କୁଶଳା ରାଜକୁମାରୀ ନବମାଳିକାଙ୍କ ଦ୍ୱାରା ଅଙ୍କିତ । ଶିବୋତ୍ସବର

ପରଦିବସ ରାତି କୌଣସି ଦେବ ବା ମାନବଙ୍କୁ ସ୍ୱପ୍ନରେ ଦେଖି ତାହାଙ୍କର ଛବି ଅଙ୍କନ କରିଛନ୍ତି । ପ୍ରତିକୃତି ଅଙ୍କନ କଲାବେଳେ ସେ ମୋତେ ସ୍ୱପ୍ନ କଥା ବର୍ଣ୍ଣନା କରି କହିଲେ, ଯେ ସେ ନିଜେ ସେତେବେଳେ ଏକ ଅଶ୍ୱାରୋହିଣୀ ଅବସ୍ଥାରେ ଅନ୍ୟ ଏକ ଅଶ୍ୱାରୋହୀ ପୁରୁଷ ଦ୍ୱାରା ଅନୁସୃତା ହୋଇ ନଗର ମଧ୍ୟରେ ଅବାଧରେ ଭ୍ରମଣ କଲାଭଳି ବୋଧ କରୁଥିଲେ । ମାତ୍ର ଅଶ୍ୱାରୋହୀ ପୁରୁଷ ପୃଷ୍ଠଭାଗରେ ସର୍ବଦା ଗତି କରୁଥିଲେ ମଧ୍ୟ ନିଜର ଶୟନ କକ୍ଷକୁ ଫେରି ନଆସିବା ଯାଏଁ ସେ ତାହାଙ୍କର ମୁଖ ଦେଖିବାକୁ ପାଇ ନଥିଲେ । ଶୟନ କକ୍ଷରେ ଜଭ୍ରୂଙ୍କର ସାକ୍ଷାତ୍ ଚନ୍ଦ୍ରାକ୍ଷଣୀ ତାହାଙ୍କର ସ୍ୱପ୍ନ ଭାଙ୍ଗି ଗଲା । ସେହି କ୍ଷଣିକ ଦେଖା ତାହାଙ୍କ ମାନସ ପଟରେ ଏକ ଗଭୀର ରେଖାପାତ କରି ଦେଲା । ତାହାଙ୍କର ଦୃଢ଼ ଧାରଣା ହେଲା ଯେ ସେହି ପୁରୁଷ ତାହାଙ୍କର ଭାବୀ ହୃଦୟେଶ୍ୱର ।"

ଯୁବରାଜ, ଏକଥା ଶ୍ରବଣ କଲାବେଳେ ନିଜର ସ୍ୱପ୍ନ ବିବରଣ ସ୍ମରଣ କରି ମୋହର ମନରେ ଯେଉଁ ଭାବ ଜାତ ହୋଇଥିବ ତାହା ଆପଣ ଅନୁମାନ କରି ପାରୁଥିବେ । ଅଦୃଷ୍ଟ ଯେ ଆମମାନଙ୍କୁ ପରସ୍ପରର ନିକଟତର କରି ଆଣୁଥିଲା, ଏଥିରେ ମୋହର ସନ୍ଦେହ ରହିଲା ନାହିଁ । ସୁତରାଂ ମୁଁ ପରେ ମୋହର ନିଜ ସ୍ୱପ୍ନ ବୃତ୍ତାନ୍ତ ବର୍ଣ୍ଣନା କଲି ଏବଂ ସଙ୍ଗେ ସଙ୍ଗେ ତୁଳିକା ଗ୍ରହଣ କରି ସେହି ଚିତ୍ର ପୃଷ୍ଠରେ ମୋହର ସ୍ୱପ୍ନପ୍ରେୟସୀର ମୁଖମଣ୍ଡଳ ଅଙ୍କନ କଲି । ଏ ଚିତ୍ର ଅତ୍ୟନ୍ତ ତାତ୍କାଳିକ ହେଲେ ମଧ୍ୟ ଭ୍ରାତା ଓ ଭଗିନୀ ଉଭୟେ ଏକମୁଖରେ ସ୍ୱୀକାର କଲେ ଯେ ରାଜକୁମାରୀଙ୍କ ମୁଖ ସହିତ ଛବିର ସାଦୃଶ୍ୟ ଅତି ନିକଟତର ଥିଲା । ନବମାଳିକାଙ୍କୁ ମୁଁ କେବେ ସଶରୀରେ ଦେଖି ନଥିଲି । ତେଣୁ ସେମାନଙ୍କର ତୁମା

ସ୍ୱପ୍ନ ସମ୍ବନ୍ଧେ ପୂର୍ଣ୍ଣ ଆସ୍ଥା ଜନ୍ମିଲା ଏବଂ ରାଜକୁମାରୀଙ୍କର ମୁଁ ଯେ ପ୍ରଜାପତି ନିର୍ଦ୍ଦିଷ୍ଟ ପତି ଏକଥା ବିଶ୍ୱାସ ହେଲା ।

ଏପରି ଦୁଇଟି ସ୍ୱପ୍ନର ମିଳନ ସମ୍ବନ୍ଧେ ହୁଏତ ରାଜକୁମାରୀଙ୍କର ଓ ତାହାଙ୍କ ବନ୍ଧୁମାନଙ୍କର ଏବଂ ସର୍ବୋପରି ମୋହର ପ୍ରତୀତି ଆସିପାରେ; କିନ୍ତୁ ରାଜା ଏ କଥାକୁ କର୍ଣ୍ଣପାତ କରିବେ କାହିଁକି ? ସେମାନଙ୍କଠାରୁ ଶୁଣିଲି ଜାମାତା ମନୋନୟନରେ ରାଜା ବଡ଼ କଠୋର ପନ୍ଥା ଅବଲମ୍ବନ କରିଥିଲେ । କାରଣ ନବମାଳିକାଙ୍କ ଅତୁଳନୀୟ ରୂପଶ୍ରୀର ପ୍ରଶଂସା ନାନା ରାଜ୍ୟରେ ପ୍ରଚରିତ ହୁଅନ୍ତେ ବହୁ ବିକ୍ରମୀ ଯୋଦ୍ଧା ଏବଂ ରାଜପୁରୁଷ ତାହାଙ୍କର ପ୍ରଣୟପ୍ରାର୍ଥୀ ହୋଇ ନିଜ ନିଜକୁ ଛଦ୍ମବେଶୀ ନରପତି ଏବଂ ନବମାଳିକାଙ୍କର ବିଧିନିର୍ଦ୍ଦିଷ୍ଟ ପତି ବୋଲି ପରିଚୟ ଦେଇ ଥିଲେ । କିନ୍ତୁ ରାଜା ସେମାନଙ୍କ ବ୍ୟବହାରରେ ସନ୍ଦିଗ୍ଧ ହୋଇ ସେମାନଙ୍କୁ ଗୋଟି ଗୋଟି କରି ରାଜ୍ୟରୁ ବହିଷ୍କୃତ କରି ଦେଇଥିଲେ ।

ଏହାପରେ ମୁଁ କହିଲି, "ଆପଣମାନେ ମୋହର ସ୍ୱପ୍ନ ସମ୍ବନ୍ଧେ ନିଶ୍ଚୟ ନିଃସନ୍ଦେହ । ସୁତରାଂ କୌଣସି ଗୋପନ ଉପାୟରେ ମୋତେ ମୋହର ସ୍ୱପ୍ନ ପ୍ରେୟସୀଙ୍କୁ ହସ୍ତଗତ କରିବାକୁ ହେବ । ମୋହର ଜଣେ ବନ୍ଧୁ ଆବଶ୍ୟକ ସମୟରେ ମୋତେ ସାହାଯ୍ୟ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି । ବର୍ତ୍ତମାନ ମୁଁ ତାହାଙ୍କର ଉପଦେଶ ଗ୍ରହଣ କରିବା ନିମିତ୍ତ ଯାଉଛି । ମାତ୍ର ଯଦି ଏପରି କୌଣସି ସ୍ଥାନ ବା ସମୟରେ ଆପଣମାନେ ମୋହର ଉପସ୍ଥିତିର କୌଣସି ସୂଚନା ପାଆନ୍ତି, ଯେଉଁ ସ୍ଥାନ ବା ସମୟରେ ମୋହର ପ୍ରବେଶ ନିଷିଦ୍ଧ, ଅବାଞ୍ଛନୀୟ ବା ଅସମ୍ଭବ—ତେବେ କୌଣସି

ପ୍ରକାରେ ବିସ୍ମିତ ହେବେ ନାହିଁ । ଏହାଦ୍ୱାରା ମୁଁ କାହାର କୌଣସି କ୍ଷତ କରିବ ନାହିଁ ବା ଅନ୍ୟାୟ କାର୍ଯ୍ୟ କରିବ ନାହିଁ । ମୋହର ବିଶ୍ୱାସ ଆପଣମାନେ ମୋ ପ୍ରତି ବିରୁଦ୍ଧାଚରଣ କରିବେ ନାହିଁ । ରାଜା ନିଜେ ପ୍ରକାଶ୍ୟ ଭାବେ ମୋତେ ତାହାଙ୍କର ଜାମାତା ରୂପେ ଗ୍ରହଣ କରିବେ । ଏଥିଦ୍ୱାରା ମୁଁ ମୋହର ବୁଦ୍ଧିମତ୍ତାର ପରିଚୟ ଦେବି । ଅଳ୍ପ କେତେକ ମାସ ମଧ୍ୟରେ ମୁଁ ଯଦି ଏହା ସାଧନ କରି ନପାରେ ତେବେ ମୃତ୍ୟୁ ବରଣ କରିବି ।"

ସେମାନେ ମୋହର ପ୍ରସ୍ତାବ ଶୁଣି ବିଶେଷ ଆନନ୍ଦିତ ହେଲେ ଓ ପ୍ରତିଜ୍ଞା କଲେ ଯେ ସେମାନେ କୌଣସି ସମୟରେ ମୋତେ କୌଣସି ଅନାକାଙ୍କ୍ଷିତ ସ୍ଥାନରେ ଦେଖିବାକୁ ପାଇଲେ ତାହା ପ୍ରକାଶ କରିବେ ନାହିଁ ଏବଂ ଅମ୍ଭମାନଙ୍କର ବର୍ତ୍ତମାନର ସାକ୍ଷାତକୁ ମଧ୍ୟ ଗୋପନ ରଖିବେ ।

ତାହାପରେ ମୁଁ ସେଠାରୁ ବାହାରି ମୋହର ବ୍ରାହ୍ମଣ ବନ୍ଧୁଙ୍କ ନିକଟକୁ ଫେରି ଆସିଲି । ତାହାଙ୍କ ସମ୍ମୁଖରେ ଏ ସମସ୍ତ ବୃତ୍ତାନ୍ତ ପ୍ରକାଶ କରନ୍ତେ ସେ କିଛି ସମୟ ଚିନ୍ତାକରି କହିଲେ, "ତାହା ହେଲେ, କିଛି ଦିନ ପାଇଁ ତୁମେ ମୋହର କନ୍ୟା ହୋଇ ପାରିବ ?"

"ତୁମର କନ୍ୟା !" ମୁଁ ବିସ୍ମିତ ହୋଇ ପଚାରିଲି, "ତାହା ମୋତେ କିପରି ସାହାଯ୍ୟ କରିବ ?" "ଧୈର୍ଯ୍ୟଧର ଏବଂ ଦେଖ !" ଏତିକି ମାତ୍ର କହି ବନ୍ଧୁ ମୃଦୁହାସ୍ୟ କରିବାକୁ ଲାଗିଲେ ।

ଏହାପରେ ନାରୀର ଛଦ୍ମବେଶରେ କିପରି ଗତି କରିବାକୁ ହେବ, ବାକ୍ୟାଳାପ କରିବାକୁ ହେବ, କେଶବିନ୍ୟାସ କରିବାକୁ ହେବ ଏହିପରି ଅସଂଖ୍ୟ କଥା ମୋତେ ଶିକ୍ଷା କରିବାକୁ ହେଲା ।

ଭାଗ୍ୟବଶତଃ ମୁଁ ନାତିଦୀର୍ଘ ଥିଲି ଏବଂ ମୋହର ହସ୍ତପଦ ସ୍ତ୍ରୀ-ମାନଙ୍କ ଭଳି କ୍ଷୁଦ୍ର ଏବଂ କୋମଳ ଥିଲା । ସୁତରାଂ ମୁଁ ଏକ ଅତି ଚମତ୍କାର ଯୁବତୀରେ ପରିଣତ ହୋଇ ଗଲି ।

ଯେତେବେଳେ ବ୍ରାହ୍ମଣ ବିଶ୍ୱାସ କଲେ ଯେ ମୋହର ଗତି ଓ ରୀତି ଅବିକଳ ନାରୀମାନଙ୍କ ଭଳି ହୋଇ ପାରୁଛି ସେତେବେଳେ ସେ ତାହାଙ୍କ ଯୋଜନାର ଏକ ଅଂଶ ମୋ ସମ୍ମୁଖରେ ପ୍ରକାଶ କଲେ । ସଂକ୍ଷେପରେ ସେ କହିଲେ ଯେ ସେ ମୋତେ ତାହାଙ୍କର କନ୍ୟାରୂପରେ ରାଜାଙ୍କ ତତ୍ତ୍ୱାବଧାନରେ ରଖି ମୋ ନିମିତ୍ତ ପ୍ରସ୍ତାବିତ ଓ ପରେ ନିରୁଦ୍ଦିଷ୍ଟ ହୋଇଥିବା ପତିଙ୍କ ଅନୁସନ୍ଧାନରେ ତୀର୍ଥଯାତ୍ରା କରିବେ । ଅସଲ୍ ଶିବରାତ୍ରି ଉତ୍ସବ ଦିନ ମୁଁ ଗୋପନରେ ଚାଲିଯାଇ ସେ ଯେଉଁ ସ୍ଥାନରେ ସୂଚନା ଦେଇଥିବେ ସେଠାରେ ସନ୍ତରଣ ଦ୍ୱାରା ନଦୀ ଅତିକ୍ରମ କରିଯିବି । ସେହି ସ୍ଥାନରେ ସେ ମୋହର ନିଜର ପରିଚ୍ଛଦ ସହ ଅପେକ୍ଷା କରିଥିବେ । ଉଚିତ ସମୟରେ ଅମ୍ଭେମାନେ ପ୍ରାସାଦକୁ ଆସି ଶୁଣିବୁ ଏବଂ ଦେଖିବୁ ..............କଅଣ ? ବ୍ରାହ୍ମଣ ଜୋର ହାସ୍ୟ କରୁ କରୁ କହିଲେ, "ଧୈର୍ଯ୍ୟଧର, ଧୈର୍ଯ୍ୟଧର ।"

ପର ଦିବସ ଅମ୍ଭେମାନେ ଶ୍ରାବସ୍ତି ନଗର ଅଭିମୁଖରେ ଯାତ୍ରା କଲୁଁ । ନଦୀ ନିକଟରେ ପହଞ୍ଚନ୍ତେ ମୁଁ ଯେଉଁ ସ୍ଥାନରୁ ଗୋପନରେ ସନ୍ତରଣ କରିଆସି ଯେଉଁ ସ୍ଥାନରେ ଅପେକ୍ଷା କରିବି ତାହା ଠିକ୍ କରିଗଲି । ତାହା ପରେ ଦୁହେଁ ନଗର ମଧ୍ୟରେ ପ୍ରବେଶ କରି ରାଜପ୍ରାସାଦ ଅଭିମୁଖରେ ଗତି କଲୁଁ । ଅନତି ବିଳମ୍ବେ ଅମ୍ଭମାନଙ୍କୁ ରାଜଦରବାରରେ ରାଜାଙ୍କ ସାକ୍ଷାତ ମିଳିଲା । ମୋହର ଛଳନାକାରୀ ପିତା ରାଜାଙ୍କୁ ଆଶୀର୍ବାଦ ପ୍ରଦାନ କରିସାରି ବିନୀତ

ସ୍ୱରରେ ଜଣାଇଲେ,"ଶ୍ରୀ ସ୍ୱାମୀରେ ନିବେଦନ ଏହିକି, ଏ ବାଳିକା ମୋହର ଏକମାତ୍ର କନ୍ୟା । କେତେକ ବର୍ଷ ହେଲା ଏହାର ମାତା ମୃତ୍ୟୁମୁଖରେ ପତିତ ହେବାରୁ ମୁଁ ଏହାକୁ ଉଭୟ ପିତା ଓ ମାତା ଭାବରେ ଲାଳନପାଳନ କରୁଅଛି । ଏ ମୋହର ନୟନର ପିତୁଳା ଏବଂ ଜୀବନର ଶ୍ରେଷ୍ଠ ସମ୍ପତ୍ତି । କେତେକ ବର୍ଷ ପୂର୍ବେ ମୁଁ ମୋହର ଜଣେ ସଚ୍ଚରିତ୍ର ଶାସ୍ତ୍ରଜ୍ଞ ବନ୍ଧୁଙ୍କ ସହିତ ଏହାର ବିବାହ ଦେବି ବୋଲି ବାଗ୍‌ଦାନ କରିଥିଲି । ତାହାପରେ ସେ ଧାରୀ କୁଟୁମ୍ବ ପ୍ରତିପୋଷଣ ନିମିତ୍ତ ଅର୍ଥୋପାର୍ଜନ କରିବା ଉଦ୍ଦେଶ୍ୟରେ ଉଜ୍ଜୟିନୀ ଯାତ୍ରାକଲେ । ବହୁ ଦିବସ ହେଲା ମୁଁ ତାହାଙ୍କର କୌଣସି ସମ୍ବାଦ ପାଇ ନଥିବାରୁ ହୃଦୟରେ ନାନା ଅଶଙ୍କାର ସଞ୍ଚାର ହେଉଅଛି । ତେଣୁ ମୁଁ ଅନତି ବିଳମ୍ବେ ଉଜ୍ଜୟିନୀ ଗମନ କରି ତାହାଙ୍କର ଅନୁସନ୍ଧାନ କରିବା ଦରକାର । କନ୍ୟାର ବିବାହ ବୟସ ହୋଇ ଯାଇଥିବାରୁ ତାହା ଯଥାଶୀଘ୍ର ସମ୍ପନ୍ନ କରିବାକୁ ହେବ । କିନ୍ତୁ ମୋହର ଏପରି କେହି ବନ୍ଧୁ ଏ ରାଜ୍ୟରେ ନାହିଁ ଯାହା ଉପରେ କନ୍ୟାର ଭାର ଅର୍ପଣ କରି ମୁଁ ବିଦେଶ ଯାତ୍ରା କରିପାରେ । ଶାସ୍ତ୍ର କହେ— ରାଜା ପ୍ରଜା ସାଧାରଣଙ୍କର ପିତା ଓ ରକ୍ଷକ । ସୁତରାଂ ମୋହର ବିନୀତ ଅନୁରୋଧ ଏହିକି, ସ୍ୱାମୀ ମୋହର କନ୍ୟାଟିକୁ ମୁଁ ପ୍ରତ୍ୟାବର୍ତ୍ତନ କରିବା ଯାଏଁ ନିଜ ତତ୍ତ୍ୱାବଧାନରେ ରକ୍ଷା କରନ୍ତୁ ।"

କହିବା ବାହୁଲ୍ୟ ଯେ ରାଜା ଅତି ଆନନ୍ଦର ସହିତ ଏ ପ୍ରସ୍ତାବରେ ସ୍ୱୀକୃତ ହେଲେ ଏବଂ ନିଜର କନ୍ୟାକୁ ଡକାଇ ଅଣି ମୋତେ ତାହାଙ୍କ ହସ୍ତରେ ଅର୍ପଣ କଲେ । ଅନ୍ତଃପୁରର ଏକ ସୁସଜ୍ଜିତ କୋଠରୀ ମୋ ପାଇଁ ନିର୍ଦ୍ଦିଷ୍ଟ କରି ଦିଆଗଲା । ମୁଁ ପରିଚାରିକା ପରିବେଷ୍ଟିତ ହୋଇ ରାଜକୁମାରୀ ସହ ଦିନାତିପାତ

କରିବାକୁ ଲାଗିଲି । କୁମାରୀ ନବମାଳିକା ମୋ ପ୍ରତି ସର୍ବାଧିକ ସଦୟ ବ୍ୟବହାର କରୁଥିଲେ । ଚିତ୍ରାଙ୍କନ ଓ ବୀଣା ବାଦନରେ ସେ ସିଦ୍ଧହସ୍ତା ଥିଲେ । ସେ ମୋତେ ତାହାଙ୍କର ଚିତ୍ର ଗୁଡ଼ିକ ଦେଖାଇବା ଓ ମୋ ନିକଟରେ ବୀଣା ବଜାଇବାରେ ଅଧିକ ଆନନ୍ଦ ଉପଭୋଗ କରୁଥିଲେ । କିନ୍ତୁ ମୁଁ ଏକଥା ସ୍ୱୀକାର କରିବାକୁ ହେବ ଯେ ସର୍ବଦା ଏକାନ୍ତରେ ତାହାଙ୍କ ସହିତ ଆଳାପ କରୁଥିବାରୁ ଆତ୍ମଗୋପନ କରି ରହିବା ନିମିତ୍ତ ମୋତେ ଯଥେଷ୍ଟ ଆତ୍ମ-ସଂଯମ କରିବାକୁ ହୋଇଥିଲା । ଦିନେ ସେ ମୋତେ କହିଲେ ଯେ, ସେ ମୋ ପ୍ରତି ବିଶେଷ ଆସକ୍ତା ହେବାର ପ୍ରଧାନ କାରଣ ମୁଁ ତାହାଙ୍କ ସ୍ୱପ୍ନଦୃଷ୍ଟ ପତିଙ୍କ ଭଗିନୀ ପରି ଦେଖା ଯାଉଥିଲି । ତାହା ପରେ ସେ ତାହାଙ୍କର ସ୍ୱପ୍ନ ବୃତ୍ତାନ୍ତ ପ୍ରକାଶ କରି ନିଜେ ଅଙ୍କନ କରିଥିବା ଭାବୀ ପତିଙ୍କ ଛବି ଦେଖାଇଲେ । ଏ ଛବିର ପୃଷ୍ଠଭାଗରେ ଲିଖିତ ତାହାଙ୍କ ନିଜ ପ୍ରତିକୃତିଟିକୁ ଦେଖାଇ ସେ କହିଲେ ଏହା ତାହାଙ୍କର ଜଣେ ବାନ୍ଧବୀ ଅଙ୍କନ କରିଛନ୍ତି । ଅବଶ୍ୟ ଏହି ସମୟରେ ତାହାଙ୍କର ଉକ୍ତ ବାନ୍ଧବୀ ସେଠାରେ ଉପସ୍ଥିତା ଥିଲେ ଏବଂ ଏକଥା ଶ୍ରବଣ କରି ତାହାଙ୍କ ମୁଖରେ ମୃଦୁ ହାସ୍ୟ ରେଖା ଖେଳିଗଲା; ମାତ୍ର ଅସମ୍ମତି ପ୍ରକାଶ ପାଇଲା ନାହିଁ । ଏତିକି ବେଳେ ମୁଁ ତାହାଙ୍କ ଆଡ଼କୁ ଚକ୍ଷୁ ଫେରାନ୍ତେ ହଠାତ୍ ତାହାଙ୍କ ଦୃଷ୍ଟିରେ ବିସ୍ମୟ ଭାବ ଖେଳିଗଲା । କିନ୍ତୁ ଆନନ୍ଦର କଥା ସେ ତାହାଙ୍କର ପ୍ରତିଜ୍ଞା ରକ୍ଷାକରି ମନୋଭାବ ଗୋପନ କରି ନେଲେ ।

ଶେଷରେ ଶିବରାତ୍ରି ଉପସ୍ଥିତ ହେଲା । ରାଜରାଣୀ ଏବଂ ରାଜପରିବାର ଶିବାଳୟରେ ପୂଜାରାଧନା ପାଇଁ ବାହାରିଲେ । ମୁଁ ରାଜକୁମାରୀଙ୍କ ସହିତ ଗମନ କଲି । ମନ୍ଦିର ପ୍ରବେଶ ପୂର୍ବରୁ

ସମସ୍ତେ ନିକଟବର୍ତ୍ତୀ ନଦୀରେ ସ୍ନାନ କଲେ । ମୁଁ ମଧ୍ୟ ନଦୀ ମଧ୍ୟରେ ପ୍ରବେଶ କଲି; କିନ୍ତୁ ସକଳଙ୍କ ଚକ୍ଷୁର ଅନ୍ତରାଳରେ ଜଳ-ମଧ୍ୟରେ ନିମଜ୍ଜିତ ହୋଇ ନଦୀଗର୍ଭରେ ସନ୍ତରଣ କରି କରି ଅନ୍ୟ ତଟର ନିର୍ଦ୍ଦିଷ୍ଟ ସ୍ଥାନରେ ଉପସ୍ଥିତ ହେଲି । ଜଳଗର୍ଭରେ ସନ୍ତରଣ କରି ଆସିଲା ବେଳେ ମୁଁ ମୋହର ଶାଢ଼ୀକୁ ତ୍ୟାଗ କରିଥିଲି ଏବଂ ତାହା ସ୍ରୋତ ମୁଖରେ ଭାସି ଯାଇଥିଲା ।

ମୋହର ବ୍ରାହ୍ମଣ ବନ୍ଧୁ ଯଥାସ୍ଥାନରେ ଅପେକ୍ଷା କରିଥିଲେ । ସଙ୍ଗେ ସଙ୍ଗେ ମୁଁ ମୋହର ନିଜ ବେଶ ପରିବର୍ତ୍ତନ କଲି ଏବଂ ଉଭୟେ ତାହାଙ୍କ ଗୃହକୁ ପ୍ରତ୍ୟାବର୍ତ୍ତନ କଲୁଁ ।

ଏଣେ ରାଜକୁମାରୀ ଯେତେବେଳେ ଅବଗତ ହେଲେ ଯେ, ମୁଁ ସେମାନଙ୍କ ମଧ୍ୟରେ ନାହିଁ, ସେ ଅନ୍ୟ ରମଣୀମାନଙ୍କ ସହିତ ମୋହର ଅନୁସନ୍ଧାନ କରିବାକୁ ଲାଗିଲେ । ସେମାନେ କ୍ରମେ କିଛି ସମୟପରେ ମୋହର ଭାସମାନ ଶାଢ଼ୀ ଦେଖି ପାରି ଚିତ୍କାର କରି ଉଠିଲେ । ନିଶ୍ଚିତ ଭାବେ ଜଣାଗଲା ଯେ ମୁଁ ଜଳମଗ୍ନ ହୋଇଛି । ଏ ସମ୍ବାଦ ରାଜାଙ୍କ ନିକଟରେ ପହଞ୍ଚନ୍ତେ ସେ ବିଶେଷ ଭାବରେ ଡୋଗପଞ୍ଚ ଜଳ ମଧ୍ୟରୁ ମୋହର ଦେହ ଉଦ୍ଧାର ପାଇଁ ସକଳ ପ୍ରକାର ଯତ୍ନ କଲେ । କିନ୍ତୁ ଶେଷରେ ସକଳ ଚେଷ୍ଟା ନିଷ୍ଫଳ ହେଲା । ମୋହର ଅଭାବରେ ରାଜପରିବାରରେ ଗୋଟାଏ ଶୋକର ଛାୟା ମାଡ଼ିଗଲା ।

କେତେକ ଦିବସପରେ ମୋହର ବ୍ରାହ୍ମଣ ବନ୍ଧୁ ମୋତେ ବହୁମୂଲ୍ୟ ପରିଚ୍ଛଦରେ ରାଜକୁମାର ବେଶରେ ସୁସଜ୍ଜିତ କରି ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ଯଥୋପଯୁକ୍ତ ଆଶୀଷ ପ୍ରଦାନପରେ ବ୍ରାହ୍ମଣ ରାଜାଙ୍କୁ ଉଦ୍ଦେଶ୍ୟ କରି କହିଲେ, "ମହାରାଜ,

ମୋହର ଉତ୍ତରସ୍ତ୍ରିମା ଯାତ୍ରା କାଳରେ ତୁମ୍ଭେ ମୋ କନ୍ୟାର ରକ୍ଷଣଭାର ଗ୍ରହଣ କରିଥିବା ଯୋଗୁଁ ମୁଁ ବିଶେଷ କୃତଜ୍ଞ । ମୋହର ଜାମାତା ମୋହର କନ୍ୟାକୁ ଗ୍ରହଣ କରିବା ନିମିତ୍ତ ପ୍ରତ୍ୟାବର୍ତ୍ତନୋଦ୍ୟତ ହେଲାବେଳେ ମୁଁ ତାହାଙ୍କ ସାକ୍ଷାତ ପାଇଲି । ଏ ସେହି ମୋ ପାର୍ଶ୍ୱରେ ଦଣ୍ଡାୟମାନ । ଏ ଜଣେ ବିଭବ, ପ୍ରତିଭା ଓ ସୁଶ୍ରୀ ସମ୍ପନ୍ନ ବ୍ୟକ୍ତି । ମୁଁ ଏପରି ଜଣେ ଜାମାତା ପାଇଥିବାରୁ ନିଜକୁ ଧନ୍ୟ ମନେ କରୁଅଛି । ବର୍ତ୍ତମାନ ମୋହର କନ୍ୟାକୁ ଆନୟନ କରିବା ନିମିତ୍ତ ତୁମ୍ଭକୁ ଆଦେଶ ପ୍ରଦତ୍ତ ହେଲେ ଆନନ୍ଦିତ ହେବି ।

ବ୍ରାହ୍ମଣର ବାକ୍ୟରେ ରାଜା କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲେ । ତାହାଙ୍କ ମୁଖରୁ ବାକ୍ୟସ୍ଫୂର୍ତ୍ତି ହେଲାନାହିଁ । ସେ କେବଳ ବ୍ରାହ୍ମଣଙ୍କ ମୁଖକୁ ଅବଲୋକନ କରି ରହିବା ଦେଖି ଜଣେ ମନ୍ତ୍ରୀ ଦଣ୍ଡାୟମାନ ହୋଇ କନ୍ୟାର ଶୋଚନୀୟ ମୃତ୍ୟୁ ସମ୍ବାଦ ପ୍ରକାଶ କଲେ ।

କନ୍ୟା ମୃତ ଏକଥା ଶୁଣିବା ମାତ୍ରେ ବ୍ରାହ୍ମଣଙ୍କର ଶୋକ ଅସମ୍ଭାଳ ହୋଇ ଉଠିଲା । କନ୍ୟାର ଗୁଣ ଓ ରୂପ ସ୍ମରଣ କରି ସେ ଏପରି ବିକଳକ୍ରନ୍ଦନ କରିବାକୁ ଲାଗିଲେ ଯେ ଉପସ୍ଥିତ ପ୍ରତ୍ୟେକ ବ୍ୟକ୍ତିର ଚକ୍ଷୁ ଅଶ୍ରୁ ଛଳ ଛଳ ହୋଇ ପଡ଼ିଲା । ତାହା ପରେ ସେ ହଠାତ୍ ଅତି ଦୃଢ଼ ଭାବରେ ଦଣ୍ଡାୟମାନ ହେବା ସଙ୍ଗେ ସଙ୍ଗେ ରାଜାଙ୍କୁ କଠୋର ଅଭିଶାପ ଦେବାକୁ ଉଦ୍ୟତ ହୋଇ କହିଲେ, "ରାଜା, ଏହିକି ତୁମ୍ଭର ପ୍ରତିଜ୍ଞା ପାଳନର ରୀତି ? ତୁମର ଅବହେଳା ଯୋଗୁଁ ମୁଁ ଆଜି ଏ ଯୁବକ ନିକଟରେ ପ୍ରତିଜ୍ଞା ଭଙ୍ଗ କରିବାକୁ ହେବି—ଯାହାକି ମୋ ଜୀବନରେ କଦାପି ଘଟି ନଥିଲା । ମୁଁ ସତ୍ୟ କରୁଛି ପ୍ରାଣ ପାତରେ ସୁଦ୍ଧା ପ୍ରତିଜ୍ଞା ପାଳନ କରିବି । ତୁମେ ହିଁ ମୋହର କନ୍ୟାର ମୃତ୍ୟୁର କାରଣ । ସୁତରାଂ 'ତୁମେ

ମୋହର ପ୍ରତିଜ୍ଞା ରକ୍ଷା କରାଇବାକୁ ହେବ । ମୁଁ ଏହାଙ୍କୁ ଗୋଟିଏ କନ୍ୟା ପ୍ରଦାନ କରିବା ପାଇଁ ବାଗ୍‌ଦାନ କରିଛି ଏବଂ ସେ ତାହା ନିଶ୍ଚୟ ପାଇବେ । ତୁମେ ତାହାଙ୍କୁ ତୁମ ନିଜ କନ୍ୟାକୁ ଅର୍ପଣ କର । ଶାସ୍ତ୍ର ଏହା ସମର୍ଥନ କରେ । ଯଦି ନାସ୍ତିକର ତେବେ ଏହିଠାରେ ହିଁ ମୁଁ ମୋହର ପ୍ରାଣପାତ କରିବି ।”

କ୍ରୂର ବାକ୍ୟବାଣରେ ରାଜା ବିବ୍ରତ ହୋଇ ପଡ଼ି ମୋତେ ଓ ମୋହର ବନ୍ଧୁଙ୍କୁ ପ୍ରାସାଦରୁ ଅନ୍ତର କରାଇ ଦେଲେ । କିନ୍ତୁ ବ୍ରାହ୍ମଣଙ୍କର ଦୃଢ଼ ପ୍ରତିଜ୍ଞା ଦେଖି ତାହାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିବାକୁ ସାହସ କଲେ ନାହିଁ । ଏ ମଧ୍ୟରେ ବ୍ରାହ୍ମଣ ରାଜପ୍ରାସାଦ ସମ୍ମୁଖରେ ଚିତାଗ୍ନି ପ୍ରସ୍ତୁତ କରି ଘୋଷଣା କରିଦେଲେ ଯେ ତାହାଙ୍କର ପ୍ରତିଜ୍ଞା ଭଙ୍ଗ ହେଲେ ସେ ଚିତା ମଧ୍ୟରେ ଦେହ ତ୍ୟାଗ କରିବେ । ଏ ଘଟନା ଦେଖି ମୋହର ହୃତ୍‌କମ୍ପ ଜାତ ହେଲା । କାରଣ ମୋହର ବନ୍ଧୁ କୌତୁକର ଛଳନା କରୁ କରୁ ବାସ୍ତବିକ୍ କ୍ରୋଧାନ୍ଧ ହୋଇ ପଡ଼ିଥିଲେ । ମାତ୍ର ଯାହା ହେଉ ସେ ତୃତୀୟ ଥର ଅଗ୍ନି ପ୍ରଦକ୍ଷିଣ କରି ସାରି ଠିକ୍ ଲମ୍ଫ ଦେବା ନିମିତ୍ତ ଉଦ୍ୟତ ହେଲା ବେଳକୁ ଜଣେ ମନ୍ତ୍ରୀ ଦ୍ରୁତ ଗତିରେ ଆସି ତାହାଙ୍କୁ ବାଧା ଦେଇ ଜଣାଇ ଦେଲେ ଯେ ବ୍ରହ୍ମହତ୍ୟା ଭୟରେ ରାଜା କନ୍ୟା ପ୍ରଦାନ କରିବାକୁ ସ୍ୱୀକୃତ ।

ହେ ଯୁବରାଜ, ଏହିପରି ଭାବରେ ମୁଁ ମୋହର ପ୍ରିୟତମା ନବମାଳିକାଙ୍କୁ ଲଭିଥିଲି । ରାଜଦରବାରରେ ରାଜାଙ୍କ ସହିତ ବ୍ରାହ୍ମଣ ବନ୍ଧୁଙ୍କର କଳହ ସମୟରେ ନବମାଳିକା ପରଦା ମଧ୍ୟରୁ ମୋତେ ବାରମ୍ବାର ଲକ୍ଷ କରୁଥାନ୍ତି ଏବଂ ମୁଁ ଯେ ତାହାଙ୍କର ସ୍ୱପ୍ନଦୃଷ୍ଟ ପତି ଏହି ଧାରଣା ସେହି ସମୟରୁ ହିଁ ତାହାଙ୍କ ମନରେ ବଦ୍ଧମୂଳ

ହୋଇଥିଲା । ତେଣୁ ବ୍ରାହ୍ମଣଙ୍କର ଇଚ୍ଛା ପୂର୍ଣ୍ଣ କରିବା ପାଇଁ ସେ ପିତାଙ୍କ ସହିତ ଯୁଦ୍ଧ କରିଥିଲେ ଏବଂ ଶେଷରେ ତାହାହିଁ ହେଲା ।

ମୋହର ବୁଦ୍ଧି ଓ ବିଚକ୍ଷଣତାରେ ପରିତୃପ୍ତ ହୋଇ ରାଜା କ୍ରମେ ମୋତେ ରାଜ୍ୟ ଶାସନରେ ସହକାରୀ କରି ନେଲେ । ନିକଟ ଭବିଷ୍ୟତରେ ସେ ଅବସର ନେଇ ମୋତେ ସମ୍ପୂର୍ଣ୍ଣ ରାଜ୍ୟଭାର ଅର୍ପଣ କରିବେ । ଇତି ମଧ୍ୟରେ ମୁଁ ସିଂହବର୍ମାଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଏଠାକୁ ଆସି ସୌଭାଗ୍ୟ ବଶତଃ ଆପଣଙ୍କର ଓ ବନ୍ଧୁମାନଙ୍କର ସାକ୍ଷାତ ପାଇଲି ।

---

## ( ୧୯ )

# ମନ୍ତ୍ରଗୁପ୍ତଙ୍କ କଥା

ବ୍ରମତଙ୍କ କଥା ଶେଷରେ ରାଜବାହନ କହିଲେ, "ବିଚିତ୍ର ସ୍ୱପ୍ନ ! ବାସ୍ତବରେ ଏହିପରି ଯଦି ପ୍ରତ୍ୟେକ ସ୍ୱପ୍ନ ସତ୍ୟ ହେଉ-ଥାନ୍ତା, ତେବେ ଅମ୍ଭେମାନେ ସମସ୍ତେ ସମୟରେ ଯେଉଁ ଅଦ୍ଭୁତ ସ୍ୱପ୍ନ ଦେଖୁଁ ତାହା ଫଳରେ ଅତି ଭାଗ୍ୟବାନ୍ ହୋଇ ପାରନ୍ତେ । ଆଚ୍ଛା, ଆମର ବନ୍ଧୁ ମନ୍ତ୍ରଗୁପ୍ତଙ୍କର ଏହାଠାରୁ ବିଚିତ୍ରତର କୌଣସି ସ୍ୱପ୍ନ ବୃତ୍ତାନ୍ତ ଅଛି କି ?"

ମନ୍ତ୍ରଗୁପ୍ତ ସହର୍ଷ ବଦନରେ ଉତ୍ତର ଦେଲେ, "ଯୁବରାଜ, ବାସ୍ତବରେ ଏକ ଚମତ୍କାରପ୍ରଦ ସ୍ୱପ୍ନଦ୍ୱାରା ଆକୃଷ୍ଟ ହୋଇ ମୁଁ ମୋହର ପତ୍ନୀଙ୍କୁ ଲାଭ କଲି । କିନ୍ତୁ ବନ୍ଧୁ ବ୍ରମତଙ୍କ ଗଳ୍ପଭଳି ତାହା ସେତେ ଆମୋଦପ୍ରଦ ନୁହେଁ । ଆପଣ ଶ୍ରବଣ କରିବା ନିମିତ୍ତ ଇଚ୍ଛା କଲେ, ବର୍ଣ୍ଣନା କରିବି ।"

"ନିଶ୍ଚୟ, ନିଶ୍ଚୟ, ମନ୍ତ୍ରଗୁପ୍ତ । ଆମେ ନିଶ୍ଚୟ ଶ୍ରବଣ କରିବୁଁ । ଅବିଳମ୍ବେ ପ୍ରକାଶ କର ।" କୁମାରଗଣ ଉତ୍ସାହିତ ହୋଇ କହିଲେ ।

ମନ୍ତ୍ରଗୁପ୍ତ କହିଲେ, "ଯୁବରାଜ ଓ ବନ୍ଧୁଗଣ, ମୁଁ ମୋହର ଭ୍ରମଣ ମଧ୍ୟରେ କଳିଙ୍ଗ ନଗରୀରେ ଉପସ୍ଥିତ ହେଲି । ସେତେ-ବେଳକୁ ରାତି ଅଧିକ ହୋଇଥିବାରୁ ନଗରୀର ପ୍ରବେଶ ଦ୍ୱାର ବନ୍ଦ ହୋଇ ଯାଇଥିଲା । ସୁତରାଂ ନଗରୀ ପ୍ରାଚୀର ବହିର୍ଭାଗରେ ରାତି ଯାପନ କରିବାକୁ ବାଧ୍ୟ ହେଲି । ମାତ୍ର ହଠାତ୍ ଆକାଶ ମେଘାଚ୍ଛନ୍ନ ହୋଇ ସାମାନ୍ୟ ବୃଷ୍ଟି ହେବାରୁ ଓ ଫଳରେ ଶୈତ୍ୟର ପ୍ରତାପ ବୃଦ୍ଧି ହୁଅନ୍ତେ ମୁଁ କୌଣସି ଆଶ୍ରୟ ଅନୁସନ୍ଧାନରେ ବାହାର ଶେଷରେ ଶ୍ମଶାନ ନିକଟସ୍ଥ ଏକ ନଦୀ ସେତୁଗର୍ଭରେ ପ୍ରବେଶ କଲି । ଏ ସ୍ଥାନ ଆଶ୍ରୟର ସମ୍ପୂର୍ଣ୍ଣ ଅନୁପଯୋଗୀ ହେଲେ ମଧ୍ୟ "ଯାଚକ କଦାପି ନିର୍ବାଚକ ହୋଇ ନପାରେ" ଏହି ସାନ୍ତ୍ୱନା ନେଇ ସେଠାରେ ବସି ରହିଲି ଏବଂ ପଥଶ୍ରାନ୍ତ ଯୋଗୁଁ ବୃଷ୍ଟି ବାଧ୍ୟା ସତ୍ତ୍ୱେ ମୁଁ ତନ୍ଦ୍ରାଭିଭୂତ ହୋଇ ପଡ଼ିଲି ।

ମୁଁ ସ୍ୱପ୍ନ ଦେଖିଲି ଯେ, କୌଣସି ଭୀଷଣ ଚତ୍କାର ଫଳରେ ଯେପରିକି ମୋହର ନିଦ୍ରା ଭଙ୍ଗ ହୋଇଗଲା । ମୁଁ ଦେଖିଲି ଅଳ୍ପ ଦୂରରେ ଦୁଇଟି କଦାକାର ପିଶାଚ ଦଣ୍ଡାୟମାନ । ସେମାନଙ୍କ ମଧ୍ୟରୁ ଜଣେ ଅପରକୁ କହୁଛି, "ଭାଇ, କଙ୍କାଳ-କାପାଳିକ ମୋତେ ମୁଣି ଡାକିଲାଣି । ପୁଣି କି ଦଣ୍ଡ ଦେବ କେଜାଣି ? ଏ ସାରା ସଂସାରରେ କଣ ଏପରି କେହି ବୀରପୁରୁଷ ନାହିଁ ଯେ ଆମକୁ ଏ ପାପୀ କବଳରୁ ରକ୍ଷା କରିପାରେ ?" ବକ୍ତା ପ୍ରତ୍ୟୁତ୍ତରର ଅପେକ୍ଷା ନରଖି ଅଗ୍ରସର ହେଲା ଏବଂ ଅନ୍ୟ ଜଣକ ତାହାର ଅନୁସରଣ କଲା ।

ଏ ବିଚିତ୍ର ଘଟଣାର ମୂଳ ଅନୁସନ୍ଧାନ କରିବା ନିମିତ୍ତ ମୁଁ ମଧ୍ୟ ସେମାନଙ୍କର ପଶ୍ଚାଦ୍‌ଗାମୀ ହେଲି । କିନ୍ତୁ ମୋତେ ବେଶୀ ଦୂର ଯାତ୍ରା କରିବାକୁ ହେଲା ନାହିଁ । ପ୍ରାୟ ଶତପଦ ଗତ କରିବା

ପରେ ହଠାତ୍ ତତ୍କାଳ ଭ୍ରାନ୍ତିକର ଅଦୂରବର୍ତ୍ତୀ ହୋଇ ଯେଉଁ ଦୃଶ୍ୟ-ଦେଖିଲି ସେଥିରେ ମୋହର ହୃତ୍କମ୍ପ ଜାତ ହେଲା ।

ଶ୍ମଶାନ ମଧ୍ୟରେ ପଦ୍ମାସନରେ ଜଣେ କାପାଳିକ ଉପବିଷ୍ଟ । ମସ୍ତକରେ ଜଟା, ସର୍ବାଙ୍ଗରେ ଭସ୍ମ, ଗଳାରେ ସର୍ପର ମାଳା ସମ୍ମୁଖରେ ବିଶାଳ ହୋମକୁଣ୍ଡ,—ମୁହୁର୍ମୁହୁ ଆହୁତି ପ୍ରଦାନ ଓ ଘୃତ ନିକ୍ଷେପ ଫଳରେ ଲେଲିହାନଶିଖ ହୋଇ ଉଠିଛି । ପାର୍ଶ୍ୱରେ ଉପଢୌକନ ଭୌତିକ ରୂପ ଦ୍ୱୟ ବଦ୍ଧାଞ୍ଜଳି ହୋଇ ଦଣ୍ଡାୟମାନ— ଆଦେଶ ଅପେକ୍ଷାରେ । ମେଘମନ୍ଦ୍ର ସ୍ୱରରେ କାପାଳିକ ଆଦେଶ କଲେ, "ପଲକ ମଧ୍ୟରେ କଳିଙ୍ଗ ରାଜକୁମାରୀ କନକଲେଖାଙ୍କୁ ଆନୟନ କର ।" ବିସ୍ମୟକର କଥା ପିଶାଚ ଦ୍ୱୟ ତତ୍କ୍ଷଣାତ୍ ଅନ୍ତର୍ଦ୍ଧାନ ହୋଇ ପଲକ ପାତ ପୂର୍ବରୁ ଏକ ଖାଟ ବହନକରି ଆସି ଉପସ୍ଥିତ । ସେମାନେ ଊର୍ଦ୍ଧ୍ୱ ଶ୍ୱାସ ଅବସ୍ଥାରେ ଖାଟଟିକୁ କାପାଳିକର ପାଦ ତଳେ ରଖି ପୁଣି ଦଣ୍ଡାୟମାନ ହେଲେ ।

ଏହି ଖାଟ ମଧ୍ୟରେ ସୁକୁମାରୀ ରାଜକୁମାରୀ ଚେତନା ଲାଭକରି ଚିତ୍କାର କରି ଉଠିଲେ । କିନ୍ତୁ ପରମୁହୂର୍ତ୍ତରେ କାପାଳିକ ବାମହସ୍ତରେ ତାହାଙ୍କର କେଶ ଧାରଣ କରି ସୁରକ୍ଷିତ ଖଡ୍ଗ ନିକଟକୁ ଆକର୍ଷଣ କରି ନେଲା ଏବଂ ଦକ୍ଷିଣ ହସ୍ତରେ ତାହା ଧାରଣ କରି ମସ୍ତକ ଚ୍ଛେଦନ କରିବାକୁ ଉଦ୍ୟତ ହେଲା । ଏହି ନାରକୀୟ ଦୃଶ୍ୟରେ ପିଶାଚ ଦୁହେଁ ମଧ୍ୟ ଭୀତ ସନ୍ତ୍ରସ୍ତ ଭାବରେ ବିକଟ ଧ୍ୱନି କରି ଉଠିଲେ; ମାତ୍ର ଏହାର ପ୍ରତିରୋଧ ପାଇଁ ସେମାନଙ୍କର ଶକ୍ତି କାହିଁ ?



କାପାଳିକ ଓ କଳିଙ୍ଗ ରାଜକୁମାରୀ

ଏତେବେଳ ଯାଏଁ ମୁଁ ନିର୍ବୋଧ ନିର୍ବାକ୍ ଭାବରେ ଦଣ୍ଡାୟମାନ ହୋଇଥିଲି—ମୋ ପଦ ଯୁଗଳର ଚଳତ୍ ଶକ୍ତି ଲୋପ ପାଇଥିଲା । କିନ୍ତୁ ଶେଷୋକ୍ତ ଦୃଶ୍ୟ ଦର୍ଶନ ମାତ୍ରେ ମୋହର ମାନସିକ ପ୍ରତିକ୍ରିୟା ଏପରି ଉତ୍ତେଜିତ ହୋଇ ଉଠିଲା ଯେ ମୁଁ ଉନ୍ମତ୍ତବତରେ କାପାଳିକ ଉପରକୁ ଏକ ଲମ୍ଫ ଦେଲି ଏବଂ ଲୌହ ମୁଷ୍ଟିରେ ତାହାର ଦକ୍ଷିଣ ହସ୍ତକୁ ଧରିନେଇ ବଜ୍ର ଭଳି ତାହାକୁ ମୋଡ଼ି ଦେଲି ।

ଏ ଆକସ୍ମିକ ଆକ୍ରମଣରେ କାପାଳିକ ଉପାୟ ଶୂନ୍ୟ ହୋଇ ଯନ୍ତ୍ରଣାରେ ଚିତ୍କାର କରୁ କରୁ ହସ୍ତରୁ ଖଡ୍ଗଟିକୁ ଖସାଇ ଦେଲା । ଏହି ଅବସରରେ ସେ ହୁଏତ କୌଣସି ମନ୍ତ୍ରୋଚ୍ଚାରଣ କରି ମୋତେ ଭସ୍ମୀଭୂତ କରିଥାନ୍ତା । କିନ୍ତୁ ପଲକ ମଧ୍ୟରେ ମୁଁ ଖଡ୍ଗ ଉତ୍ତୋଳନ କରି ଏକ ପ୍ରହାରରେ ତାହାର ସ୍କନ୍ଧରୁ ମସ୍ତକକୁ ଛିନ୍ନ କରିଦେଲି ।

ରାଜକୁମାରୀ ଚେତନାହୀନ ଅବସ୍ଥାରେ ଭୂପତିତା । ମୁଁ ତାହାଙ୍କୁ ଉତ୍ତୋଳନ କରିବାକୁ ଯାଉଛି, ହଠାତ୍ ଦେଖିଲି ଅସଂଖ୍ୟ ଛାୟାକାର ପିଶାଚ କେଉଁ ଅଜ୍ଞାତ ସ୍ଥାନରୁ ଆବିର୍ଭୂତ ହୋଇ ନୃତ୍ୟ କରିବାକୁ ଲାଗିଲେ । ସେମାନଙ୍କର ଭଙ୍ଗି ଓ ଅବୋଧ୍ୟ ଚିତ୍କାର ଦ୍ୱାରା ସେମାନେ ଯେ ଆନନ୍ଦ ପ୍ରକାଶ କରୁଛନ୍ତି ଏହା ମୁଁ ବୁଝି ପାରିଲି । ସେତେବେଳକୁ ରାଜକୁମାରୀଙ୍କର ମୁଖ କ୍ରମେ ସତେଜ ଓ ଚକ୍ଷୁ ଅପେକ୍ଷାକୃତ ସଚଳ ହୋଇ ଆସୁଥାଏ । ସେ ସଚେତ ହେବାପରେ ହୁଏତ ଏମାନଙ୍କୁ ଦେଖି ପୁଣି ତ୍ରସ୍ତ ହୋଇ ପଡ଼ିବେ, ଏଥିପାଇଁ ମୁଁ ପିଶାଚମାନଙ୍କୁ ନୀରବ ଓ ଧୀରସ୍ଥିର ରହିବା ପାଇଁ ଅନୁରୋଧ କଲି । ସେମାନେ ନୃତ୍ୟରୁ କ୍ଷାନ୍ତ ହେଲେ । ତାହା

ପରେ ଯେଉଁ ପିଶାଚ ରାଜକୁମାରୀଙ୍କୁ ଆନୟନ କରିଥିଲା ସେ ସମ୍ମୁଖକୁ ଆସି କହିଲା, "ହେ ବୀର ଯୁବକ, ଭୀତ ହୁଅନାହିଁ । ରାଜକୁମାରୀଙ୍କର ଆମେ କୌଣସି ଅମଙ୍ଗଳ କାମନା କରୁନାହୁଁ । କିନ୍ତୁ କାପାଳିକର ଶକ୍ତି ଅଧୀନରେ ରହିଥିବାରୁ ସେ ଯେ କୌଣସି କ୍ରୂର କର୍ମପାଇଁ ଆଦେଶ ପ୍ରଦାନ କଲେ ଅଜାଯାଏଁ ଆମେ ତାହା ପାଳନ କରିବାକୁ ବାଧ୍ୟ ହେଉଥିଲୁ । ରାଜକୁମାରୀ ଅତ୍ୟନ୍ତ ଭୟଗ୍ରସ୍ତା ହୋଇ ପଡ଼ିଛନ୍ତି । ଆପଣ ତାହାଙ୍କୁ ପ୍ରବୋଧ ଦେଇ ସୁଖୀ କରନ୍ତୁ । ଆପଣ ହିଁ ତାହାଙ୍କର ପାଣିଗ୍ରହଣ କରିବା ନିମିତ୍ତ ବିଧି ନିର୍ଦ୍ଦିଷ୍ଟ ଯୁବକ । ମନ୍ଦ ପ୍ରକୃତିକ କାପାଳିକ ତାହାଙ୍କୁ ବଳିଦାନ କରି ଆପଣଙ୍କୁ ଏ ସୌଭାଗ୍ୟରୁ ବଞ୍ଚିତ କରିବାକୁ ଯାଉଥିଲା । ଆପଣ ତାହାକୁ ହତ୍ୟାକରି ଆମ୍ଭମାନଙ୍କୁ ଅପରିମିତ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ପୃଥିବୀ ପୃଷ୍ଠରୁ ଏ ପାପ ଭାର ହ୍ରାସ କରି ତାହାର ଶକ୍ତିର ଉତ୍ତରାଧିକାରୀ ହୋଇ ଅଛନ୍ତି । ଆପଣଙ୍କର ସ୍ୱଭାବ ସତ୍ ଏବଂ ତଦନୁଯାୟୀ କାପାଳିକ ଯେଉଁ ସକଳ ଅନ୍ୟାୟ ଓ ଅତ୍ୟାଚାରର ସୃଷ୍ଟି କରି ଯାଇଛି ତାହାର ନିରାକରଣ ତଥା ନ୍ୟାୟର ପ୍ରତିଷ୍ଠା ଦିଗରେ ଆପଣ ଆମ୍ଭମାନଙ୍କୁ ବ୍ୟବହାର କରନ୍ତୁ । ଏଣିକି ଆମ୍ଭେମାନେ ଆପଣଙ୍କର ସ୍ନେହ ବନ୍ଧନରେ ଅଙ୍ଗୀକାରୀ ହୋଇ ରହିବୁ—ଦାସ ବନ୍ଧନରେ ନୁହେଁ । ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ ସମ୍ବନ୍ଧେ ଆଦେଶ କରନ୍ତୁ । ଜଗତରେ ଆମ୍ଭମାନଙ୍କ ଶକ୍ତିର ବହିର୍ଭୂତ କୌଣସି କର୍ମ ନାହିଁ ।"

ପିଶାଚର କଥାରେ ମୁଁ ଯେତିକି ପ୍ରୀତ ହେଲି ରାଜକୁମାରୀଙ୍କ ମୁଖ ପଙ୍କଜ ଅବଲୋକନ କରି ସେତିକି ମୁଗ୍ଧ ହେଲି । ମୋ ଦ୍ୱାରା ସେ ଆସନ୍ନ ମୃତ୍ୟୁ କବଳରୁ ରକ୍ଷା ପାଇଥିବାରୁ ତାହାଙ୍କ ହୃଦୟ ଯେ ଗଭୀର କୃତଜ୍ଞତାରେ ପୂରି ଯାଇଥିଲା

ଏହା ତାହାଙ୍କ ସଲଜ୍ଜ ମୁଖ ମଣ୍ଡଳରେ ସ୍ପଷ୍ଟ ପ୍ରତିଭାତ ହେଉଥିଲା । ସେ ଧୀର ବିନମ୍ର ବଦନରେ କହିଲେ, "ହେ ବୀରୋତ୍ତମ, ଏ ନିଃସହାୟା ବାଳିକାକୁ ଆପଣ ଏ କ୍ରୂର ରାକ୍ଷସ ମୁଖରୁ ରକ୍ଷା କରି ଅଛନ୍ତି । ଆପଣ ହିଁ ମୋହର ରକ୍ଷକ ଓ ଦେବତା ଏବଂ ପିଶାଚର ବାକ୍ୟାନୁଯାୟୀ ମୋହର ଭାଗ୍ୟ ନିର୍ଦ୍ଦିଷ୍ଟ ପତି । ସୁତରାଂ ଏହି ମୁହୂର୍ତ୍ତିରୁ ମୁଁ ଆପଣଙ୍କର ।"

ରାଜକୁମାରୀଙ୍କ ଅମୃତମୟୀ ବାଣୀ ଶ୍ରବଣ କରି ମୋହର ହୃଦୟର ଭାବ ଅତି ଉଦ୍ବେଳିତ ହୋଇ ପଡ଼ିଲା । ମୁଁ ଭାବିଲି, ପୈଶାଚିକ ଶକ୍ତି ସାହାଯ୍ୟରେ ଏ ସୁକୁମାରୀଙ୍କ ସହ କୌଣସି ଅଜ୍ଞାତ ସୁଦୂର ସୁରମ୍ୟ ପ୍ରଦେଶକୁ ଚାଲିଯାଇ ସେଠାରେ ଚିରକାଳ ପାଇଁ ମୋହର ଅମର ନଗରୀ ସୃଷ୍ଟି କରିବି । କିନ୍ତୁ ହଠାତ୍ ଆପଣଙ୍କ ଅନ୍ୱେଷଣରୁ କ୍ଷାନ୍ତ ହୋଇ ଅପ୍ରବୃତ୍ତରେ ଲିପ୍ତ ରହିବାରେ ମୋହର ଯେଉଁ ଦୁର୍ନାମ ହେବ ଏବଂ କୁମାରୀଙ୍କ ନିରୁଦ୍ଦେଶ୍ୟ ଫଳରେ ତାହାଙ୍କ ପିତାମାତାଙ୍କର ଯେ ଗଭୀର ଦୁଃଖ ଜାତ ହେବ ଏ ଦୁଇଟି ଚିନ୍ତା ଏକାଦିକ୍ରମେ ମନମଧ୍ୟରେ ପ୍ରବେଶ କରି ମୋତେ ଏଥିରୁ କ୍ଷାନ୍ତ କରାଇ ଦେଲା । ସୁତରାଂ ମୁଁ ନିଶ୍ଚୟ କଲି ଯେ ରାଜକୁମାରୀଙ୍କୁ ତାହାଙ୍କ ପ୍ରାସାଦକୁ ପ୍ରେରଣ କରାଇ ବୀରୋଚିତ ଭାବରେ କଳିଙ୍ଗ ରାଜ୍ୟର ମଙ୍ଗଳ ସାଧନ କରି ସମ୍ମାନ ସହକାରେ ରାଜଜେମାଙ୍କ ପାଣିପ୍ରାର୍ଥନା କରିବି ।

ମୋହର ପ୍ରତିଜ୍ଞା ରାଜକୁମାରୀଙ୍କ ନିକଟରେ ପ୍ରକାଶ କଲି ଏବଂ ତାହାଙ୍କୁ ଆଶ୍ୱାସନା ଦେଇ କହିଲି ଯେ ମୁଁ ତାହାଙ୍କର ବିଧି ନିର୍ଦ୍ଦିଷ୍ଟ ପତି ହୋଇ ଥିବାରୁ ଉପଯୁକ୍ତ ବୀରତ୍ୱ ପ୍ରଦର୍ଶନ ପୂର୍ବକ ରାଜାଙ୍କ ସ୍ୱୀକୃତ ଅନୁଯାୟୀ ତାହାଙ୍କୁ ଲାଭ କରିବି । ସେ ବର୍ତ୍ତମାନ

ପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କରି ଧୈର୍ଯ୍ୟ ସହକାରେ ଅପେକ୍ଷା କରିବା ବିଧେୟ । ରାଜକୁମାରୀ ଏଥିରେ ସମ୍ମତା ହେଲେ । କିଛିସମୟ ପରସ୍ପରକୁ ଯଥୋପଯୁକ୍ତ ସମ୍ଭାଷଣ ଦ୍ୱାରା ପ୍ରୀତିଜ୍ଞାପନ କରି ସାରିବା ପରେ କୁମାରୀଙ୍କୁ ସ୍ୱସ୍ଥାନରେ ଅବସ୍ଥାପିତ କରି ଆସିବା ନିମିତ୍ତ ମୁଁ ପିଶାଚକୁ ଆଦେଶ କଲି ।

ମୋହର ଆଦେଶ ପାଳନ କରିବା ନିମିତ୍ତ ତାହାକୁ କେତେକ ମୁହୂର୍ତ୍ତରୁ ବେଶି ସମୟ ଲାଗିଲା ନାହିଁ । ମୁଁ ଏକାକୀ ବସି ଜୀବନର ଏ ବିଚିତ୍ର ଅନୁଭୂତି ସମ୍ବନ୍ଧେ ଚିନ୍ତା କରିବାକୁ ଯାଉଛି, ପିଶାଚ ଫେରି ଆସି ମୋ ସମ୍ମୁଖରେ ଦଣ୍ଡାୟମାନ ହୋଇ କହିଲା, "ହେ ବୀରାଗ୍ରଣୀ, କିଛି ସମୟ ପରେ ଆପଣଙ୍କୁ ଏ ସମସ୍ତ ଘଟନା ମିଥ୍ୟା ସ୍ୱପ୍ନବତ୍ ପ୍ରତୀୟମାନ ହେବ । କିନ୍ତୁ ବାସ୍ତବରେ ଏହା ସ୍ୱପ୍ନ ନୁହେଁ, ସତ୍ୟ । ନିଦ୍ରାବସ୍ଥାରେ ଏହାର ପ୍ରାରମ୍ଭ ହୋଇ ଥିବାରୁ ସେପରି ପ୍ରତୀତ ହେବା ସ୍ୱାଭାବିକ । ତେଣୁ ମୁଁ ଗୋଟିଏ ମନ୍ତ୍ର ଦେଉଛି ତାହା ସ୍ମରଣ ରଖନ୍ତୁ । ଏ ମନ୍ତ୍ର ତିନିଥର ଉଚ୍ଚାରଣ କଲେ ଆମ୍ଭେମାନେ ଆପଣଙ୍କ ନିକଟରେ ଉପସ୍ଥିତ ହୋଇ ଯାହା ଆଦେଶ କରିବେ ତାହା ସାଧନ କରିବୁ । ମନ୍ତ୍ରଟି ପିଶାଚର ଶ୍ଳୋକ— "ଚଣ୍ଡାପି, ଚଣ୍ଡାପି, ଚଣ୍ଡାପି ।" ମୋ କଥାର ପ୍ରମାଣ ସ୍ୱରୂପ ଆପଣ ଦେଖିବେ ପ୍ରଭାତରେ ନିଦ୍ରୋତ୍‌ଥିତ ହେଲା ବେଳକୁ ଆପଣ ହାତରେ ଗୋଟାଏ ନରଖର୍ପର ଧରିଥିବେ ।"

ବାସ୍ତବିକ୍ ତାହା ହିଁ ଘଟିଥିଲା । ପ୍ରଭାତରେ ମୁଁ ଅତି ଅବଶ ଭାବରେ ଉଠି ଦେଖିଲି ମୋହର ଦକ୍ଷିଣ ହସ୍ତରେ ଗୋଟାଏ ନରଖର୍ପର । ନିକଟରେ ହୋମକୁଣ୍ଡ ବା କାପାଳିକର ମୃତ ଦେହର କୌଣସି ଚିହ୍ନ ନାହିଁ । ଓଃ କି ଦୁଃସ୍ୱପ୍ନ ! ମୁଁ ପିଶାଚ କଥାର

ସତ୍ୟତା ସେହିକ୍ଷଣରେ ପରୀକ୍ଷା କରିବା ପାଇଁ ଇଚ୍ଛାକଲି । କିନ୍ତୁ କରେ କଣ ! ମନ୍ତ୍ର ବିସ୍ମରଣ ହୋଇ ଯାଇଛି । ସକଳ ପ୍ରକାର ଚେଷ୍ଟାସତ୍ତ୍ୱେ ତାହା ଆଉ ସ୍ମରଣ ହେଉ ନାହିଁ । ସୁତରାଂ ଘଟନା ଚକ୍ରରେ ତାହା ସ୍ୱତଃ ମନରେ ଜାଗରିତ ନହେବା ଯାଏଁ ସେ ଆଶା ତ୍ୟାଗ କରିବାକୁ ବାଧ୍ୟହେଲି ।

କିଛି ସମୟ ପରେ ମୁଁ ନଗର ମଧ୍ୟରେ ପ୍ରବେଶ କଲି । ସେତେବେଳେ ସେଠାରେ ସର୍ବତ୍ର ଗୋଟାଏ ଅସ୍ୱାଭାବିକ ପରିସ୍ଥିତି ଉପୁଜି ଥିଲା ଭଳି ମୋତେ ବୋଧ ହେଲା । ନାଗରିକ ଗଣ ଭୀତ ସନ୍ତ୍ରସ୍ତ ଭାବରେ ନିଜ ନିଜର ମୂଲ୍ୟବାନ ସାମଗ୍ରୀ ଓ ରମଣୀମାନଙ୍କୁ ନିରାପଦ ସ୍ଥାନକୁ ଅନ୍ତର କରିବାରେ ବ୍ୟସ୍ତ । ସୈନ୍ୟଗଣ ବିଭିନ୍ନ ଦିଗରେ ପରିଚାଳିତ; ପଲ୍ଲୀବାସୀଗଣ ସ୍ରୋତ ଗତିରେ ପ୍ରାଣ ଭୟରେ ନଗରୀ ମଧ୍ୟକୁ ପ୍ରଧାବିତ । ଏ ଅବସ୍ଥା ଦେଖି ମୁଁ ଅନୁସନ୍ଧାନ କରି ବୁଝିଲି ଯେ ଅନ୍ଧ୍ର ଦେଶର ରାଜା ଜୟସିଂହ ବିଶ୍ୱାସ ଘାତକ ଭାବେ ରାଜ୍ୟ ଆକ୍ରମଣ କରି ଅଛନ୍ତି । ଏ ସମ୍ବାଦ ପାଇବା ମାତ୍ରେ ରାଜା ମିତ୍ର ରାଜ୍ୟମାନଙ୍କୁ ଆହ୍ୱାନ କରି ଦୂତ ପ୍ରେରଣ କରିବା ସଙ୍ଗେ ସଙ୍ଗେ ନଗର ରକ୍ଷାର ବ୍ୟବସ୍ଥା ପାଇଁ ଆଦେଶ କରିଛନ୍ତି । ମିତ୍ର ପକ୍ଷମାନଙ୍କର ଆଗମନ ପର୍ଯ୍ୟନ୍ତ ନଗରୀ ଅବରୁଦ୍ଧ ଅବସ୍ଥାରେ ହିଁ ରହିବା ନିମିତ୍ତ ସ୍ଥିର କରାଯାଇଛି । ଏକଥା ଶୁଣି ମୁଁ ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ମୋତେ ଦୁର୍ଗ ଅବରୋଧ କାର୍ଯ୍ୟରେ ବ୍ୟବହାର କରିବା ପାଇଁ ଅନୁରୋଧ କଲି । ଅତି ଅଳ୍ପ କାଳପରେ ଜୟସିଂହ ଏକ ବିଶାଳ ସେନାସହ ପଥମଧ୍ୟରେ ସମସ୍ତ ଗ୍ରାମ ନଗର ଧ୍ୱଂସକରି କଳିଙ୍ଗ ନଗର ଅବରୋଧ କଲେ । ଏତିକି ବେଳେ ମୁଁ ଭାବିଲି ପିଶାଚର ମନ୍ତ୍ରଟି ସ୍ମରଣ ହୁଅନ୍ତା କି ।

ଏହାପରେ ଅବରୁଦ୍ଧ ଅବସ୍ଥାରେ ମାସାଧିକ କାଳ ଅତୀତ ହେଲା । କ୍ରମେ ନଗର ମଧ୍ୟରେ ଖାଦ୍ୟ ଓ ଜଳର ଅଭାବ ହୋଇ ଆସିଲା । ରାଜା ଏଥିରେ ବିଚଳିତ ହୋଇ ଦୁର୍ଗର ଅଧିଷ୍ଠାତ୍ରୀ ଦେବୀଙ୍କ ଶରଣାପନ୍ନ ହେବା ପାଇଁ ରାଣୀ ଓ ରାଜକୁମାରୀଙ୍କ ସହିତ ବାହାରିଲେ । ମୁଁ ସୈନିକ ଭାବେ ଯଥାସ୍ଥାନରେ ଦୁର୍ଗରକ୍ଷା କାର୍ଯ୍ୟରେ ନିଯୁକ୍ତ ଥିଲି । ରାଜାଙ୍କର ଏ ଯାତ୍ରା ମଧ୍ୟରେ ଅକସ୍ମାତ୍ ରାଜକୁମାରୀଙ୍କ ମୁଖପଦ୍ମ ମୋହର ଦୃଷ୍ଟି ଗୋଚର ହୁଅନ୍ତେ ହଠାତ୍ ମାନସ ପଟରେ ପୂର୍ବ ସ୍ୱପ୍ନବୃତ୍ତାନ୍ତ ଜାଗ୍ରତ ହୋଇ ଉଠିଲା—କ୍ରମେ ସ୍ୱପ୍ନର ସମସ୍ତ ଘଟଣା ଓ ଉକ୍ତିପ୍ରତ୍ୟୁକ୍ତି ସ୍ୱତଃ ଉଦ୍ଭାସିତ ହୋଇ ପଡ଼ିଲା—ତାହା ସହିତ ସେହି ପିଶାଚ ପ୍ରଦତ୍ତ ମନ୍ତ୍ର ମଧ୍ୟ ।

ମୁଁ ପାଗଳଙ୍କ ପରି ରାଜାଙ୍କ ସମ୍ମୁଖକୁ ଦୌଡ଼ି ଯାଇ ନିବେଦନ କଲି, "ମହାରାଜ, ଆଦେଶ କରନ୍ତୁ, ଅଧୀନ ଏକାକୀ ଶତ୍ରୁ ସୈନ୍ୟ ସାଗରକୁ ମନ୍ଥନ କରି ଦେଇ ଆସିବ ।"

ମୋହର ଦୁଃସହ ମନ୍ତ୍ରିତ୍ୱ ବିଚାର ଘଟିଛୁ ରାଜା ଏକଥା ଅପାତତଃ ବୁଝିନେଲେ ମଧ୍ୟ ମୋତେ ଅନୁମତି ଦେଲେ । କାରଣ ଶତ୍ରୁ ସହିତ ସଂଗ୍ରାମ କରିବାକୁ ଅଗ୍ରସର ହେଲା ବେଳେ ଗୋଟାଏ ସୈନ୍ୟର ପାର୍ଥକ୍ୟ କିଛି ନୁହେ ।

ସେଦିନ ରାତି ମୋହର ବିଗତ ସ୍ୱପ୍ନରାତ୍ରି ଅପେକ୍ଷା ଅଧିକ ତମସାଚ୍ଛନ୍ନ ଏବଂ ବାତ୍ୟାବିକ୍ଷୋଭିତ ହୋଇ ପଡ଼ିଥିଲା । ଶତ୍ରୁ ଦୁର୍ଗର ଚତୁର୍ଦ୍ଦିଗ ଅଧିକାର କରିଥିଲେ ମଧ୍ୟ ଶ୍ମଶାନ ଭୂମି ନିର୍ଜନ ଥିଲା । ମୁଁ ଅତି ସତର୍କତାର ସହିତ ସେଠାରେ ଉପସ୍ଥିତ ହୋଇ ମନ୍ତ୍ର ଉଚ୍ଚାରଣ କଲି—"ବିଶାପି, ଚଶାପି, ଚଶାପି ।" ସଙ୍ଗେ ସଙ୍ଗେ

ଦେଖିଲି ମୋ ସମ୍ମୁଖରେ ଅସଂଖ୍ୟ ପିଶାଚ ଶରୀର ଧରି ଉଠିଲେ —ଶତ, ସହସ୍ର, ଲକ୍ଷ ସଂଖ୍ୟକ ପିଶାଚ—ମୋତେ ସମ୍ମାନ ପ୍ରଦର୍ଶନ କରି ମୋ ଆଦେଶ ପାଇଁ ଅପେକ୍ଷା କରି ରହିଲେ । ମୁଁ କହିଲି— "ଏହି ମୁହୂର୍ତ୍ତରେ—ପଲ୍ଲବମାନେ ତୁମ୍ଭେମାନେ ହୀନମତି ବିଶ୍ୱାସ-ଘାତକ ଜୟସିଂହ ଓ ଅନ୍ଧ୍ର ସୈନ୍ୟମାନଙ୍କୁ ଏପରି ଯାତନା ଦିଅ ଯେ ସେମାନେ ପ୍ରାଣଭୟରେ ପଳାୟନ କରିବେ ।" ପିଶାଚଗଣ ସମ୍ମତି ସୂଚକ ଧ୍ୱନି କରି ମୁହୂର୍ତ୍ତକ ମଧ୍ୟରେ ଅଦୃଶ୍ୟ ହୋଇଗଲେ ।

ମୁଁ ନଗର ମଧ୍ୟକୁ ଫେରି ଆସି ଶାନ୍ତିରେ ବିଶ୍ରାମ ନେଲି । ପ୍ରଭାତ ହେବା ପୂର୍ବରୁ ପ୍ରହରୀଗଣ ରାଜାଙ୍କୁ ଜଣାଇଲେ ଯେ ଅନ୍ଧ୍ରରାଜା ସସୈନ୍ୟ ପଳାୟନ କରିଛନ୍ତି । ଅଥଚ ସେମାନଙ୍କ ଶିବିର ପଡ଼ି ରହିଛି । ଏ ସମ୍ବାଦରେ ରାଜାଙ୍କର ସନ୍ଦେହ ହେଲା । କାରଣ ଅନ୍ଧ୍ର ରାଜାଙ୍କ ଉପରେ ଆସ୍ଥାସ୍ଥାପନ କରିବାର ସଦ୍ୟଫଳ ସେ ପାଇଛନ୍ତି । ମାତ୍ର ପରମୁହୂର୍ତ୍ତରେ ଗୁପ୍ତଚର ଗଣ ଆସି ମଧ୍ୟ ସେହି ସମ୍ବାଦ ଦେଲେ । ସେମାନେ ବହୁଦୂର ପର୍ଯ୍ୟନ୍ତ ଅନୁସନ୍ଧାନ କରି ମଧ୍ୟ କୌଣସିଠାରେ ଶତ୍ରୁ ସୈନ୍ୟର ଚିହ୍ନ ସୁଦ୍ଧା ପାଇଲେ ନାହିଁ । ଅନ୍ଧ୍ରମାନେ ଅସ୍ତ୍ର ଶସ୍ତ୍ର ଓ ଶିବିର ପରିତ୍ୟାଗ କରି ପଳାୟନ କରିଥିଲେ ।

ପିଶାଚଗଣ କିପରି ଭାବରେ ଏ ଦୁଃସାଧ୍ୟ କର୍ମ ସମ୍ପାଦନ କଲେ ତାହା ମୋହର ସମ୍ପୂର୍ଣ୍ଣ ଅଜ୍ଞାତ । ସୁତରାଂ ରାଜା ଯେତେ-ବେଳେ କୃତଜ୍ଞ-ବିନୟ ଭାଷାରେ ସମସ୍ତ କଥା ଜିଜ୍ଞାସା କଲେ, ସେତେବେଳେ ମୁଁ ମୋହର ସ୍ୱପ୍ନ ବୃତ୍ତାନ୍ତ ଓ ପିଶାଚ ମନ୍ତ୍ର—ମନ୍ତ୍ର ବିସ୍ମରଣ ଓ ରାଜକୁମାରୀଙ୍କ ଦର୍ଶନରେ ତାହାର ପୁନଃସ୍ମରଣ ଇତ୍ୟାଦି କଥା ପ୍ରକାଶ କରିବା ବ୍ୟତୀତ ଅନ୍ୟ ଉପାୟ ନଥିଲା ।

ସମସ୍ତ ବୃତ୍ତାନ୍ତ ଶୁଣି ରାଜା ଅତି ଆନନ୍ଦ ସହକାରେ ସ୍ୱୀକାର କଲେ ଯେ, ପ୍ରଜାପତି ନିର୍ବନ୍ଧରେ ସେ ପ୍ରତିକୂଳ ହେବେ ନାହିଁ; ବରଂ ସଚ୍ଚରିତ୍ର ଓ ଦୈବଶକ୍ତି ସମ୍ପନ୍ନ ଜଣେ ଯୁବକଙ୍କୁ ନିଜର ଜାମାତା ଭାବରେ ପାଇ ପ୍ରୀତହେବେ । ବନ୍ଧୁଗଣ, ଏହିପରି ଭାବରେ ମୁଁ, କଳିଙ୍ଗ ରାଜକୁମାରୀ ସୁକୁମାରୀ କନକଲେଖାଙ୍କୁ ଲଭକଲି । ବର୍ତ୍ତମାନ ବିଶାଳ କଳିଙ୍ଗ ସେନା ସିଂହବର୍ମାଙ୍କ ସାହାଯ୍ୟାର୍ଥେ ଅଗ୍ରସର ହୋଇ ଏଠାରେ ଉପସ୍ଥିତ । ଆପଣ ଇଚ୍ଛାନୁଯାୟୀ ସେମାନଙ୍କୁ ନିଜ କାର୍ଯ୍ୟରେ ଲଗାଇ ପାରନ୍ତି ।

---

# ( ୨୦ )

# ବିଶ୍ରୁତଙ୍କ କଥା

କୁମାରଗଣ ମନ୍ତ୍ରଗୁପ୍ତଙ୍କ ଆଳାପରେ ଅତ୍ୟନ୍ତ ପ୍ରୀତ ହୋଇ ଏକ ମୁଖରେ ତାହାଙ୍କର ପ୍ରଶଂସା ଗାନ କଲେ । ଶେଷରେ ରାଜକୁମାର କହିଲେ, "ବନ୍ଧୁ ମନ୍ତ୍ରଗୁପ୍ତ, ଅତେଜସ୍ୱ କଳିଙ୍ଗ ସେନା ଓ ତୁମର ବଶୀଭୂତ ପିଶାଚ ଗଣଙ୍କ ସାହାଯ୍ୟରେ ମାଳବ ରାଜ୍ୟ କରଗତ କରିବା ଆମ୍ଭମାନଙ୍କ ପକ୍ଷେ ଅତି ସାମାନ୍ୟ କର୍ମ ମାତ୍ର । ସୁତରାଂ ଆମ୍ଭମାନଙ୍କ ଭାଗ୍ୟରବି ଯେ ବର୍ତ୍ତମାନ ପ୍ରାଚୀ ଦିଗ୍‌ବଳୟରେ ଉଦୀୟମାନ ଏଥିରେ ଅଉ ସନ୍ଦେହ କଣ ? ସର୍ବଶେଷରେ ଆସ ବନ୍ଧୁ ବିଶ୍ରୁତଙ୍କ କଥା ଶ୍ରବଣକରି ତତ୍‌ପରେ ଆମ୍ଭମାନଙ୍କର ଅପହୃତ ସାମ୍ରାଜ୍ୟର ପୁନରୁଦ୍ଧାର ଚିନ୍ତା କରିବା ।"

"ବାସ୍ତବିକ୍ କଥା" । ବିଶ୍ରୁତ ଉତ୍ତର କଲେ, "ମୁଁ ମଧ୍ୟ ମୋହର ବନ୍ଧୁମାନଙ୍କ ପରି ରୂପସୀ ଓ ଗୁଣବତୀ ପତ୍ନୀ ଲାଭ କରିଅଛି ଏବଂ ଏପରି ଜଣେ ଶକ୍ତିଶାଳୀ ରାଜାଙ୍କର ବନ୍ଧୁତ୍ୱ ଲାଭ କରି ପାରିଅଛି ଯାହାଙ୍କ ସୈନ୍ୟବଳ ଆପଣଙ୍କ ସାମ୍ରାଜ୍ୟ ବିଜୟରେ ବିନିଯୋଗ କରାଯାଇପାରେ । ମୋହର କଥା ଆରମ୍ଭ କରିବା ପୂର୍ବରୁ ଏ କଥା ମୁଁ ସ୍ୱୀକାର କରିବା କର୍ତ୍ତବ୍ୟ ମନେ କରେ ଯେ, ମୁଁ ଯଦି ଆପଣମାନଙ୍କ ସହିତ ବିନ୍ଧ୍ୟାବାସରେ ସକଳ କଳା ଓ

ଶାସ୍ତ୍ରଚର୍ଚ୍ଚା କରି ନଥାନ୍ତି ତେବେ ମୋହର କାର୍ଯ୍ୟାବଳୀ ଆଦୌ ଶ୍ରବଣ ଯୋଗ୍ୟ ହୋଇ ପାରି ନଥାନ୍ତା ।

ମୁଁ ଆପଣଙ୍କ ଅନୁସନ୍ଧାନରେ ବାହାରି ଵନ୍ଧ୍ୟାରଣ୍ୟରେ ପ୍ରବେଶ କଲି । ସେଠାରେ ଏକ ବାପୀ ନିକଟରେ ଜଣେ ଯୁବକ ନିଃସହାୟ ଭାବରେ ବସି କ୍ରନ୍ଦନ କରୁଥିଲେ । ସେ ମୋତେ ଦେଖି ତାହାଙ୍କ ସଂରକ୍ଷଣ କର୍ତ୍ତାଙ୍କୁ କୂପ ମଧ୍ୟରୁ ଉଦ୍ଧାର କରିଦେବା ନିମିତ୍ତ ମୋତେ ସାନୁନୟ ଅନୁରୋଧ କଲେ । ବୋଧହୁଏ ସେହି ବ୍ୟକ୍ତି କୂପ ଗୃନ୍ଦନୀ ଉପରେ ବସିଥିଲା ବେଳେ ଅତରିକ୍ତ ଶରୀରିକ କ୍ଳାନ୍ତି ଯୋଗୁଁ କୌଣସି ମତେ କୂପମଧ୍ୟକୁ ଖସି ପଡ଼ିଥିଲେ ।

ସୌଭାଗ୍ୟ କ୍ରମେ କୂପଟି ଅଗଭୀର ଥିଲା ଏବଂ କୂପଭାନ୍ତରେ ପଦାଶ୍ରୟ ପାଇଁ ଯଥେଷ୍ଟ ସୁବିଧା ଥିଲା । ମୁଁ ତତ୍‌କ୍ଷଣାତ୍ କୂପ-ମଧ୍ୟରେ ପ୍ରବେଶ କରି କଷ୍ଟମାତ୍ର ଜଣେ ବୃଦ୍ଧବ୍ୟକ୍ତିଙ୍କୁ ବହୁକଷ୍ଟରେ ଉଦ୍ଧାର କରି ଆଣିଲି ।

ବୃଦ୍ଧ ଟିକିଏ ଅଶ୍ୱସ୍ତ ହେବା ପରେ ମୁଁ ତାହାଙ୍କୁ ନିଜର ତଥା ରାଜକୁମାର ତୁଲ୍ୟ ରୂପବାନ୍ ଯୁବକଙ୍କର ପରିଚୟ ଜିଜ୍ଞାସା କଲି ।

"ଭଦ୍ର ମହୋଦୟ", ବୃଦ୍ଧ ଉତ୍ତର କଲେ, "ମୋହର ନାମ ନାଳିଜଙ୍ଘ । ମୁଁ ଏହି ରାଜକୁମାର ଭାସ୍କରବର୍ମାଙ୍କର ସଂରକ୍ଷଣକର୍ତ୍ତା । ଏହାଙ୍କ ପିତା ଅନନ୍ତବର୍ମା ବିଦର୍ଭ ଦେଶର ଶାସକ ଥିଲେ । ସେ ଅତ୍ୟନ୍ତ ପ୍ରତାପଶାଳୀ ଥିଲେ ମଧ୍ୟ ନିଜର ଅବିମୃଷ୍ୟକାରିତା ଯୋଗୁଁ ଜଣେ କୁମନ୍ତ୍ରୀର ଅସତ୍ ପରାମର୍ଶରେ ପଡ଼ି ନିଜର ରାଜ୍ୟ ତଥା ପ୍ରାଣ ହରାଇଲେ । ଏ ଯୁବକଙ୍କ ପିତାମହ ପୁଣ୍ୟବର୍ମା ଜଣେ ସୁଶାସକ ଥିଲେ । ଅନନ୍ତବର୍ମା ସିଂହାସନ ଆରୋହଣ କାଳରେ

ପିତାଙ୍କ ପରାମର୍ଶଦାତା ବସୁରକ୍ଷିତଙ୍କ ଦ୍ୱାରା ସଦ୍‌ଗୁଣାନ୍ୱିତ ହୋଇ ବିଶେଷ ଜନପ୍ରିୟ ହୋଇଥିଲେ । ମାତ୍ର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ମନରେ ସ୍ୱାଧୀନ ଭାବ ପ୍ରବେଶ କରନ୍ତେ ସେ ବୃଦ୍ଧ ମନ୍ତ୍ରୀଙ୍କୁ ଅନାଦର କରି ବିହାରଭଦ୍ର ନାମକ ଜଣେ ହୀନମତି ବ୍ୟକ୍ତିର ମନ୍ତ୍ରଣାରେ ବଶୀଭୂତ ହେଲେ । ବିହାରଭଦ୍ର ତାହାଙ୍କ ମନରେ ବିଶ୍ୱାସ ଆଣି ଦେଲା ଯେ କୁଟ ଅର୍ଥଶାସ୍ତ୍ରର କଠୋର ନୀତି ସବୁ ପାଳନ କରିବା ନିମିତ୍ତ ରାଜା ବାଧ୍ୟ ନୁହନ୍ତି । ରାଜା ଶାସନର ଦାୟିତ୍ୱ ମନ୍ତ୍ରୀ ହସ୍ତରେ ଅର୍ପଣ କରି ନିଜେ ଆମୋଦ ପ୍ରମୋଦରେ ଜୀବନ ସାର୍ଥକ କରିବା ବିଧେୟ ।

ଫଳତଃ ତାହା ହିଁ ହେଲା । ରାଜା ଅନନ୍ତବର୍ମା ଭୋଗ ବିଳାସରେ ଲିପ୍ତ ରହିଲେ । ବସୁରକ୍ଷିତ ମନ୍ତ୍ରିତ୍ୱରୁ ବିତାଡ଼ିତ ହେଲେ ଏବଂ ବିହାରଭଦ୍ର ତାହାଙ୍କ ସ୍ଥାନ ଅଧିକାର କରି ରାଜାଙ୍କୁ ସମ୍ପୂର୍ଣ୍ଣ ଭାବରେ ନିଜର ଅଧୀନ କଲେ । ରାଜଦରବାର ନୀଚାଶୟ ତୋଷାମୋଦକାରୀମାନଙ୍କ ଦ୍ୱାରା ପୂର୍ଣ୍ଣ ହେଲା । ଏମାନଙ୍କ ମଧ୍ୟରୁ ରାଜା ଚନ୍ଦ୍ରସିଂହଙ୍କ ପ୍ରଧାନ ମନ୍ତ୍ରୀ ଚନ୍ଦ୍ରପାଳିତଙ୍କ ପୁତ୍ର ଇନ୍ଦ୍ରପାଳିତ ଏକତମ । ପୁତ୍ରର ଅଯୋଗ୍ୟତା ଯୋଗୁଁ ଚନ୍ଦ୍ରପାଳିତ ତାହାଙ୍କୁ ଗୃହରୁ ବିତାଡ଼ିତ କରିଦେଇ ଥିବା ସମ୍ବାଦ ସେତେବେଳେ ରାଷ୍ଟ୍ର ହୋଇଥିଲା । ଆମେ ପରବର୍ତ୍ତୀ ଘଟଣାରୁ ଜାଣି ପାରୁଛୁ ଯେ ଚନ୍ଦ୍ରପାଳିତ ପୁତ୍ରକୁ ନିର୍ବାସନ କରିବା ଗୋଟାଏ ଛଳନା ମାତ୍ର । ବାସ୍ତବରେ ରାଜା ଅନନ୍ତବର୍ମାଙ୍କୁ ବିପଥଗାମୀ କରାଇ ତାହାଙ୍କ ରାଜ୍ୟରେ ବିଶୃଙ୍ଖଳା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଇନ୍ଦ୍ରପାଳିତ ପିତାଙ୍କ ଦ୍ୱାରା ପ୍ରେରିତ ହୋଇଥିଲେ । ରାଜା ଚନ୍ଦ୍ରସିଂହ ଅନନ୍ତ-ବର୍ମାଙ୍କର ପ୍ରତ୍ୟକ୍ଷ ପ୍ରିୟ ବାଦୀବନ୍ଧୁ ହେଲେ ମଧ୍ୟ ଅନ୍ତରରେ ବିଦର୍ଭର ଐଶ୍ୱର୍ଯ୍ୟ ପ୍ରତି ତାହାଙ୍କର ଅତ୍ୟନ୍ତ ଈର୍ଷା ଥିଲା । ସୁତରାଂ ଏ ସମସ୍ତ

ଛଳନା ତାହାଙ୍କ କଳ୍ପନା ପ୍ରସୂତ । ଆମର ଏହି ଧାରଣା ହେବାର ପ୍ରଧାନ କାରଣ ହେଉଛି ଯେ ସେ ଭାନୁବର୍ମା ନାମକ ଜଣେ ସାମନ୍ତଙ୍କୁ ବିଦର୍ଭ ଆକ୍ରମଣ କରିବା ପାଇଁ ପ୍ରବର୍ତ୍ତାଇ ଥିଲେ ଏବଂ ସେ ଆକ୍ରମଣ କରନ୍ତେ ନିଜେ ମିତ୍ରଭାବରେ ଅନନ୍ତବର୍ମାଙ୍କୁ ସାହାଯ୍ୟ କରିବାକୁ ଆସି ଅନ୍ୟ ମିତ୍ର ନୃପମାନଙ୍କ ମଧ୍ୟରେ ଅନନ୍ତବର୍ମାଙ୍କ ପ୍ରତି ବିରାଗ ଭାବ ଜାତ କରାଇ ଥିଲେ । ଅନନ୍ତବର୍ମାଙ୍କର ତ ଚରିତ୍ରଗତ ଦୋଷ ବହୁତ ଥିଲା; ତେଣୁ ମିତ୍ରନୃପଗଣ ତାହାଙ୍କୁ ପରିତ୍ୟାଗ କରି ନିଜ ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । ଏହି ସୁଯୋଗରେ ବସନ୍ତଭାନୁ ଭାନୁବର୍ମାଙ୍କ ସହିତ ମିଳିତ ହୋଇ ଏକ ଖଣ୍ଡ ଯୁଦ୍ଧରେ ଅନନ୍ତବର୍ମାଙ୍କୁ ପରାସ୍ତ ଓ ନିହତ କଲେ । ଭାନୁବର୍ମା କେତେକ ଧନସମ୍ପଦ ପାଇ ପରିତୃପ୍ତ ହେଲେ ଏବଂ ବସନ୍ତଭାନୁ ବିଦର୍ଭ ସିଂହାସନ ଅଧିକାର କଲେ । ଏହା ପରେ ଦୁର୍ଦ୍ଦଶାଗ୍ରସ୍ତ ହୋଇ ରାଣୀ ବସୁନ୍ଧରା ଏହି ଏକମାତ୍ର ପୁତ୍ର ଭାସ୍କରବର୍ମା ଓ କନ୍ୟା ମଞ୍ଜୁବାଦିନୀଙ୍କ ସହ ମୃତପତିଙ୍କ ବୈମାତ୍ରେୟ ଭାଇ ମାହିଷ୍ମତୀର ରାଜା ମିତ୍ରବର୍ମାଙ୍କ ଦରବାରକୁ ପଳାୟନ କରି ତାହାଙ୍କର ଶରଣପ୍ରାର୍ଥିନୀ ହେଲେ । କିନ୍ତୁ ଦୁର୍ଦ୍ଦିନର ଅବସାନ କେବଳ ସ୍ଥାନ ପରିବର୍ତ୍ତନରେ ହୋଇଯାଏ ନାହିଁ । ରାଣୀ ଏଠାରେ ପ୍ରବେଶ କରି ପୁଣି ଏକ ନୂତନ ବିପଦର ସମ୍ମୁଖୀନା ହେଲେ । ବିଧବା ବସୁନ୍ଧରା ଭ୍ରାତୃଜାୟା ଭାବରେ ମାତୃସ୍ଥାନୀୟା ହେଲେ ମଧ୍ୟ ପାପୀ ମିତ୍ରବର୍ମା ତାହାଙ୍କୁ ପୁନର୍ବିବାହ କରିବା ନିମିତ୍ତ ଦାବୀ କଲା । ଏଥିପାଇଁ ସେ ଯୁକ୍ତି କଲା ଯେ ସେ ଅନନ୍ତବର୍ମାଙ୍କ ସହୋଦର ଭାଇ ନୁହେ । ତେଣୁ ଏ ବିବାହ ଶାସ୍ତ୍ରାନୁମୋଦିତ । ଏ ପ୍ରସ୍ତାବ ଶୁଣି ବସୁନ୍ଧରା ନିତାନ୍ତ ମର୍ମାହତ ହୋଇ ପଡ଼ିଲେ । ଦ୍ୱିତୀୟତଃ ବର୍ତ୍ତମାନ ମିତ୍ରବର୍ମା ଦୃଢ଼ପ୍ରତିଜ୍ଞ ଯେ ରାଜକୁମାରୀ ମଞ୍ଜୁବାଦିନୀଙ୍କୁ ଉନ୍ମତ୍ତବୀର ଚଣ୍ଡବର୍ମାଙ୍କ ସହୋଦର

ପ୍ରଚଣ୍ଡବର୍ମାଙ୍କ ସହିତ ବିବାହ ଦେବେ । ପ୍ରଚଣ୍ଡବର୍ମାଙ୍କ ଅସଚ୍ଚରିତତା ସର୍ବଜନ ସୁବିଦିତ; ତଥାପି ଏ ଗୁରୁତର ପ୍ରସ୍ତାବରେ ବସୁନ୍ଧରାଙ୍କ ପରାମର୍ଶ ମଧ୍ୟ ନିଆ ଯାଇନାହିଁ । ଏପରି କ୍ଷେତ୍ରରେ ବର୍ତ୍ତମାନ ଯଦି ରାଣୀ ଏ ବୁଝିଆଇ ପ୍ରସ୍ତାବରେ ଅମତ ପ୍ରକାଶ କରନ୍ତି ତେବେ ତାହାର କୁଫଳ ରାଜକୁମାରଙ୍କ ଉପରେ ହିଁ ଫଳି ପାରେ । ଏହି ସମସ୍ତ ପରିସ୍ଥିତି ଆଲୋଚନା କରି ରାଣୀଙ୍କ ଅନୁରୋଧରେ ମୁଁ ଭାସ୍କରବର୍ମାଙ୍କ ସହ ଏ ମହାରଣ୍ୟ ମଧ୍ୟରେ ପ୍ରବେଶ କରିଅଛୁ । କୌଣସି ଗୋପନ ସ୍ଥାନରେ ତାହାଙ୍କ ଆଶ୍ରୟର ବ୍ୟବସ୍ଥା କରିବା ମୋହର ଲକ୍ଷ୍ୟ । ଏ ସବୁ ଦୁର୍ଯୋଗ ଉପରେ ଆଜି ପୁଣି ଏ ଯେଉଁ ଦୁର୍ଘଟଣା ଘଟିଲା, ସେଥିରୁ ମୋତେ ରକ୍ଷା କରିବା ପାଇଁ ଆପଣ ଈଶ୍ୱର ପ୍ରେରିତ ବୋଲି ମୁଁ ମନେ କରେ । ଆପଣଙ୍କ ନିଃସ୍ୱାର୍ଥ କର୍ମପାଇଁ ଶତ ଧନ୍ୟବାଦ ।"

ବୃଦ୍ଧ କ୍ଷାନ୍ତ ହୁଅନ୍ତେ ମୁଁ କିଛି ସମୟ ନୀରବରେ ବସି ଭାସ୍କରବର୍ମାଙ୍କ ଲକ୍ଷଣ ଅର୍ଥାତ୍ ସେ ପିତାମାତା ମଧ୍ୟରୁ କାହା ପ୍ରକୃତି ପାଇଛନ୍ତି ଅନୁମାନ କରୁଛି, ଏତିକି ବେଳେ ବୃଦ୍ଧ ପୁଣି କଥା ଆରମ୍ଭ କରି କହିଲେ, "ମହାଶୟ ଅସହାୟା ବିଧବା ରାଣୀଙ୍କୁ ଏ ବିପଦ ମୁଖରୁ ରକ୍ଷା କରିବା ନିମିତ୍ତ ଆପଣ କୌଣସି ମତେ ସାହାଯ୍ୟ କରି ପାରିବେ ନାହିଁ ?"

ମୁଁ ଉତ୍ତର କଲି, "ବିବେକବାନ୍ ପ୍ରତ୍ୟେକ ମାନବର ଏ କ୍ଷେତ୍ରରେ କର୍ତ୍ତବ୍ୟ ଅଛି । କିନ୍ତୁ ମୁଁ ଏହିକ୍ଷଣି ଏକ ଗୁରୁତର କର୍ତ୍ତବ୍ୟାନୁରୋଧରେ ବ୍ୟସ୍ତ । ତେଣୁ ଅନ୍ୟ କୌଣସି କାର୍ଯ୍ୟରେ ମୋହର ସମୟ ବ୍ୟୟ କରିବା ଉଚିତ ନୁହେଁ । ତଥାପି ଅସହାୟା ନାରୀର ବିପଦରେ ସାହାଯ୍ୟ କର୍ତ୍ତବ୍ୟ ଗରିଷ୍ଠ ଏବଂ ସେହି ଦୃଷ୍ଟିରୁ

ମୁଁ ଏ ଦେଶରେ ସମ୍ପୂର୍ଣ୍ଣ ଅପରିଚିତ ହେଲେ ମଧ୍ୟ ରାଣୀଙ୍କୁ ବିପଦରୁ ଉଦ୍ଧାର କରିବା ପାଇଁ ଯଥାସାଧ୍ୟ ଶକ୍ତି, ବୁଦ୍ଧି ଓ ବିଚକ୍ଷଣତା ବିନିଯୋଗ କରିବି ।"

ମୋହର ଅଶ୍ୱାସନା ବାଣୀ ଶ୍ରବଣ କରି ବୃଦ୍ଧ ଓ ରାଜକୁମାର ମୋହର ପଦତଳେ ପଡ଼ି ମୋତେ ଧନ୍ୟବାଦ ଦେବାକୁ ଲାଗିଲେ । ତାହିଁକି କେଜାଣି ସେମାନଙ୍କର ବିଶ୍ୱାସ ଜନ୍ମିଲା ଯେ ମୋ ଦ୍ୱାରା ଏ ଅନ୍ୟାୟର ନିଶ୍ଚୟ ପ୍ରତିକାର ହେବ । ତାହା ପରେ ମୁଁ କହିଲି "ଅଚ୍ଛା, ଆସ ସମସ୍ତ ଘଟନାକୁ ପୁଂଖାନୁପୁଂଖ ରୂପେ ଆଲୋଚନା କରିବା । ପ୍ରଥମ କଥା ହେଉଛି, ମିତ୍ରବର୍ମାଙ୍କ କବଳରୁ ଆମ୍ଭମାନଙ୍କୁ ରକ୍ଷା ପାଇବାକୁ ହେବ । ଦ୍ୱିତୀୟତଃ ଏକ ବଳବାନ ଶତ୍ରୁ ମୁଖରୁ ବିଦର୍ଭକୁ ଉଦ୍ଧାର କରିବାକୁ ହେଲେ ଏକ ଶକ୍ତିଶାଳୀ ସେନା ଦରକାର । ଏହା ସହିତ ପ୍ରଚଣ୍ଡବର୍ମାକୁ ଏପରି ଅବସ୍ଥାରେ ପକାଇବାକୁ ହେବ ଯାହା ଫଳରେ ସେ ସ୍ୱତଃ ବିବାହ ପ୍ରସ୍ତାବର ପୁନରୁତ୍ଥାନ କରିପାରିବ ନାହିଁ । କେତେକ ବିଶେଷ କାରଣ ବଶତଃ ଉଜ୍ଜୟିନୀ ରାଜବଂଶ ତଥା ତତ୍‌ସଂପୃକ୍ତ ବ୍ୟକ୍ତିମାନଙ୍କର ମୁଁ ଅମଙ୍ଗଳ କାମନା କରେ । ସେ କଥା ପରେ କହିବି । ବର୍ତ୍ତମାନ ତୁମେ ଯୁବରାଜଙ୍କୁ ମୋ ନିକଟରେ ରଖି ଫେରିଯାଅ ଏବଂ ରାଣୀଙ୍କୁ ସମ୍ବାଦ ଦିଅ ଯେ ମଗଧରାଜ ରାଜହଂସଙ୍କ ପୁତ୍ର ରାଜବାହନଙ୍କ ବନ୍ଧୁ ବିଶ୍ରୁତ ନାମକ ଜଣେ ଯୁବକ ତାହାଙ୍କୁ ସାହାଯ୍ୟ କରିବା ନିମିତ୍ତ ପ୍ରତିଶ୍ରୁତ ହୋଇ ଅଛନ୍ତି । ଅତଏବ ସେ ନିଶ୍ଚିନ୍ତ ରହନ୍ତୁ ।"

"ମୋହର ପରିଚୟ ପାଇ ବୃଦ୍ଧ ଓ ତରୁଣ ଉଭୟେ ବିସ୍ମିତ ହୋଇ ପଡ଼ିଲେ । ସେମାନେ ପୁନର୍ବାର ମୋହର ପ୍ରଶଂସା ଗାନ କରିବସିବା ପୂର୍ବରୁ ମୁଁ କହିଲି, "ରାଜା ରାଜହଂସଙ୍କ ଉଦ୍ଧା-

ବିଧାନରେ ମୁଁ ନାନାବିଧ ବିଜ୍ଞାନ ଓ କଳାରେ ପାରଦର୍ଶିତା ଲାଭ କରିଅଛୁ । ଏଠାରେ ସେ ଜ୍ଞାନକୁ ସତ୍‌କାର୍ଯ୍ୟରେ ବିନିଯୋଗ କରିବାର ସମୟ ଆସିଅଛି । ମୁଁ ଓ ଯୁବରାଜ କାପାଳିକ ସନ୍ନ୍ୟାସୀ ବେଶରେ ଯାଇ ନଗରୀର ଶ୍ମଶାନ ଭୂମିରେ ବାସ କରିବୁ । ତୁମେ ରାଣୀଙ୍କର ସର୍ବୋତ୍କୃଷ୍ଟ ହୀରକ ହାର ମୋତେ ଗୋପନରେ ଆଣି ଦେବ । ତାହା କୌଣସିମତେ ଅପହୃତ ହୋଇଛି ବୋଲି ମିତ୍ରବର୍ମାଙ୍କୁ ଜଣାଇ ଦେବାକୁ ହେବ । ତାହା ଦେହରେ ମୁଁ ଏକ ଅତି ମାରାତ୍ମକ ବିଷ ଲେପନ କରି ଏପରି ସ୍ଥାନରେ ହାରଟି ପକାଇ ଦେବି, ଯେପରିକି ହାରଟି ସର୍ବ ପ୍ରଥମେ ମିତ୍ରବର୍ମାଙ୍କ ହସ୍ତରେ ପଡ଼ିବ । ଏଥି ନିମିତ୍ତ ମୁଁ ରାଜପ୍ରାସାଦର ଅବସ୍ଥିତି, ମିତ୍ରବର୍ମାଙ୍କ ଗତିବିଧି ଓ ସାଧାରଣତଃ ତାହାଙ୍କର ସାନ୍ଧ୍ୟ ଭ୍ରମଣର ସ୍ଥାନ ସମ୍ବନ୍ଧେ ଜାଣିବା ଉଚିତ । ଏ ସବୁ ସମ୍ବାଦ ତୁମେ ସଂଗ୍ରହ କରି ମୋତେ ଦେବ । ସନ୍ନ୍ୟାସୀ ବେଶରେ ମୁଁ ମଧ୍ୟ ଯଥା ସମ୍ଭବ ସମ୍ବାଦ ସଂଗ୍ରହ କରିବି । ବର୍ତ୍ତମାନ ଆମ୍ଭେମାନେ ଏହିଠାରୁ କାର୍ଯ୍ୟ ଆରମ୍ଭ କରିବା ଦରକାର ।”

ପ୍ରାୟ ଦୁଇ ସପ୍ତାହ ପରେ ଯୁବରାଜ ଏବଂ ମୁଁ ଗୋପନ ବେଶରେ ନିର୍ଦ୍ଦିଷ୍ଟ ସ୍ଥାନରେ ଅପେକ୍ଷା କରି ରହିଲୁ । ଏ ମଧ୍ୟରେ ମୁଁ ଦିନେ ରାତ୍ରିକାଳରେ ରାଜୋଦ୍ୟାନରେ ପ୍ରବେଶ କରି ଅନେକ କଥା ଜାଣି ପାରିଲି । ଏହାପରେ ନଳିନୀଙ୍କ ଅତି ମୂଲ୍ୟବାନ ହାରଟିଏ ଧରି ଆସି କହିଲେ ଯେ ମିତ୍ରବର୍ମା ସାଧାରଣତଃ ପ୍ରତିଦିନ ସନ୍ଧ୍ୟା ପୂର୍ବରୁ ରାଜୋଦ୍ୟାନର ଦକ୍ଷିଣ ପୂର୍ବ ଅଂଶରେ ଏକାକୀ ଭ୍ରମଣ କରନ୍ତି । ସେତେବେଳକୁ ମଞ୍ଜୁବାଦିନୀଙ୍କ ବିବାହ ଆୟୋଜନ ଅତି କ୍ଷିପ୍ର ଗତିରେ ଚାଲିଥାଏ । ସୁତରାଂ ଯଥାଶୀଘ୍ର ସମ୍ଭବ ପ୍ରତିକାର ନକଲେ ସମସ୍ତ ଚେଷ୍ଟା ଯେ ବିଫଳ ହେବ ଏଥିରେ ଅଣୁ ସନ୍ଦେହ ନାହିଁ ।

ସେ ଦିନ ସନ୍ଧ୍ୟାରେ ମୁଁ ସମଗ୍ର ହାରଟିରେ ଅତି ମାରାତ୍ମକ ବିଷ ଲେପନ କରି ଦେଲି । ଏ ବିଷ ଚର୍ମର ସଂସ୍ପର୍ଶରେ ଆସିବା ମାତ୍ରେ କ୍ରମେ ମାଂସ ଓ ରକ୍ତ ମଧ୍ୟରେ ପ୍ରବେଶ କରି ଏକ ସପ୍ତାହ ମଧ୍ୟରେ ମୃତ୍ୟୁ ଘଟାଇବ । ଏହାର କୌଣସି ପ୍ରତିଷେଧକ ନାହିଁ ଏବଂ ରକ୍ତରେ ମିଶ୍ରିତ ହେବା ଯାଏଁ ଏଥିଦ୍ୱାରା କୌଣସି ପ୍ରକାର ଯନ୍ତ୍ରଣା ଅନୁଭୂତ ହୁଏ ନାହିଁ ।

ମୁଁ ହାର ସହିତ ପ୍ରାଚୀର ଅତିକ୍ରମ କରି ଉଦ୍ୟାନ ମଧ୍ୟରେ ପ୍ରବେଶ କଲି ଏବଂ ଅତି ସତର୍କତା ସହକାରେ ମିତ୍ରବର୍ମାଙ୍କ ସମ୍ଭାବ୍ୟ ଗତି ପଥ ପାର୍ଶ୍ୱରେ ତାହା ପକାଇ ଦେଇ ଗୁଳ୍ମଲତା ମଧ୍ୟରେ ଆତ୍ମ-ଗୋପନ କଲି । ଅତି ଅଳ୍ପ ସମୟ ପରେ କାହାର ପଦ ଶବ୍ଦ ମୋହର ଶ୍ରୁତି ଗୋଚର ହେଲା । ଚାହିଁ ଦେଖିଲି ସ୍ୱୟଂ ମିତ୍ରବର୍ମା —ନିଜକୁ ନିଜେ ଅସ୍ପଷ୍ଟ ଭାବରେ କହୁଛନ୍ତି—"ରୂପସୀକୁ ଲାଭ କରିବି ଏହା ଧ୍ରୁବ,—ମୂର୍ଖ ପ୍ରଚଣ୍ଡବର୍ମା ତାହାର କନ୍ୟା ସହିତ ଅନ୍ତର ହେବା ପରେ ମୋତେ ବିବାହ କରିବା ନିମିତ୍ତ ବାଧ୍ୟ କରିବ । ସବୁ କନ୍ଦୁ ଅବଲମ୍ବେ କରି ନେବାକୁ ହେବ—ଏଁ ଏ କଣ, ଗୋଟାଏ ହୀରକ ହାର ! ଏହା ଅପହୃତ ବୋଲି ତ ସେ ମୋତେ କହୁଥିଲା ! ଦସ୍ୟୁ କବଳରୁ ନିଷ୍ଟୟ ଖସି ପଡ଼ିଛି । ତେବେ ତାହାର ଭାବୀ ପତି କିଛି ସମୟ ପାଇଁ ଏହା ଗଳାରେ ଧାରଣ କରୁ ।"

ଏହା କହି ହତଭାଗା ମିତ୍ରବର୍ମା,ହାରଟିକୁ ଦୁଇ କରତଳ ଦ୍ୱାରା ଘର୍ଷଣ କରି ମର୍ମାମୃକ୍ତ କଲା ଓ ତାହାକୁ ନିଜ କଣ୍ଠରେ ଧାରଣ କଲା । ଏହି ଘର୍ଷଣ ଫଳରେ ତାହାର ମୃତ୍ୟୁ ଯେ ଅନ୍ତତଃ ଅଳ୍ପ ଦିନେ ନିକଟତର ହେଲା ଏହା ସ୍ଥିର କରି ମୁଁ ମୋହର ପଥରେ ପ୍ରତ୍ୟାବର୍ତ୍ତନ କଲି ।

ସେ ସମୟରେ ପ୍ରଚଣ୍ଡବର୍ମା ରାଜଅତିଥି ଭାବରେ ଏକ ପ୍ରାସାଦରେ ଅବସ୍ଥାନ କରି ସକଳପ୍ରକାର ସ୍ୱାନ ଉପଭୋଗରେ ଲିପ୍ତଥିଲେ । ଏହିଠାରେ ମୁଁ ତାହାଙ୍କୁ ମୋହର ସମ୍ମୋହନ ବିଦ୍ୟାଦ୍ୱାରା ବଶୀଭୂତ କରିନେବା ପାଇଁ ସ୍ଥିର କଲି । ସ୍ୱୀରଙ୍କ ଦ୍ୱାରା ବିକ୍ଷେପ କରିବାର ଦୁଇ ଦିନ ପରେ ମୁଁ ମୋହର ହସ୍ତ କୌଶଳ ପ୍ରଦର୍ଶନ କରିବା ପାଇଁ ପ୍ରଚଣ୍ଡବର୍ମା ଏକାକୀ ଥିବା ସମୟରେ ଏହି ପ୍ରାସାଦରେ ଛଦ୍ମବେଶରେ ଉପସ୍ଥିତ ହେଲି । ପ୍ରଥମେ ମୁଁ କେତେକ ଛଳନା ପୂର୍ଣ୍ଣ ହସ୍ତକୌଶଳ ପ୍ରଦର୍ଶନ କଲି; ଯେପରିକି ପ୍ରଚଣ୍ଡବର୍ମା ସେ ସବୁର ସୂତ୍ର ହଠାତ୍ ବୋଧ କରି ପାରିବେ । ଫଳତଃ ସେ ମୋହର ଅନ୍ୟାନ୍ୟ କୌଶଳ ଅବଗତ ହେବା ପାଇଁ କ୍ରମେ ମୋହର ନିକଟବର୍ତ୍ତୀ ହେଲେ । ଏହି ସୁଯୋଗରେ ମୁଁ ତାହାଙ୍କୁ ସ୍ଥିର ଭାବରେ ମୋ ନିକଟରେ ବସି ମୋହର ହସ୍ତକୌଶଳ ପର୍ଯ୍ୟବେକ୍ଷଣ କରିବାକୁ ଅନୁରୋଧ କରନ୍ତେ ସେ ଅତ୍ୟନ୍ତ ସହକାରେ ସେଥିରେ ସମ୍ମତ ହେଲେ । ସୁତରାଂ ସେ ଉପବେଶନ କରିବା ମାତ୍ରେ ମୁଁ ତାହାଙ୍କ ସମ୍ମୁଖରେ ସମ୍ମୋହନ ବିଧି ଅନୁଯାୟୀ ହସ୍ତଚାଳନା ଓ ମୁଖପ୍ରତି ଏକାଗ୍ର ଦୃଷ୍ଟି ନିବଦ୍ଧ ଦ୍ୱାରା ତାହାଙ୍କ ମାନସିକ ବୃତ୍ତିକୁ ସମ୍ପୂର୍ଣ୍ଣ ଅସ୍ୱାଧୀନ କରି ପକାଇଲି । ତାହା ପରେ ମୁଁ ତାହାଙ୍କୁ ସଧୀରେ କହିଲି "ଆଜିଠାରୁ ତୀଅଦିନ ପର୍ଯ୍ୟନ୍ତ ତୁମେ ଏକ ତୃଣଭୋଜୀ ଭରିବାସ୍ୱୀ ଗର୍ଦ୍ଦଭ । ସେହିପରି ବ୍ୟବହାର କର—ନଚେତ୍ ମୃତ୍ୟୁ ସୁନିଶ୍ଚିତ ।"

ତତ୍କ୍ଷଣାତ୍ ପ୍ରଚଣ୍ଡବର୍ମା ଠିକ୍ ଏକ ଗର୍ଦ୍ଦଭ ଭଳି ବ୍ୟବହାର କରି ଶଯ୍ୟାର ସହ ଭୂତଳରେ ବିଲୁଣ୍ଠିତ ହେଲେ । ମୁଁ କୌଶଳ କ୍ରମେ ସେ ସ୍ଥାନ ତ୍ୟାଗ କରି ମୋହର କାପାଳିକ ବେଶ ଧାରଣ କଲି । ପ୍ରଥମେ ଏ ଘଟଣାରେ ପ୍ରାସାଦରେ ବିଶେଷ କୌତୂହଳ

ଉଦ୍‌ଭିପ୍ତ ହେଲ; ମାତ୍ର ଅଳ୍ପ ସମୟ ପରେ ବିଶେଷ ଆନ୍ଦୋଳନ ସୃଷ୍ଟି ହେଲା । ନାନାଚେଷ୍ଟା ସତ୍ତ୍ୱେ ପ୍ରଚଣ୍ଡବର୍ମା ଗର୍ଦ୍ଦଭ ପ୍ରକୃତି ତ୍ୟାଗ କଲେ ନାହିଁ । ନଗର ସାରା ଏକଥା ରାଷ୍ଟ୍ର ହୋଇଗଲା । ଏ ଘଟନାରେ ରାଜା ବିବ୍ରତ ହୋଇ ବିବାହର ଆୟୋଜନ ସକଳ ସ୍ଥଗିତ କଲେ ଏବଂ ତାହାଙ୍କୁ ବିକୃତ ମସ୍ତିଷ୍କ ମନେକରି ସ୍ୱସ୍ଥାନକୁ ପଠାଇ ଦେଲେ । ଅବଶ୍ୟ ଷଷ୍ଠ ଦିବସରେ ସେ ନିଜତ୍ୱ ଫେରି ପାଇ ବିବାହ କରିବା ଉଦ୍ଦେଶ୍ୟରେ ପୁଣି ଆଗମନ କଲେ; କିନ୍ତୁ ସେତେ-ବେଳକୁ ମିତ୍ରବର୍ମା ପରଲୋକ ଗତ ହୋଇଥିଲେ ଏବଂ ମୁଁ ସକଳ ଅଧିକାର ଲାଭ କରି ସାରିଥିଲି । ସୁତରାଂ ତାହାଙ୍କୁ ବିଫଳମନୋରଥ ହୋଇ ପ୍ରତ୍ୟାବୃତ୍ତ ହେବାକୁ ହୋଇଥିଲା ।

ନିର୍ଦ୍ଦିଷ୍ଟ ଦିବସରେ ନାଳଜଙ୍ଘ ମୋ ନିକଟରେ ଉପସ୍ଥିତ ହେଲେ । ସେ ସମ୍ବାଦ ଦେଲେ ଯେ ରାଜା ଉତ୍କଟ ବ୍ୟାଧି ଗ୍ରସ୍ତ ହୋଇ ମୂର୍ଚ୍ଛିତ ଅବସ୍ଥାରେ ଶଯ୍ୟାଶାୟୀ । ଚିକିତ୍ସକଗଣ ବିଷର କୌଣସି ପ୍ରତିବିଧାନ କରି ନପାରି ନିରାଶ ହୋଇ ପଡ଼ିଛନ୍ତି ।

ମୁଁ ନାଳଜଙ୍ଘଙ୍କୁ କହିଲି ଯେ ଦୁଇଦିନ ମଧ୍ୟରେ ମିତ୍ରବର୍ମା ନିଶ୍ଚୟ ପରଲୋକ ଗତ ହେବେ । ତାହା ପୂର୍ବରୁ ଭାସ୍କରବର୍ମାଙ୍କୁ ଆଣି ଉପସ୍ଥିତ କରିବାକୁ ହେବ ଏବଂ ତାହାଙ୍କୁ ଦୈବଶକ୍ତି ସମ୍ପନ୍ନ ରାଜପୁରୁଷ ଭାବରେ ସର୍ବ ସମକ୍ଷରେ ଉପସ୍ଥାପିତ କରିବାକୁ ହେବ । ଏହା ଫଳରେ ପ୍ରଜାମାନେ ମିତ୍ରବର୍ମାଙ୍କ ମୃତ୍ୟୁପରେ ତାହାଙ୍କୁ ରାଜ୍ୟର ଶାସକ ଭାବେ ମନୋନୀତ କରିବାକୁ ଦ୍ୱିଧା ବୋଧ କରିବେ ନାହିଁ ।

ଏହି କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ମୁଁ ନିମ୍ନଲିଖିତ ପ୍ରଣାଳୀ ସ୍ଥିର କରି ନାଳଜଙ୍ଘ ଦ୍ୱାରା ବସୁନ୍ଧରାଙ୍କୁ ଜଣାଇ ଦେଲି ।

ପରଦିବସ ବସୁନ୍ଧର ମନ୍ତ୍ରୀବର୍ଗଙ୍କୁ ଶୁଣାଇ ଦେବେ ଯେ ରାତିରେ ସେ ଏକ ବିଚିତ୍ର ସ୍ୱପ୍ନ ଦେଖିଲେ । ଦେବୀ ବିନ୍ଧ୍ୟବାସିନୀ ସ୍ୱପ୍ନରେ ଅଜ୍ଞା ହେଲେ କି ସେ ତାହାଙ୍କର ଶିଶୁ ରାଜକୁମାରଙ୍କୁ ବ୍ୟାଘ୍ରୀ ରୂପରେ ଅପହରଣ କରି ପାଳନ କରୁଥିଲେ । ରାଜକୁମାର ଉପଯୁକ୍ତ ଶିକ୍ଷାପାଇ ସାରିଥିବାରୁ ସେ ବର୍ତ୍ତମାନ ତାହାଙ୍କୁ ପ୍ରତ୍ୟର୍ପଣ କରି ଦେବେ । କିନ୍ତୁ ଏଥି ନିମିତ୍ତ ତାହାଙ୍କୁ ମନ୍ତ୍ରୀ ଓ ସାମନ୍ତମାନଙ୍କ ସହ ପର ଦିବସ ପ୍ରଭାତରୁ ଶ୍ମଶାନସ୍ଥ କାଳୀମନ୍ଦିରକୁ ଗମନ କରି-ବାକୁ ହେବ ଓ ସମାରୋହ ସହକାରେ ଦେବୀଙ୍କର ପୂଜାର୍ଚ୍ଚନା କରିବାକୁ ହେବ । ପୂଜାପରେ ସମବେତ ଜନତା ମନ୍ଦିରର କିଛି ଦୂରରେ ଦଣ୍ଡାୟମାନ ହୋଇ ପ୍ରତୀକ୍ଷା କରିବା ଅବଶ୍ୟକ । ଏଥିରେ ବ୍ୟତିକ୍ରମ ହେଲେ ଦେବୀ ତାହାଙ୍କ କୁମାରଙ୍କୁ ଫେରାଇବେ ନାହିଁ ଏବଂ ସମଗ୍ର ରାଜ୍ୟ ଉପରେ ମହା ବିତ୍ପାତ ଉପସ୍ଥିତ ହେବ ।

ଇତି ମଧ୍ୟରେ ଶ୍ମଶାନବାସୀ କାପାଳିକ ଭାବରେ ମୁଁ ଓ ରାଜକୁମାର କାଳୀମନ୍ଦିରର ପଶ୍ଚାଦ୍‌ଭାଗସ୍ଥ ପର୍ବତ ଗୁମ୍ଫାମଧ୍ୟରେ ବାସ କରୁଥିଲୁ । ଅବସର ସମୟରେ ଏହିଠାରୁ ମନ୍ଦିର ମଧ୍ୟସ୍ଥ କାଳୀ ମୂର୍ତ୍ତିଙ୍କର ଠିକ୍ ନିମ୍ନଭାଗ ପର୍ଯ୍ୟନ୍ତ ଏକ ସୁଡ଼ଙ୍ଗ ନିର୍ମାଣ କରିବା ଆମର ପ୍ରଧାନ କାର୍ଯ୍ୟ ହୋଇଥାଏ । ଏହା ସମାପ୍ତ କରି ଆମେ ଦୁହେଁ କାଳୀଙ୍କ ପୀଠ ଦେହରେ ଗୋଟିଏ ଗୋପନ ପଥ ମଧ୍ୟ ନିର୍ମାଣ କଲୁଁ ଏବଂ ନଳିକଙ୍କ ସାହାଯ୍ୟରେ କେତେକ ବହୁମୂଲ୍ୟ ରାଜପରିଚ୍ଛଦ ଓ ରତ୍ନମୁକୁଟ ସଂଗ୍ରହ କରି ନେଲୁଁ ।

ମନ୍ତ୍ରୀବର୍ଗ ରାଜ୍ୟ ଉପରେ ଦୈବୀ ବିପତ୍ତିର ଆଶଂକା କରି ବସୁନ୍ଧରାଙ୍କ ଉପଦେଶ ଗ୍ରହଣ କଲେ । କାଳୀଙ୍କ ମନ୍ଦିରରେ ଏକ

ବଶିଷ୍ଟ ପୂଜାର ଅୟୋଜନ ହେଲା । କାଳୀମୂର୍ତ୍ତି ଯଥୋଚିତ ଭାବେ ଚର୍ଚ୍ଚିତ ହେବା ପରେ ସମସ୍ତେ ମନ୍ଦିର ତ୍ୟାଗକରି କିଛି ଦୂରରେ ଯୋଡ଼ହସ୍ତ ହୋଇ ଦଣ୍ଡାୟମାନ ହେଲେ । ମନ୍ଦିର ଦ୍ୱାର ରୁଦ୍ଧକରି ଦିଆଗଲା । ସମସ୍ତଙ୍କ ଦୃଷ୍ଟି ଏକାଗ୍ର ଭାବରେ ମନ୍ଦିର ଦ୍ୱାରରେ ଅବଦ୍ଧ । ଏଣେ ବହୁ ବାଦ୍ୟବାଜଣାରେ ଅକାଶ ପ୍ରତିଧ୍ୱନିତ ହେଉଥାଏ ।

କାଳୀମୂର୍ତ୍ତିଙ୍କ ନିମ୍ନଭାଗରୁ ମୁଁ ଏବଂ ରାଜକୁମାର ମନ୍ଦିର ମଧ୍ୟରେ ପ୍ରବେଶ କରି ଗୁପ୍ତପଥ ରୁଦ୍ଧ କରିଦେଲୁ । ରାଜକୁମାର ରାଜପରିଚ୍ଛଦରେ ସଜ୍ଜିତ ହୋଇ ରତ୍ନମୁକୁଟ ଧାରଣ କଲେ । ମୁଁ ମଧ୍ୟ ଯଥୋପଯୁକ୍ତ ବେଶ ପରିବର୍ତ୍ତନ ପୂର୍ବକ ଦେବାଳୟ ଦ୍ୱାର ଉନ୍ମୁକ୍ତ କରି ସର୍ବସମକ୍ଷରେ ଦଣ୍ଡାୟମାନ ହୋଇ ଗୁରୁଗମ୍ଭୀର ସ୍ୱରରେ କହିଲି, "ରାଣୀ ବସୁନ୍ଧରା, ମନ୍ତ୍ରୀବର୍ଗ, ସାମନ୍ତ ମଣ୍ଡଳ ଓ ଉପସ୍ଥିତ ପ୍ରଜାମଣ୍ଡଳୀ, ମୁଁ ଜଗଜ୍ଜନନୀ କାଳୀଙ୍କଦ୍ୱାରା ଆପଣ-ମାନଙ୍କୁ ସୁସମ୍ବାଦ ଦେବାପାଇଁ ନିୟୋଜିତ ହୋଇ ଥିବାରୁ ନିଜକୁ ଭାଗ୍ୟବାନ ମନେ କରୁଛି । ମା କାଳୀ ଶ୍ରୀମୁଖରୁ ଅଦେଶ କରିଛନ୍ତି ଯେ ସେ କୁମାର ଭାସ୍କରବର୍ମାଙ୍କୁ ନିଜର ସନ୍ତାନ ଭାବରେ ପାଳନ କରି ଅଛନ୍ତି । ସେ ଏ ଧରାର ଅଧୀଶ୍ୱର ହେବେ । ସୁତରାଂ ତାହାଙ୍କୁ ରାଜ୍ୟାଭିଷେକ କରାଇ ଅଦମାତା କାଳୀଙ୍କର ଅଶୀର୍ବାଦ ଲଭିକର ।"

ମୋହର ବାଣୀ ନିଃଶେଷ ହେଉ ହେଉ ହଠାତ୍ ସମଗ୍ର ନିସ୍ତବ୍ଧ ଜନତାର ମସ୍ତକ ଅବନତ ହୋଇ ଅଦ୍ୟ ମାତାଙ୍କ ଅଦେଶ ଶିରୋଧାର୍ଯ୍ୟ କଲା । ତାହାପରେ ମୁଁ ରାଜକୁମାରଙ୍କ ହସ୍ତ ଧାରଣ କରି ସର୍ବସମକ୍ଷରେ ଉପସ୍ଥିତ କଲି । ଭାସ୍କରବର୍ମା ଧୀର ଗମ୍ଭୀର ଗତିରେ ଅଗ୍ରସର ହୋଇ ମାତାଙ୍କୁ ନମସ୍କାର କଲେ । ସେ

ମା କାଳୀଙ୍କ ଆଶୀର୍ବାଦରୁ ମହାଶକ୍ତିଶାଳୀ ହୋଇଥିବା କଥା ଜଣାଇଁ ତାହାଙ୍କ ସହିତ ରାଜପ୍ରାସାଦକୁ ଗମନ କରିବା ନିମିତ୍ତ ମାନଙ୍କୁ ନିର୍ଦ୍ଦେଶ ଦେଲେ ।

ଏ ରୋମାଞ୍ଚକର ଘଟଣାରେ ପ୍ରତ୍ୟେକ ପ୍ରଜା ବିସ୍ମିତ ଓ ବିମୁଗ୍ଧ ହୋଇ ପଡ଼ିଲେ । ଠିକ୍ ଏହି ଅବସରରେ ତେଣେ ମିତ୍ରବର୍ମାଙ୍କ ପଞ୍ଚତ୍ୱ ପ୍ରାପ୍ତି ସମ୍ବାଦ ଜନମଣ୍ଡଳୀ ମଧ୍ୟରେ ଖେଳିଗଲା । ମୋ ଅନୁମାନକ ସମସ୍ତର ଅଧିକ ଅଗରୁ ସେ ଇହଲୀଳା ସାଙ୍ଗକରି ଚାଲିଗଲେ । ସୁତରାଂ ସାମନ୍ତ ଓ ଅମାତ୍ୟ ଗଣ ମା ଦୁର୍ଗାଙ୍କ ଅନୁଗ୍ରହରୁ ପୁଣି ଜଣେ ଭୋଜବଂଶୀ ରାଜକୁମାରଙ୍କୁ ରାଜ୍ୟାଧୀଶ୍ୱର ରୂପେ ପାଇ ଥିବାରୁ ଏକ ମୁଖରେ ସ୍ତୁତି ଗାନ କରିବାକୁ ଲାଗିଲେ ।

ଏ ସକଳ ହଟ୍ଟଗୋଳ ପରେ ରାଣୀ ବସୁନ୍ଧରା ମୋ ନିକଟରେ କୃତଜ୍ଞତା ଜ୍ଞାପନ କରି ମୋହର ବୁଦ୍ଧି କୌଶଳକୁ ବାରମ୍ବାର ପ୍ରଶଂସା କରିବାକୁ ଲାଗିଲେ । ସେ ମୋତେ ବିଶେଷ ଅନୁରୋଧ କଲେ ଯେ ମୁଁ ତାହାଙ୍କ ପୁତ୍ରଙ୍କର ପ୍ରତିନିଧି ଓ ପରାମର୍ଶଦାତା ନିଯୁକ୍ତ ହୋଇ ତାହାଙ୍କୁ ରାଜନୀତି ସମ୍ବନ୍ଧେ କିଛି ଶିକ୍ଷା ଦେବି । ଅବଶ୍ୟ ପରୋକ୍ଷରେ କୁମାରୀ ମଞ୍ଜୁବାଦିନୀଙ୍କ ରୂପ ଲାବଣ୍ୟରେ ବିମୁଗ୍ଧ ହୋଇ ମୁଁ ଏ ପ୍ରସ୍ତାବରେ ସ୍ୱୀକୃତି ଦେଲି । କିଛି ଦିନପରେ ମୁଁ କୁମାରୀର ଏ ବିବାହ ପ୍ରସ୍ତାବ ରାଣୀଙ୍କ ନିକଟରେ ଉପସ୍ଥାପିତ କଲି ଏବଂ ଅତିଶୟ ଆନନ୍ଦ ସହକାରେ ସେ ତାହା ଗ୍ରହଣ କଲେ ।

ଉପଯୁକ୍ତ ସାମରିକ ବ୍ୟବସ୍ଥାପରେ ଆମ୍ଭେମାନେ ବସନ୍ତଭାନୁଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲୁଁ । ଏହାପୂର୍ବରୁ ମୁଁ କେତେକ ବିଶ୍ୱସ୍ତ ପ୍ରଚାରକଙ୍କ ଦ୍ୱାରା ବସନ୍ତଭାନୁଙ୍କ ରାଜ୍ୟରେ ରଟିଦେଇ ଥିଲି

ଯେ ଭିସ୍ତବର୍ମୀ ମା ଭାଲୀଙ୍କ ପାଳିତ ସନ୍ତାନ ଏବଂ ମୁଁ ଦେବୀ ପ୍ରେରିତ ତାହାଙ୍କର ସହଚର ଓ ସଂରକ୍ଷକ ଅଟେ । ଯଦି କେହି ଅମ୍ଭମାନଙ୍କର ପ୍ରତିରୋଧ କରେ ତାହାର ଧ୍ୱଂସ ଅବଶ୍ୟମ୍ଭାବୀ ।

ସାଧାରଣ ଏହା ବିଶ୍ୱାସ କରିଥିଲେ । ତେଣୁ କେହି ଅମ୍ଭ-ମାନଙ୍କର ପ୍ରତିରୋଧ କରିବା ଦୂରେଥାଉ ବସନ୍ତଭାନୁ ଅମ୍ଭମାନଙ୍କ ଆଗମନ ସମ୍ବାଦ ପାଇ ପଳାୟନ କଲା; ତଥାପି ପରେ ଧୃତ ଓ ଦଣ୍ଡିତ ହୋଇଥିଲା ।

ବର୍ତ୍ତମାନ ବନ୍ଧୁଗଣ, ସିଂହବର୍ମାଙ୍କ ସାହାଯ୍ୟାର୍ଥେ ମୁଁ ଯେତିକି ସୈନ୍ୟ ସଂଗ୍ରହ କରି ଅଣିଛି ତାହାଠାରୁ ବହୁଗୁଣ ସୈନ୍ୟ ମୋହର ଅଛନ୍ତି । ସେମାନଙ୍କୁ ଅମର ରାଜ୍ୟ ବିଜୟରେ ବ୍ୟବହାର କରି ଯାଇପାରେ ।"

ରାଜବାହାନ ବିଶ୍ରୁତଙ୍କ ବୁଦ୍ଧି ଓ କୌଶଳ ନିମିତ୍ତ ବହୁ ଧନ୍ୟବାଦ ଦେଇ ସାରିବା ପରେ ସହଚର ଗଣଙ୍କ ସହ ଚମ୍ପା-ନଗରୀରେ ପ୍ରବେଶ କରି ସେଠାରେ ଅବସ୍ଥାନ କଲେ ଓ ମାଳବ ବିଜୟ ସମ୍ବନ୍ଧେ ମନ୍ତ୍ରଣା କରିବାକୁ ଲାଗିଲେ ।

---

## ( ୨୧ )

# ବିଜୟୀ ବାହୁଡ଼ା

ରାଜବାହନ ଓ ତାହାଙ୍କ ସହଚରଗଣ ବିଦେଶରେ କଠୋର ସାଂସାରିକ ବିଷୟ ଶିକ୍ଷାରେ କିପରି କୃତକାର୍ଯ୍ୟ ହେଉଛନ୍ତି ସେ ସମ୍ବନ୍ଧେ ରାଜା ରାଜହଂସ ଓ ରାଣୀ ବସୁମତୀ ସର୍ବଦା ଚିନ୍ତିତ ଥାନ୍ତି । ବହୁକାଳାବଧି ସେମାନଙ୍କର କୌଣସି ସମ୍ବାଦ ନପାଇ ରାଜ-ଦମ୍ପତିଙ୍କର ଚିନ୍ତାର ମାତ୍ରା ଦିନକୁ ଦିନ ବଢ଼ିବାରେ ଲାଗିଥାଏ । ହଠାତ୍ ଦିନେ ଜଣେ ଶବର ଆସି ତାହାଙ୍କୁ ଜଣାଇଲା ଯେ ସେ ବନମଧ୍ୟରେ ରାଜବାହନଙ୍କର ଜଣେ ସହଚରଙ୍କ ସାକ୍ଷାତ ଲାଭ କରିଥିଲା । ତାହାଙ୍କଠାରୁ ସେ ଶୁଣିଥିଲା, ରାଜକୁମାର ଅନ୍ୟ ସହଚର-ମାନଙ୍କ ନିକଟରୁ କେତେକାଳ ହେଲା ବିଚ୍ଛିନ୍ନ ହୋଇ ପଡ଼ିଥିବାରୁ ସେମାନେ ତାହାଙ୍କୁ ଅନୁସନ୍ଧାନ କରିବା ପାଇଁ ଚତୁର୍ଦ୍ଦିଗରେ ଯାତ୍ରା କରିଛନ୍ତି । ଏ ସଂବାଦରେ ରାଜା ଓ ରାଣୀ ଅଧିକ ବ୍ୟଥିତ ହୋଇ ପଡ଼ିଲେ । ତେଣୁ ସେମାନେ ଅନତି ବିଳମ୍ବେ ମହର୍ଷି ବାମଦେବଙ୍କ ଅଶ୍ରମରେ ଉପସ୍ଥିତ ହୋଇ ନିବେଦନ କଲେ, "ହେ ମହର୍ଷେ ଅପଣଙ୍କ ଉପଦେଶ ଅନୁଯାୟୀ ମୋହର ପ୍ରାଣାଧିକ ପୁତ୍ର ଓ ତାହାର ସହଚରମାନଙ୍କୁ ବୈଷୟିକ ଶିକ୍ଷା ଉଦ୍ଦେଶ୍ୟରେ ପ୍ରେରଣ କରିଥିଲି । ବର୍ତ୍ତମାନ ଶୁଣିପାରୁଛୁ

ମୋହର ରାଜବାହନ ନିରୁଦ୍ଦିଷ୍ଟ ଏବଂ ସଖାଗଣ ତାହାର ଅନୁସନ୍ଧାନ ଉଦ୍ଦେଶ୍ୟରେ ଚତୁର୍ଦ୍ଦିଗରେ ବିକ୍ଷିପ୍ତ । ଏ ଅବସ୍ଥାରେ ମୋହର କର୍ତ୍ତବ୍ୟ କଣ ଆଦେଶ କରି ବାଧିତ କରିବା ହୁଅନ୍ତୁ ।”

ବାମଦେବ ଉତ୍ତରକଲେ, “ହେ ରାଜହଂସ, ତୁମ ସନ୍ତାନର କୁଶଳ ସମାଚାର ସମ୍ବନ୍ଧେ ନିଶ୍ଚିନ୍ତ ରହ । ସେ ଅପୂର୍ବ ପ୍ରତିପତ୍ତି ଲାଭକରି ସହଚରମାନଙ୍କସହ ପରମ ଆନନ୍ଦରେ କାଳାତିପାତ କରୁଅଛନ୍ତି । ସେମାନେ ବର୍ତ୍ତମାନ ଏକତ୍ର ହୋଇ ଅଙ୍ଗଦେଶର ଚମ୍ପାନଗରୀରେ ଅବସ୍ଥାନ କରୁଅଛନ୍ତି । ସହଚର ଗଣଙ୍କ ମଧ୍ୟରୁ ଅନେକେ ବିଭିନ୍ନଶାଳୀ ରାଜ୍ୟର ଅଧୀଶ୍ୱର ହୋଇ ପାରିଛନ୍ତି ଏବଂ ଅନ୍ୟମାନେ ବିଶାଳ ସମ୍ପତ୍ତି ଲଭି କରି ଅଛନ୍ତି । ସେମାନେ ବର୍ତ୍ତମାନ ସମ୍ମିଳିତ ଭାବରେ ଯୁବରାଜଙ୍କର ସହାୟ ହୋଇ ଜନ୍ମଭୂମି ବିଜୟ କରି ତୁମର ଶତ୍ରୁ ମାନସାରଙ୍କ ପୁନର୍ବାର ରାଜ୍ୟଚ୍ୟୁତ କରିବେ । କିନ୍ତୁ ସେମାନଙ୍କର ବିଜୟ ଯାତ୍ରା ପୂର୍ବରୁ ତୁମେ ସେମାନଙ୍କୁ ଆହ୍ୱାନ କରି ଯଥୋପଯୁକ୍ତ ଉପଦେଶ ଓ ଆଶୀର୍ବାଦ ପ୍ରଦାନ କର ।”

ଋଷିମୁଖ ନିଃସୃତ ଏ ସକଳ ସୁସମ୍ବାଦ ରାଜଦମ୍ପତିଙ୍କ କର୍ଣ୍ଣରେ ଅମୃତଧାରା ଢାଳିଦେଲା । ଉଭୟେ କୁଟୀରକୁ ପ୍ରତ୍ୟାବର୍ତ୍ତନ କରି ଜଣେ ଅଶ୍ୱାରୋହୀ ପତ୍ରବାହକଦ୍ୱାରା ଗୋଟିଏ ପତ୍ର ପ୍ରେରଣ କଲେ—

ଆୟୁଷ୍ମାନ ବତ୍ସ ରାଜବାହନ,

ତୁମେ ସହଚର ଗଣଙ୍କ ନିକଟରୁ ବିଚ୍ଛିନ୍ନ ହୋଇ ନିରୁଦ୍ଦିଷ୍ଟ ହୋଇଥିବା ସମ୍ବାଦ ଜଣେ ଶବରଠାରୁ ପ୍ରାପ୍ତ ହୋଇ ତୁମର ହତଭାଗ୍ୟ ପିତାମାତା ଦୁଃଖ ସାଗରରେ ନିମଗ୍ନ ହୋଇ ଥିଲୁଁ । ତୁମେ ଏ ମର୍ତ୍ତ୍ୟଧାମର ଯେ କୌଣସି ସ୍ଥାନରେ ଥିଲେ ମଧ୍ୟ ତୁମର ସହଚର ଗଣ ଯେ ତୁମର ଅନୁସନ୍ଧାନ କରି ନେବେ ଏ ଭରସା

ଅମ୍ଭମାନଙ୍କର ଅଛୁ । ତଥାପି ନାନା ଅଶଙ୍କା ଅମ୍ଭମାନଙ୍କ ମନରେ ଘୋର ଯନ୍ତ୍ରଣା ଦେଉଥାଏ । ସୁତରାଂ ମୁଁ ଯେବେ ତୁମର ମାତାଙ୍କ ସହିତ ଋଷି ବାମଦେବଙ୍କ ଆଶ୍ରମରେ ଉପନୀତ ହେଲି ଏବଂ ସେ ତୁମ୍ଭମାନଙ୍କର କୁଶଳ ସମ୍ବାଦ ଜଣାଇ ଅପାର ଆନନ୍ଦ ଦେଲେ । ଅମ୍ଭମାନଙ୍କର ବିଶେଷ ଅନୁରୋଧ ଯେ ତୁମ୍ଭେମାନେ ଉଜ୍ଜୟିନୀ ବିଜୟ କରି ଶତ୍ରୁସାଧନ ତଥା ଅପହୃତ ସାମ୍ରାଜ୍ୟର ପୁନରୁଦ୍ଧାର କରିବା ପୂର୍ବରୁ ଥରେ ଏ ହତଭାଗା ଜନକଜନନୀଙ୍କୁ ସାକ୍ଷାତ ଦେଇ ଅମ୍ଭମାନଙ୍କର ଆନନ୍ଦ ବର୍ଦ୍ଧନ କରିବ । ଇତି ।

ତୁମର ମଙ୍ଗଳାକାଙ୍କ୍ଷୀ ପିତା,
ରାଜହଂସ,

ରାଜବାହନ ପ୍ରଥମେ ମଗଧ ବିଜୟ କରିବେ ଓ ପରେ ପିତା ମାତାଙ୍କୁ ବନବାସରୁ ଫେରାଇ ଆଣି ରାଜ୍ୟରେ ପୁନରଭିଷେକ କରାଇବା ନିମିତ୍ତ ସଙ୍କଳ୍ପ କରିଥିଲେ । କିନ୍ତୁ ଏ ପତ୍ର ପ୍ରାପ୍ତିମାତ୍ରେ ତାହାଙ୍କ ହୃଦୟରେ ମଧ୍ୟ ପିତୃମାତୃ ଦର୍ଶନ ଲିପ୍ସା ବଳବତୀ ହୋଇ ଉଠିଲା । ସେ ତତ୍କ୍ଷଣାତ୍ ତାହାଙ୍କର କାର୍ଯ୍ୟକ୍ରମ ପରିବର୍ତ୍ତନ କରି ସହଚରମାନଙ୍କ ସହିତ ବିନ୍ଧ୍ୟ ଅଭିମୁଖରେ ଯାତ୍ରା କଲେ । ସେ ନିଜେ ଅଙ୍ଗଦେଶ ବାହିନୀର ଅଗ୍ରଗାମୀ ହେଲେ ଏବଂ ସହଚର ଗଣ ସ୍ୱ ସ୍ୱ ସେନା ଚାଳନ କରି ଅଗ୍ରସର ହେବାକୁ ଲାଗିଲେ । ଏ ବିଶାଳ ସେନାନୀ ସମ୍ମୁଖରେ ଚମ୍ପାନଗରୀର ନର୍ତ୍ତକୀ ଗଣ ଯାତ୍ରା କରୁଥାନ୍ତି । ପଥ ମଧ୍ୟରେ ଏ ବିରାଟ ଶୋଭାଯାତ୍ରାର ଅଖଣ୍ଡ ଧାରା ଲାଗିଥାଏ ।

ପରିଶେଷରେ ସେମାନେ ବିନ୍ଧ୍ୟାଚଳରେ ଉପସ୍ଥିତ ହୋଇ ରାଜହଂସ ଓ ବସୁମତୀଙ୍କ ପଦ ବନ୍ଦନା କଲେ । ରାଜା ଓ ରାଣୀ

ସାଶ୍ରୁ ବଦନରେ ସେମାନଙ୍କ ମସ୍ତକରେ ଆଶୀର୍ବାଦ ବର୍ଷଣ କଲେ । ଜନ୍ମୁଦିନ ପରେ ସେମାନେ ଋଷି ବାମଦେବଙ୍କ ଆଶ୍ରମକୁ ଗମନ କରି ତାହାଙ୍କର ଅମୂଲ୍ୟ ଉପଦେଶ ଓ ଅବ୍ୟର୍ଥ ଶୁଭାଶୀଷ ଲାଭ କଲେ ।

ଏହାପରେ ଯୁବରାଜ ରାଜବାହନ ଓ ନବ ସହଚର ଉଜ୍ଜୟିନୀ ଅଭିଯାନରେ ବାହାରିଲେ । ଦର୍ଭସାର ତପସ୍ୟାଦ୍ୱାରା ଦୈବୀ ଶକ୍ତି ଲାଭ କରିଥିବା ଭଳି ଆଶ୍ୱାସନା ହୃଦୟରେ ପୋଷଣ କରି ପୁଣି ଥରେ ହିମାଳୟରୁ ଫେରି ଆସିଲେ । କିନ୍ତୁ ତାହା ନିଷ୍ଫଳ ହୋଇଥିଲା । ସେ ତାହାଙ୍କ ପ୍ରତିନିଧି ଚଣ୍ଡବର୍ମାଙ୍କ ନିକଟକୁ ଯେପରି କ୍ରୂର ଆଦେଶ ପ୍ରେରଣ କରିଥିଲେ, ତାହା ଫଳରେ ତାହାଙ୍କ ତପୋନିଷ୍ଠା ଘଟିଥିଲା । ସୁତରାଂ ସମର କ୍ଷେତ୍ରରେ ସେ ପରାସ୍ତ ଓ ନିହତ ହେଲେ ।

ରାଜବାହନ ବିଜୟ ବୈଜୟନ୍ତୀ ସହ ରାଜଧାନୀରେ ପ୍ରବେଶ କଲେ । ରାଜା ମାନସାର ସେତେବେଳକୁ ବାର୍ଦ୍ଧକ୍ୟାବସ୍ଥାରେ ଉପନୀତ; ସକଳ ଶକ୍ତି ରହିତ । ତାହାଙ୍କଠାରୁ କୌଣସି ପ୍ରକାର ନୂତନ ବିପଦର ସମ୍ଭାବନା ନଥିବାରୁ ଏବଂ ବିଶେଷତଃ ସେ ଅବନ୍ତୀସୁନ୍ଦରୀଙ୍କ ଜନକ ହୋଇଥିବାରୁ ରାଜବାହନ ତାହାଙ୍କୁ କ୍ଷମା ଦେଇଥିଲେ ।

ଉଜ୍ଜୟିନୀକୁ ସମ୍ପୂର୍ଣ୍ଣ ଭାବେ ସ୍ୱାଧୀନ କରି ସାରିବା ପରେ ରାଜବାହନ ପୁଷ୍ପପୁରୀକୁ ଗମନ କରି ପିତାଙ୍କୁ ମଗଧ ଓ ମାଳବର ଅଧୀଶ୍ୱର ଭାବେ ଅଧିଷ୍ଠିତ କଲେ । କିନ୍ତୁ ଅଳ୍ପ କାଳପରେ ରାଜହଂସ ସୁଯୋଗ୍ୟ ପୁତ୍ରଙ୍କୁ ଯୁବରାଜ ରୂପେ ସିଂହାସନରେ ଅଭିଷିକ୍ତ କରି ରାଣୀ ବସୁମତୀଙ୍କ ସହିତ ବାନପ୍ରସ୍ଥ ବ୍ରତ ଅବଲମ୍ବନ ପୂର୍ବକ ପୁଣି ବନ୍ୟାରଣ୍ୟରେ ଆଶ୍ରୟ ଗ୍ରହଣ କଲେ ।

ଛତ୍ରଦାନ ପରେ ନବୀନ ସମ୍ରାଟ ରାଜବାହନଙ୍କ ସହଚର ଗଣ ବିଦାୟ ଗ୍ରହଣ କରି ସ୍ୱ ସ୍ୱ ରାଜ୍ୟ ଓ କର୍ମକ୍ଷେତ୍ରକୁ ଯାତ୍ରା କଲେ । ପୁଷ୍ପୋଦ୍ଭବ ଉତ୍ତରସୀମାରେ ରାଜପ୍ରତିନିଧି ରୂପେ ନିଯୁକ୍ତ ହୋଇ ପତ୍ନୀ ବାଳଚନ୍ଦ୍ରିକାଙ୍କ ସହିତ ସେଠାରେ ସୁଶାସନ ପ୍ରତିଷ୍ଠା କରିବାକୁ ଲାଗିଲେ ।

ରାଜବାହନ ଏକ ବିଶାଳ ସାମ୍ରାଜ୍ୟର ରାଜଦଣ୍ଡ ଗ୍ରହଣକରି ଏବଂ ନିଜ ରାଜ୍ୟର ଚତୁର୍ଦ୍ଦିଗରେ ସହଚର ମିତ୍ରରାଜ୍ୟମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ନ୍ୟାୟ ଓ ଧର୍ମାନୁମୋଦିତ ନୀତିରେ ପ୍ରଜାପାଳନ କଲେ । ସହଚର ରାଜା ଗଣ ବର୍ଷ ମଧ୍ୟରେ ଦୁଇଥର ନିଜ ରାଣୀ-ମାନଙ୍କ ସହ ପୁଷ୍ପପୁରୀକୁ ଆଗମନ କରି କେତେକ ଦିବସ ଆମୋଦ ପ୍ରମୋଦରେ ଅତିବାହିତ କରନ୍ତି; ଏପରିକି ଏହି ସମୟରେ ପାତାଳ ପତି ମାତଙ୍ଗ ଓ ରାଣୀ କାଳନ୍ଦୀ ପୁଷ୍ପପୁରୀକୁ ଆଗମନ କରନ୍ତି ।

ରାଜ ବାହନଙ୍କ ରାଜତ୍ୱରେ ମେଘମାନେ ସୁବୃଷ୍ଟି କଲେ;ପୃଥିବୀ ଫଳପ୍ରସୂ ହେଲା ଏବଂ ଜନସାଧାରଣ ଧର୍ମପ୍ରାଣ ହେଲେ । ରାଜ୍ୟରେ ଶାନ୍ତି ବିରାଜିତ ହେଲା । ସତ୍ୟ ଓ ଅହିଂସା ସର୍ବତ୍ର ପ୍ରଚୁର ଲାଭ କଲା । ଅସତ୍ୟ ଓ ହିଂସା ସମଗ୍ର ରାଜ୍ୟରୁ ନିର୍ବାସିତ ହେଲା ।

---

**ସମାପ୍ତ**

ବ୍ରହ୍ମପୁର, ଷ୍ଟୋର ପ୍ରେସ୍‌ରେ ଶ୍ରୀ ଦାମୋଦର ରଥଙ୍କ ଦ୍ୱାରା
ମୁଦ୍ରିତ ୧୯୪୯